# ବିକଳ୍ପର ଅନ୍ୱେଷଣରେ ରବି ରାୟ

ସଂକଳନ : **ପ୍ରଫୁଲ୍ଲ ସାମନ୍ତରା**

(ସମାଜବାଦୀ ନେତା ତଥା ଲୋକସଭାର ପୂର୍ବତନ ବାଚସ୍ପତି ଶ୍ରୀ ରବିରାୟଙ୍କ ନିଜସ୍ୱ ଲେଖା, ସମ୍ବାଦପତ୍ରମାନଙ୍କ ସହ ସାକ୍ଷାତକାର ଓ ବକ୍ତବ୍ୟର ଏକ ସଂକଳନ)

ପ୍ରକାଶକ :
**ପ୍ରଫୁଲ୍ଲ ସାମନ୍ତରା**
ସଭାପତି, ଲୋକଶକ୍ତି ଅଭିଯାନ
ଓଡ଼ିଶା ଶାଖା, ବ୍ରହ୍ମପୁର - ୭୬୦ ୦୦୫

ମୁଦ୍ରଣ :
**ସିଦ୍ଧବୀର ଅଫସେଟ୍,**
ବ୍ରହ୍ମପୁର - ୩ (ଗଞ୍ଜାମ)
ଦୂରଭାଷ : ୦୬୮୦ - ୨୨୦୫୩୬୧

ପ୍ରକାଶନ ସମୟ : **ଅଗଷ୍ଟ ୨୦୦୪**

ସହଯୋଗ ରାଶି :
**୪୦/- ଟଙ୍କା** (ଚାଳିଶି ଟଙ୍କା ମାତ୍ର)

# BIKALPAR ANWESANARE RABI RAY

147, North Avenue
New Delhi - 110 001

(A compile of writtings, interviews to Newspapers and speeches of Sri Rabi Ray, a great socialist leader and former speaker of Lok Sabha)

*Published by :*
**Prafulla Samantara**
For Lok Shakti Abhiyan
Orissa Unit,
Berhampur - 760 005

First Edition : **August 2004**

*Printed at :*
**Sidhaveer Offset**
Nehru Nagar - 7
Brahmapur - 760 003 (Gm.)
Ph. : 0680 - 2205361

# ବିଜୟର
# ଅନ୍ୱେଷଣରେ



## ରବି ରାୟ

# ସୂଚୀପତ୍ର



★★★

# ମୁଖବନ୍ଧ

ରବି ରାୟ ମୋ ଠାରୁ ବୟସରେ ପାଞ୍ଚ ବର୍ଷ ବଡ଼ । ତାଙ୍କ ଜନ୍ମ ୧୯୨୬ରେ । ମୋର ୧୯୩୧ରେ । କିନ୍ତୁ ତାଙ୍କ ଆମ ଭିତରେ ପାରିବାରିକ ସମ୍ପର୍କ । ରବିରାୟଙ୍କ ଜେଜେ କୃଷ୍ଣ ରାୟ ମୋ ବାପାଙ୍କର ବନ୍ଧୁ । ଏକା ସାଙ୍ଗରେ କଂଗ୍ରେସରେ ଥିଲେ । ମୁଁ ଢେଙ୍କାନାଳ ଓ ଆଠଗଡ଼ରେ ହାଇସ୍କୁଲ ପଢ଼ା ସାରି ୧୯୪୭ରେ କଟକ ଆସିଲା ବେଳକୁ ରବି ରାୟ ଅବିସମ୍ବାଦିତ ଛାତ୍ର ନେତା । ଅବଶ୍ୟ ମୁଁ ଆସିବା ଆଗରୁ ଗଡ଼ଜାତ ଆନ୍ଦୋଳନର ନେତା ସାରଙ୍ଗଧର ଦାସ, ବୈଷ୍ଣବ ପଟ୍ଟନାୟକ, ପବିତ୍ର ପ୍ରଧାନ, ବ୍ରଜଧଳ, ମହେଶ୍ୱର ସୁବାହୁ ସିଂହ ମାନଙ୍କ ସହିତ ପିତୃବନ୍ଧୁ ଭାବରେ ପରିଚୟ ହୋଇଥିଲା । କଟକ ଆସି ସେଦିନର ଛାତ୍ର ନେତା ପ୍ରଦୀପ୍ତ କିଶୋର ଦାସ, ରାଜକିଶୋର ସାମନ୍ତରାୟ, ଜାନକୀ ବଲ୍ଲଭ ପଟ୍ଟନାୟକ, ଧ୍ରୁବେଶ୍ୱର ବସ୍ତିଆ ଆଦିଙ୍କ ଛଡ଼ା ସୁରେନ୍ଦ୍ର ଦ୍ୱିବେଦୀ, ବାଙ୍କ ବିହାରୀ ଦାସ, ବିଶ୍ୱନାଥ ପଣ୍ଡିତଙ୍କ ସହିତ ପରିଚୟ ହେଲା । ଏସବୁଙ୍କ ଉପରେ ଘନିଷ୍ଠତା ହେଲା ରବିରାୟଙ୍କ ସାଙ୍ଗରେ । ମୁଁ ସୋସାଲିଷ୍ଟ ପାର୍ଟି ଆଡ଼କୁ ଟାଣି ହୋଇଗଲି । ଭାରତର ଯେତେ ସୋସାଲିଷ୍ଟ ନେତା, ତାଙ୍କ ଭିତରେ ଲୋହିଆଙ୍କ ପ୍ରତି ମୋର ଶ୍ରଦ୍ଧା ସବୁଠୁ ବେଶି ଥିଲା । ଭାରତର ଯୁବନେତା ମାନଙ୍କ ଭିତରେ ସର୍ବଶ୍ରେଷ୍ଠ ଲୋହିଆ ବାଦୀ ଥିଲେ ରବିରାୟ । ରବି ରାୟ ମତେ ସୋସାଲିଷ୍ଟ ମନ୍ତ୍ରରେ ଦୀକ୍ଷିତ କରି ମୋର ମନ୍ତ୍ର ଗୁରୁ ହୋଇଗଲେ । ୧୯୪୭ରେ ରେଭେନସା କଲେଜରେ ପତାକା ଆନ୍ଦୋଳନରେ ସେ ଆଗୁଆ ଥିଲେ ।

୧୯୫୩ରେ ଏସିଆନ ସୋସାଲିଷ୍ଟ ସମ୍ମିଳନୀରେ ଯୋଗ ଦେଇ ଫେରି ମୁଁ ସୋସାଲିଷ୍ଟ ପାର୍ଟି ଛାଡ଼ିଲି । ବାଙ୍କ ଭାଇ ରାଗି, ଗାଳି ଦେଇ ଚିଠି ଲେଖିଥିଲେ । ୧୯୬୧ରେ ମୁଁ ଆମେରିକାରୁ ଫେରିଲା ପରେ ସୁରେନ୍ଦ୍ରବାବୁ ଇମୋସନାଲ ଚିଠି ଲେଖିଲେ । ସିଏ କହିଥିଲେ, ମୋର ଇଚ୍ଛା ଥିଲା ପାର୍ଟି ତରଫରୁ ତତେ ସମ୍ବର୍ଦ୍ଧନା ଦିଆଯାଇଥାନ୍ତା । ତା ହେବାର କଥା ନୁହେଁ । କିନ୍ତୁ ରବି ରାୟଙ୍କ ସାଙ୍ଗରେ ଏ ବିଷୟରେ ଆଲୋଚନା ହୋଇଥିବା ମୋର ମନେ ନାହିଁ । ପାର୍ଟି ଓ ରାଜନୀତି ଛାଡ଼ିବା ଯେମିତି ଜୀବନ ପ୍ରବାହର ଏକ ସ୍ୱାଭାବିକ ପ୍ରକ୍ରିୟା । ଏହା ଆମ ବନ୍ଧୁତାରେ ଆଞ୍ଚ ଆଣି ନାହିଁ ।

୧୯୪୮ରେ ରବି ରାୟ ସମାଜବାଦୀ ଦଳରେ ଯୋଗ ଦେଲେ । ୧୯୫୬ରେ ସିଏ ଲୋହିଆଙ୍କ ନେତୃତ୍ୱବାଦୀ ସମାଜବାଦୀ ଦଳ ଓଡ଼ିଶାରେ ପ୍ରତିଷ୍ଠା କଲେ । ୧୯୬୭ରେ ପୁରୀରୁ ଲୋକସଭାକୁ ନିର୍ବାଚିତ ହେଲେ । ୧୯୭୪ରେ ସିଏ ଓଡ଼ିଶାରୁ ରାଜ୍ୟସଭାକୁ ନିର୍ବାଚିତ ହେଲେ । ୧୯୭୭ରେ ମୋରାରଜୀ ମନ୍ତ୍ରୀମଣ୍ଡଳରେ ସେ ସ୍ୱାସ୍ଥ୍ୟମନ୍ତ୍ରୀ ଥିଲେ । ସେତେବେଳେ ଉଭୟ ସୋସାଲିଷ୍ଟ ରାଜନୀତି ଓ ଓଡ଼ିଶାର ରାଜନୀତିରେ ତୀବ୍ର ଗୃହ ବିବାଦ ଲାଗିଥିଲା । ସେତେବେଳେ ମଝିରେ ମଝିରେ ରବି ରାୟ ଓଡ଼ିଶା ଆସି ମୁଖ୍ୟମନ୍ତ୍ରୀ ହୁଅନ୍ତୁ ବୋଲି କଥା ଉଠୁଥିଲା । କିନ୍ତୁ ମୁଁ ଜାଣିଥିଲି ଯେ ରବି ରାୟ ରାଜ୍ୟ ରାଜନୀତିରେ ଭାଗ ନେବେ ନାହିଁ ।

୧୯୮୯ରେ ରବି ରାୟ ଜନତା ଦଳ ଟିକଟରେ ଲୋକସଭାକୁ ନିର୍ବାଚିତ ହେଲେ । ଡିସେମ୍ବର ୧୯ ତାରିଖରେ ସେ ଲୋକସଭାର ବାଚସ୍ପତି ରୂପେ ନିର୍ବାଚିତ ହେଲେ । ସେତେବେଳେ ସେ ଘୋଷଣା କରିଥିଲେ ଯେ ସେ ଲୋକସଭାର ଅଧକ୍ଷ ଥିଲା ପର୍ଯ୍ୟନ୍ତ ଦଳ ରାଜନୀତିର ଉର୍ଦ୍ଧ୍ୱରେ ନିରପେକ୍ଷ ଭାବରେ କାର୍ଯ୍ୟ କରିବେ । ୧୯୯୦ ନଭେମ୍ବରରେ ଜନତାଦଳର ବିଭାଜନ ହେଲା । ୫୮ ଜଣ ସଭ୍ୟ ନୂଆ ଦଳ ଗଢ଼ିଲେ । ରବି ରାୟଙ୍କ ସମାଧାନ ଗଣତାନ୍ତ୍ରିକ ରାଜନୀତିରେ ଆଦର୍ଶ ହୋଇ ରହିଲା । ଆଉ ଗୋଟିଏ ଘଟଣା ହେଉଛି ସୁପ୍ରିମକୋର୍ଟର ଜଣେ ବିଚାରପତିଙ୍କୁ ବହିଷ୍କାର କରିବାପାଇଁ ରାଷ୍ଟ୍ରପତିଙ୍କୁ ପରାମର୍ଶ ଏବଂ ତାଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗ ବିଚାର ପାଇଁ ତିନିଜଣିଆ କମିଟି ଗଠନ । ଏ ସବୁ ଭାରତର ଗଣତାନ୍ତ୍ରିକ ବ୍ୟବସ୍ଥାରେ ଆଦର୍ଶ ହୋଇ ରହିଲା ।

ଲୋହିଆ ଏକାଡ଼େମୀ ହେଉ କିମ୍ବା ଗ୍ରାମବିକାଶ ଫାଉଣ୍ଡେସନ ହେଉ, ଇଣ୍ଡୋ ତିବ୍ବତ ମୈତ୍ରୀ ସଂଘ ହେଉ କିମ୍ବା ଲୋକଶକ୍ତି ଅଭିଯାନ ହେଉ କିମ୍ବା ବିଭିନ୍ନ ରାଜନୈତିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ହେଉ, ଆମ ଦିଜଣ ଏକାଠି ହାତ ଧରାଧରି ହୋଇ ଚାଲିଛୁ । ରବି ରାୟଙ୍କର ସବୁଠୁ ବଡ଼ ଗୁଣ ହେଉଚି ଯେ ଉଚ୍ଚାକାଂକ୍ଷା ଓ

ହୀନମନ୍ୟତା ଉଭୟକୁ ସିଏ ଅପସନ୍ଦ କରନ୍ତି । ପୁଣି ତାଙ୍କ ମତ "ବ୍ରିଟିଶ ସରକାର ଦେଢ଼ ଶହ ବର୍ଷ ଭିତରେ ଭାରତବର୍ଷକୁ ଯେତେ ଧ୍ୱଂସ କରିନଥିଲା, ଏ ଦେଶୀ ସରକାରମାନେ ବେଶି କରୁଛନ୍ତି ।"କୁ ଆଜି ଅନେକ ବୁଦ୍ଧିଜୀବି ଗ୍ରହଣ କରୁଛନ୍ତି । ସମ୍ଭବତଃ ରାଜନୈତିକ, ଐତିହାସିକ ଓ ସାଂସ୍କୃତିକ ସମସ୍ୟାଗୁଡ଼ିକ ବିଷୟରେ ସନ୍ଦମତି ଆମ ଘନିଷ୍ଠତା ପାଇଁ ଦାୟୀ ।

ଯେଉଁମାନେ ପରମ୍ପରା ବିରୋଧି, ସେଇ ପରମ୍ପରା ସାମ୍ବିଧାନିକ ପରମ୍ପରା ହେଉ, ସାଂସଦୀୟ ପରମ୍ପରା ହେ, ସାମାଜିକ କିମ୍ବା ସାଂସ୍କୃତିକ ପରମ୍ପରା ହେଉ, ସେମାନେ ରାଜନୈତିକ ଅପରାଧୀ । ପରମ୍ପରାକୁ ଅନ୍ଧବିଶ୍ୱାସ କହି ପୋପାଡି ଦେବାଠୁ ବଡ ଭୁଲ କିଛି ନାହିଁ । ବିବିଧତା ଆମ ପରମ୍ପରାର ଅଙ୍ଗ । ବିବିଧତାକୁ ସମ୍ମାନ କରିବା ପରମ୍ପରାକୁ ସମ୍ମାନ କରିବା ସହ ସମାନ । ରବି ରାୟଙ୍କର ଆଉ ଗୋଟିଏ ଗୁଣ ହେଉଛି କ୍ଷମତା କିମ୍ବା ପଦ ପଦବୀ ପାଇଁ ଉଦାସୀନତା । ମୁଖ୍ୟମନ୍ତ୍ରୀ ହେଉ କିମ୍ବା ରାଜ୍ୟପାଳ ହେଉ ଯେତେବେଳେ ତାଙ୍କ ପାଖକୁ ଆସିଚି ସେ ତାକୁ ଫେରେଇ ଦେଇଛନ୍ତି । ମୋର ମନେ ଅଛି, ଥରେ ରାତି ଦଶଟା ସାଢ଼େ ଦଶଟା ବେଳେ ଆମ ପିଲା ଆସି କହିଲା, ପ୍ରଧାନମନ୍ତ୍ରୀ ଆସୁଛନ୍ତି । ସେତେବେଳେ ରବିବାବୁ ଓ ମୁଁ ବସି ଗପସପ ହେଉଥିଲୁ । ହଠାତ ଝଡ଼ପରି ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର ଘର ଭିତରକୁ ପଶି ଆସିଲେ । ସିଏ କହିବା ଆରମ୍ଭ କଲେ, ରବି ତୁ ସ୍ପିକର ପାହିଆ ଛାଡ଼ି ମୋ ମନ୍ତ୍ରୀମଣ୍ଡଳରେ ଯୋଗ ଦେ । ଆମେ ଦିହେଁ ଅବାକ ହୋଇଗଲୁ । ରବି ରାୟ କହିଲେ, ଚନ୍ଦ୍ରଶେଖର ତୋ ମୁଣ୍ଡ ଖରାପ ହୋଇଗଲାଣି । ସ୍ପିକର ପଦ ଛାଡ଼ି ମୁଁ ମନ୍ତ୍ରୀମଣ୍ଡଳ କୁ ଯିବି ? ଏ ବିଷୟରେ ରବିବାବୁଙ୍କ ମତ ମୁଁ ଜାଣେ । ଏଇ ବହିରେ ଥିବା ଗୋଟିଏ ସାକ୍ଷାତକାରରେ ସ୍ପିକର ପଦରୁ ଯାଇ ଯେଉଁମାନେ ରାଜ୍ୟ ବା କେନ୍ଦ୍ରରେ ମନ୍ତ୍ରୀମଣ୍ଡଳରେ ଯୋଗ ଦେଇଛନ୍ତି ସେମାନଙ୍କୁ ସିଏ ନାପସନ୍ଦ କରିଛନ୍ତି ।

ରବି ରାୟ ସାମ୍ପ୍ରଦାୟିକତାର ବିରୋଧି । ସାମ୍ପ୍ରଦାୟିକତା ଆମ ଦିହିକି କେବଳ ଦୁଃଖ ଦିଏ ନାହିଁ, ରାଗ ବଢ଼ାଏ । ସାମ୍ପ୍ରଦାୟିକତାର ସାଙ୍ଗ ହିଂସା, ହତ୍ୟା, ବଳାତ୍କାର ଆଉ ଲୁଟତରାଜ । ଇନ୍ଦିରାଙ୍କ ମରଣ ବେଳେ ଶିଖଙ୍କ ଉପରେ ଦିଲ୍ଲୀରେ ହୋଇଥିବା ଅତ୍ୟାଚାର, ଗୁଜରାଟରେ ମୁସଲମାନଙ୍କ ଉପରେ ହୋଇଥିବା ଅତ୍ୟାଚାର କିମ୍ବା ଗୁଜରାଟରେ ହୋଇଥିବା ମୁସଲମାନ ପୋଡି କିମ୍ବା ଓଡ଼ିଶାରେ ହୋଇଥିବା ଖ୍ରୀଷ୍ଟିଆନ ପୋଡି ଆମ ଛାତି ଭିତରେ ନିଆଁ ଲଗେଇ ଦେଇଛି । ଲୁହ ନକାନ୍ଦି ଆମେ ରକ୍ତ କାନ୍ଦିଚୁ ।

ଭାରତ ବହୁଜାତି, ବହୁ ଧର୍ମ, ବହୁ ଅସ୍ମିତା, ବହୁ ସଂସ୍କୃତିର ଦେଶ । ବିଭିନ୍ନତାକୁ ସମ୍ମାନ ଦେଖେଇବା ଏଠି ରାଜ୍ୟଗଠନର ପ୍ରଥମ ପାହାଚ । ରବି ରାୟ ଓଡ଼ିଶାର କୋଣ କୋଣରେ ଥିବା ଗାଁ ବୁଲି ଦେଖିଛନ୍ତି । ଲୋହିଆ, ଗାନ୍ଧିଙ୍କ ପଟ୍ଟଶିଷ୍ୟ ଭାବରେ ସିଏ ହେଉଛନ୍ତି ତୃଣମୂଳ ରାଜନୀତିଜ୍ଞ ।

ରାଜନୀତିରେ ରବି ରାୟ ବିକଳ୍ପ ସନ୍ଧାନୀ । କିନ୍ତୁ ତାଙ୍କ ଯାତ୍ରା ସଙ୍ଗିନୀ ସରସ୍ୱତୀ ସ୍ୱାଇଁଙ୍କି ଛାଡ଼ି ରବି ରାୟଙ୍କ ଖୋଜା ଅସମ୍ପୂର୍ଣ୍ଣ । ସରସ୍ୱତୀ ଡାକ୍ତରାଣୀ । ସିଏ ସମାଜ ସେବିକା । ସୁଲେଖିକା କିନ୍ତୁ ଲୋକେ ଯାହା ଦେଖି ମଧ ଦେଖନ୍ତି ନାହିଁ ସିଏ ହେଉଛନ୍ତି ରବି ରାୟଙ୍କ ଛାଇ । ସିଏ ରବି ରାୟଙ୍କୁ ପଣତ ଉହାଡ କରି 'ବୁରୀ ନଜରବାଲା'ଙ୍କ ଠାରୁ ଦୂରରେ ନରଖି ଥିଲେ ରବି ରାୟ ହୁଏତ ଏତେ ସଫଳତା ପାଇନଥାନ୍ତେ ।

ମୋର ଯେଉଁମାନେ ଘନିଷ୍ଠ ସେମାନଙ୍କ ବିଷୟରେ ଲେଖିବା ମୋ ପକ୍ଷରେ କଷ୍ଟ । ଉଭୟ ରବି ରାୟ ଓ ସରସ୍ୱତୀ ସ୍ୱାଇଁ ସ୍ନେହର ଭଣ୍ଡାର । ତାଙ୍କ ସାଙ୍ଗରେ ମିଶିଥିବା ଲୋକେ କଣିକାଏ ଲେଖାଏ ସ୍ନେହ ପାଇଛନ୍ତି । କିନ୍ତୁ ମୁଁ ସେ ସ୍ନେହ ସାଗରରେ ବୁଡ ମାରିଚି । ସମ୍ଭବତଃ ସେଇଥିପାଇଁ ମତେ ମୁଖବନ୍ଧ ଲେଖିବାକୁ କୁହାଯାଇଚି । ମୁଁ ବିଶ୍ୱାସ କରୁଚି ଯେ ନୂଆ ପୀଢ଼ିର ପିଲାଏ ରବିରାୟଙ୍କ ଆଦର୍ଶରେ ଆପଣାକୁ ଗଢ଼ିବାକୁ ପ୍ରେରଣା ପାଇବେ । ପୁରୁଣା ବନ୍ଧୁମାନେ ଏଇ ଦର୍ପଣରେ ଅତୀତର ସ୍ମୃତିକି ଘଷି ମାଜି ଦେଖି ଆନନ୍ଦ ଅନୁଭବ କରିବେ ।

ବି ୧୮୮, ବରମୁଣ୍ଡା ଡୁପ୍ଲେକ୍ସ, ଭୁବନେଶ୍ୱର
୧୯.୦୭.୨୦୦୪

**ଦେବୀପ୍ରସନ୍ନ ପଟ୍ଟନାୟକ**
ପ୍ରାକ୍ତନ ନିର୍ଦ୍ଦେଶକ
ଭାରତୀୟ ଭାଷା ସଂସ୍ଥାନ

# ପଦେ କଥା

# ବର୍ତ୍ତମାନ ରବି ରାୟ କେଉଁଠି ?

ଶ୍ରୀଯକ୍ତ ରବି ରାୟଙ୍କ ରାଜନୈତିକ ଜୀବନ ଓ ବ୍ୟକ୍ତିଗତ ଜୀବନ ମଧ୍ୟରେ କୌଣସି ବ୍ୟବଧାନ ଥିବା ପରି ମନେ ହୁଏନି । ବ୍ୟକ୍ତିଗତ ଜୀବନରେ ତାଙ୍କର ଚାଲିଚଳନ ଯେପରି ସରଳ, ସେହିପରି ରାଜନୈତିକ ଜୀବନ ନିଷ୍କପଟ । ତାଙ୍କରି ଜନଜୀବନ ସାଧୁତାକୁ ପାଥେୟ କରି ଚାଲିଛି । ଛାତ୍ର ଜୀବନରୁ ଆଦର୍ଶବାଦିତା ହିଁ ତାଙ୍କର ପୁଞ୍ଜି । ରେଭେନ୍‌ସା କଲେଜ ଛାତ୍ର ସଂଘର ସଭାପତି, ସମାଜବାଦୀ ଯୁବ ଜନସଭାର କର୍ମକର୍ତ୍ତାଠାରୁ ଆରମ୍ଭ କରି ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ରାଷ୍ଟ୍ରୀୟ କର୍ମକର୍ତ୍ତା, ୧୯୬୭ ଲୋକସଭାରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ସଂସଦୀୟ ଦଳର ନେତା ପରେ ରାଜ୍ୟ ସଭା ସଦସ୍ୟ, ଜନତାଦଳର ରାଷ୍ଟ୍ରୀୟ ସାଧାରଣ ସଂପାଦକ, କେନ୍ଦ୍ରରେ ୧୯୭୮ ସାଲରେ ଜନତା ସରକାରରେ ସ୍ୱାସ୍ଥ୍ୟମନ୍ତ୍ରୀ ଓ ୧୯୮୯ରେ ଲୋକସଭାର ବାଚସ୍ପତି ପରି ବିଭିନ୍ନ କର୍ମକ୍ଷେତ୍ରରେ ରହି ନିଜର କର୍ତ୍ତବ୍ୟ ନିର୍ବାହ କରିଛନ୍ତି । ଜଣେ ନିଷ୍ଠାପର ସାଂସଦ ଭାବରେ ଦେଶର ସଂହତି, ଧର୍ମନିରପେକ୍ଷତାର ସୁରକ୍ଷା ସହ ଆର୍ଥିକ ଓ ସାମାଜିକ ନ୍ୟାୟ ପାଇଁ ସର୍ବଦା ଆଗଧାଡ଼ିର ଜାତୀୟ ନେତାଙ୍କ ଭୂମିକାରେ ପ୍ରତିନିଧିତ୍ୱର ଦାୟିତ୍ୱ ସଂପାଦନା କରିଛନ୍ତି ।

ଆର୍ଥିକ ଉଦାରୀକରଣ ଓ ସାମ୍ରାଜ୍ୟବାଦୀ ଆର୍ଥିକ ନୀତି ଦ୍ୱାରା ଆମ ଦେଶର ସାର୍ବଭୌମତ୍ୱ ଯେତେବେଳେ ବିପଦଗ୍ରସ୍ତ ହୋଇଛି ସେତିକିବେଳଠାରୁ ରବିରାୟ ସଂସଦ ଓ ସଂସଦ ବାହାରେ ସାଲିସହୀନ ସଂଗ୍ରାମରେ ନିଜକୁ ନିୟୋଜିତ କରିଛନ୍ତି । ୧୯୯୬ ଲୋକସଭା ନିର୍ବାଚନବେଳେ ଘୋଷଣା କରିଦେଲେ ଯେ ଭାରତୀୟ ଜନତା ପାର୍ଟି ପରି ସାଂପ୍ରଦାୟିକ ଦଳ ସହ ବୁଝାମଣା କରୁଥିବା କିମ୍ବା ଗୋଲାମୀ ଅର୍ଥନୀତିର ସମର୍ଥକ ଯେକୌଣସି ରାଜନୈତିକ ଦଳର ରାଜନୀତି ଭିତରେ ରହିବା ପ୍ରଶ୍ନ ଉଠୁନାହିଁ । ନିର୍ବାଚନରେ ଆଉ ଲଢ଼ିବେ ନାହିଁ ବୋଲି ଘୋଷଣା କରିବାପରେ ଅନେକ ରାଜନୈତିକ ପର୍ଯ୍ୟବେକ୍ଷକମାନଙ୍କ ପାଇଁ ପ୍ରଶ୍ନବାଚି ହୋଇ ଯାଇଥିଲା - ଏ ଘୋଷଣା କେତେ ଦିନ ପାଇଁ ? କିନ୍ତୁ ରବିବାବୁ ନିଜ ବଚନରେ ଅଟଳ ରହିଲେ ଓ ନିଜକୁ ପୁଣି ଜଣେ ଅତୀତର ଯୁବ ସମାଜବାଦୀ (young socialist) ରୂପେ ମନେକରି ଜାତୀୟ ସ୍ତରରେ ଅଭିଯାନ ଚାଲୁ ରଖିଛନ୍ତି ଉଚ୍ଚସ୍ତରୀୟ ଭ୍ରଷ୍ଟାଚାର, କ୍ଷମତାର କେନ୍ଦ୍ରୀକରଣ, ଭୋଗବାଦ ଅର୍ଥନୀତି ଓ ସାଂପ୍ରଦାୟିକ ଶକ୍ତି ବିରୋଧରେ । ଏହି ୪ଟିକୁ ଦେଶର ମୁଖ୍ୟ ଶତ୍ରୁ ରୂପେ ଚିହ୍ନଟ କରି ଏକ ବିକଳ୍ପ ଅନ୍ୱେଷଣରେ ଲୋକଶକ୍ତି ନିର୍ମାଣ ପାଇଁ ଆଗେଇ ଚାଲିଛନ୍ତି । ତାଙ୍କରି ପ୍ରେରଣାକୁ ଆଧାର କରି 'ଲୋକଶକ୍ତି ଅଭିଯାନ' ଜାତୀୟ ସ୍ତରରେ ଗଠନ ହେଲା ୧୯୯୭ରେ । ଏହି ଜାତୀୟ ମଞ୍ଚ ସହ ବିଭିନ୍ନ ଜନ ଆନ୍ଦୋଳନ, ଜନ ସଂଗଠନର ନେତୃମଣ୍ଡଳୀ ତଥା ଦେଶର ବହୁ ବୁଦ୍ଧିଜୀବୀ ଯୋଡ଼ି ହୋଇ ପାରିଛନ୍ତି । ଦେଶକୁ ଆର୍ଥିକ ଗୋଲାମୀରୁ ବଞ୍ଚାଇବା ପାଇଁ ମହାତ୍ମାଗାନ୍ଧି, ନିଜର ରାଜନୈତିକ ଗୁରୁ ଡକ୍ଟର ରାମ ମନୋହର ଲୋହିଆ ଓ ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ ବିଚାର ଦର୍ଶନ ଓ ସଂଗ୍ରାମର ପଥକୁ ବର୍ତ୍ତମାନର ବିଶ୍ୱୀକରଣ ପରି ସାମ୍ରାଜ୍ୟବାଦୀ ରାକ୍ଷସ ବିରୋଧରେ ଅସ୍ତ୍ର ରୂପେ ପ୍ରୟୋଗ କରିବାକୁ ବାରଂବାର ରବି ବାବୁ ଜନତାଙ୍କ ପାଖରେ ନିଜର ବିଚାର ରଖି ବିକଳ୍ପର ଅନ୍ୱେଷଣ ଜାରି ରଖି ଚାଲିଛନ୍ତି । ନୂଆ ଜନବାଦୀଶକ୍ତି ନିର୍ମାଣର ସଫଳତା ପାଇଁ ଆଶା ବାନ୍ଧିଛନ୍ତି ।

ରବିବାବୁ ତିବ୍ବତର ସ୍ୱାଧୀନତା ସଂଗ୍ରାମ ପାଇଁ ମୂଳରୁ ଭାରତରେ ମହାମାନ୍ୟ ଦଲାଇଲାମାଙ୍କୁ ସହଯୋଗ କରି ଆସିଛନ୍ତି ବୋଲି ୨୦୦୩ ଡ଼ିସେମ୍ବର ୧୮ ତାରିଖ ଦିନ

''ଲାଇଟ ଅଫଦି ଟ୍ରୁଥ'' (ସତ୍ୟର ଆଲୋକ) ଆନ୍ତର୍ଜାତୀୟ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ରବି ବାବୁ ୭୮ ବର୍ଷ ବୟସ ଅତିକ୍ରମ କଲାବେଳେ ବାର୍ଦ୍ଧକ୍ୟ ତାଙ୍କୁ ପ୍ରଭାବିତ କରିପାରିନାହିଁ । କ୍ଷମତାର ରାଜନୀତିରେ ଥାଇ ବି କ୍ଷମତାର ଅନ୍ଧପୁଟୁଳି ତାଙ୍କ ଚକ୍ଷୁ ବନ୍ଧନ କରି ପାରିନାହିଁ । ଯେଉଁଦିନ ପ୍ରଧାନମନ୍ତ୍ରୀ ମୋରାରଜୀଭାଇଙ୍କୁ କ୍ୟାବିନେଟମନ୍ତ୍ରୀ ପଦରୁ ଇସ୍ତଫା ପତ୍ର ଦେଲେ ଓ ପୁଣି ଚରଣ ସିଂହଙ୍କ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲା ସେଦିନ କ୍ଷମତାରୁ ହଟିବା ମୁହୂର୍ତ୍ତରେ ମୁଁ ଦେଖିଛି, ସେ ମାନସିକ ସ୍ତରରେ ସ୍ଥିତପ୍ରଜ୍ଞ । ପୁଣି ଦେଖିଛି, ନିର୍ବାଚନ ରାଜନୀତିରୁ ମୁକ୍ତହୋଇ ଲୋକଶକ୍ତି ଅଭିଯାନର ପ୍ରାକ୍ କାଳରେ ଆନ୍ଧ୍ରପ୍ରଦେଶର ରାଜ୍ୟପାଳ ପଦ ଗ୍ରହଣ କରିବାକୁ ପ୍ରସ୍ତାବ ନେଇ ଆସିଥାନ୍ତି ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁ । ସେଦିନ ରୋକ୍‌ଠୋକ୍ ଭାବେ ଧନ୍ୟବାଦ ଦେଇ ତାଙ୍କୁ ବିଦାୟ ଦେଇ କହିଥିଲେ ''ମୁଁ ଆଉ ଏହି କାମ ପାଇଁ ନାହିଁ । ମୋର ଲୋକଙ୍କ ପାଖରେ ଦେଶ ପାଇଁ ଅନେକ କାମ କରିବାର ଅଛି ।'' ସେତେବେଳକୁ ରବିବାବୁଙ୍କ ହୃଦରୋଗ ଜନିତ ସ୍ୱାସ୍ଥ୍ୟ ଖରାପ ଥାଏ । ଅନେକ ରାଜନୈତିକ ନେତାମାନଙ୍କ ପରି ସେ ନିଜର ମୁଖ ସ୍ୱାଚ୍ଛନ୍ଦ୍ୟ ଓ ସ୍ୱାସ୍ଥ୍ୟରକ୍ଷା ପାଇଁ ରାଜ୍ୟପାଳ ପଦକୁ ଗ୍ରହଣ କରିନେଇପାରିଥାନ୍ତେ, କିନ୍ତୁ ସେହି ପ୍ରଲୋଭନ କିମ୍ବା ଆକାଂକ୍ଷାରୁ ନିଜକୁ ମୁକ୍ତ ରଖିଛନ୍ତି ବୋଲି ସେ ସମସ୍ତଙ୍କ ପାଖରେ ମାଟିର ରବି - ରବି ରାୟ । ନିର୍ବାଚନ ଲଢ଼ିବା ପାଇଁ ତାଙ୍କରି ବନ୍ଧୁମାନେ ପ୍ରଧାନମନ୍ତ୍ରୀ ପଦରେ ରହି ପ୍ରବର୍ତ୍ତାଇଛନ୍ତି ଭିନ୍ନ ଭିନ୍ନ ସମୟରେ ସେ ଆଉ ପଙ୍କିଳ ରାଜନୀତିକୁ ଫେରିବାକୁ ମନ କରିନାହାନ୍ତି । କିନ୍ତୁ ପଙ୍କିଳ ତଥା ଭ୍ରଷ୍ଟ ରାଜନୀତିର ବିକଳ୍ପ ଜନବାଦୀ ରାଜନୀତି ରାଷ୍ଟ୍ର ତଥା ଜନତାଙ୍କ ପାଇଁ ଅନିବାର୍ଯ୍ୟ ବୋଲି ନିଜର ଅଭିଯାନକୁ ଅବ୍ୟାହତ ରଖିଛନ୍ତି ''ବିକଳ୍ପର ଅନ୍ୱେଷଣରେ ରବି ରାୟ'' ପୁସ୍ତକକୁ ।

ଏହି ଅଭିଯାନ କାହିଁକି ଓ କାହାପାଇଁ ତାଙ୍କରି ମୁହଁରୁ ନିର୍ଗତ (ବିଭିନ୍ନ ଖବର କାଗଜରେ ପ୍ରକାଶିତ) ବକ୍ତବ୍ୟ ସାଙ୍ଗକୁ ନିଜର ଲିଖିତ ଓ କଥିତ ବିଚାର ଗୁଡ଼ିକୁ ଏକ ପୁସ୍ତିକା ଆକାରରେ ଏକତ୍ରିତ କରିବା ସମୟର ଆବଶ୍ୟକତା ବୋଲି ମୁଁ ଉଚିତ ମନେ କରି ପାଠକମାନଙ୍କ ପାଖରେ ଉପସ୍ଥାପନ କରୁଛି ।

ରବିବାବୁଙ୍କ କର୍ମମୟ ଜୀବନ ଏକ ନଦୀର ନିରନ୍ତର ଧାର ପରି, ଓଡ଼ିଶାର ଜନଗଣ ଅନ୍ତତଃ ଜାଣନ୍ତୁ ଓଡ଼ିଶା ମାଟିରେ ଜନ୍ମ ହୋଇଥିବା ଏକ ସ୍ୱଚ୍ଛ ଓ ସଚ୍ଚୋଟ ରାଜନୈତିକ ବ୍ୟକ୍ତିତ୍ୱ ଶ୍ରୀ ରବିରାୟ ଭାରତବର୍ଷ ଓ ଆମ ରାଜ୍ୟର ଭବିଷ୍ୟତ ପାଇଁ କି କି ବିଚାର ରଖିଛନ୍ତି । ବର୍ତ୍ତମାନର ଅନ୍ଧାରରୁ ମୁକ୍ତି ପାଇଁ ଯୁବ ଛାତ୍ର ସମାଜ ଏହି ପୁସ୍ତକ ସହ ସୁପରିଚିତ ହେବା ଏକାନ୍ତ ପ୍ରୟୋଜନ । ସମାଜ, ପ୍ରଜାତନ୍ତ୍ର, ପ୍ରଗତିବାଦୀ ଓ ପର୍ଯ୍ୟବେକ୍ଷକ ଦୈନିକ ଖବରକାଗଜଗୁଡ଼ିକ ଶ୍ରୀ ରବିରାୟଙ୍କ ସାକ୍ଷାତକାର ପ୍ରକାଶିତ କରିଥିଲେ । ସେଗୁଡ଼ିକୁ ଏଠି ପୁନଃ ଉପସ୍ଥାପିତ କରାଯାଇଛି । ସେଥିପାଇଁ ସେହି ସମସ୍ତ ଖବରକାଗଜର ପରିଚାଳକ, ସଂପାଦକ ଓ ସାକ୍ଷାତକାର ଉପସ୍ଥାପକମାନଙ୍କୁ କୃତଜ୍ଞତା ଜଣାଉଛି ।

ଉକ୍ତ ବହି ପ୍ରକାଶନରେ ଲୋହିଆ ଏକାଡେମୀ ଟ୍ରଷ୍ଟର ସହଯୋଗ ରହିଛି । ପାଠକମାନଙ୍କ ପ୍ରତିକ୍ରିୟା ଅପେକ୍ଷାରେ .....

ପ୍ରଫୁଲ୍ଲ ଶାମସୁନ୍ଦର

# ଆମେ ବାଟ ହୁଡ଼ିଲୁ କେଉଁଠି ?
# ଏକ ବିକଳ୍ପ ଅନ୍ୱେଷଣରେ

ଭାରତ ଯେ ଗାନ୍ଧିଜୀଙ୍କୁ ଭୁଲି ଯାଇଛି ଏଥିରେ ସନ୍ଦେହ ନାହିଁ । ଯେହେତୁ ମହାତ୍ମା ଯେ ଜଣେ ସାଲିସହୀନ ସଂଗ୍ରାମୀ ଥିଲେ, ଭାରତର ଅଭିଜାତବର୍ଗ ତାଙ୍କୁ ଜାଣିଶୁଣି ଆଡ଼େଇ ଦେଇଛନ୍ତି । ଦେଶ ଏ ବର୍ଷ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାକୁ ଯାଉଛି ଅଥଚ ସ୍ୱାଧୀନତାର ଭଗୀରଥ ଓ ବିନ୍ଧାଣୀଙ୍କୁ ଆମେ ବିଧି ରକ୍ଷା ଦୃଷ୍ଟିରୁ ତାଙ୍କ ଜନ୍ମ ଦିନରେ ହିଁ କେବଳ ମନେ ପକାଉଛୁ । ଏହା ଏକ ବିଡ଼ମ୍ବନା ଓ ଆମ ପାଇଁ ଏକ ଦୁର୍ବିପାକ ଯେ ଦୁନିଆର ଅନ୍ୟ ଦେଶମାନଙ୍କର ଲୋକେ ଗାନ୍ଧିଜୀଙ୍କ ପନ୍ଥାକୁ ଆଦରି ନେଉଥିବାବେଳେ ନିଜ ଜନ୍ମଭୂମି, ନିଜ ଦେଶରେ ତାଙ୍କର ଅନାଦର ହେଉଛି । ଏଇ କଥା ମହାତ୍ମାବୁଦ୍ଧଙ୍କ କ୍ଷେତ୍ରରେ ମଧ ଘଟିଥିଲା । ଦୁଇ ହଜାର ବର୍ଷ ତଳେ ଦୁଃଖ ଜର୍ଜରିତ ଦୁନିଆକୁ ଯିଏ ଅହିଂସା ଓ ସଂବେଦନର ସନ୍ଦେଶ ଦେଇଥିଲେ, ତାଙ୍କୁ ତାଙ୍କର ନିଜ ଦେଶ ଭାରତ ପରିହାର କଲା ଯଦିଓ ଜାପାନ, ଚୀନ ଆଦି ବହୁ ଦେଶ ତାଙ୍କୁ ଆପଣାର କରିନେଲେ ।

ଏଭଳି ତ୍ରୁଟିର କାରଣ ଓ ନିଦାନ ଠାବ କରି ଆମେ ଯଦି ଉପଚାର ନ ନକରିବା ଓ କ୍ଷମତାସୀନବର୍ଗ କାହିଁକି ଜାଣିଶୁଣି ଗାନ୍ଧିଜୀଙ୍କ ବାଟରୁ ଦୂରେଇ ଗଲେ ସେ ସଂପର୍କରେ ଅନୁସନ୍ଧାନ ଓ ଆତ୍ମନିରୀକ୍ଷଣ ନ କରିବା ତେବେ ଆମେ ଏକ କୃତଘ୍ନ ଜାତି ରୂପେ ପରିଚିତ ହେବା ।

ଦେଶର ବିଭାଜନକୁ ଗାନ୍ଧିଜୀ ଯେ ଘୋର ବିରୋଧ କରୁଥିଲେ - ଏହା ଏକ ଜଣାଶୁଣା ଐତିହାସିକ ତଥ୍ୟ । ବିଭାଜନ ତାଙ୍କ ଶବ ଉପରେ ହେବ ଅର୍ଥାତ୍ ସେ ବଞ୍ଚିବେ ନାହିଁ, ଏକଥା ଗାନ୍ଧିଜୀ କହିଥିଲେ । ସେତେବଳର ଅଖିଳ ଭାରତ କଂଗ୍ରେସ କମିଟିର ମାତ୍ର ତିନି ଜଣ ନେତା ଗାନ୍ଧିଜୀଙ୍କୁ ସମର୍ଥନ କରିଥିଲେ, ସେମାନେ ହେଲେ ଖାନ୍ ଅବଦୁଲ୍ ଗଫୁର ଖାନ୍, ଜୟପ୍ରକାଶ ନାରାୟଣ ଓ ଡକ୍ଟର ରାମମନୋହର ଲୋହିଆ । ଦେଶ ବିଭାଜନଜନିତ ସାମ୍ପ୍ରଦାୟିକ ଦଙ୍ଗା ଗାନ୍ଧିଜୀଙ୍କୁ ଏତେ ମର୍ମାହତ କରିଥିଲା ଯେ ସେ ଅଗଷ୍ଟ ୧୫, ୧୯୪୭ର ସ୍ୱାଧୀନତା ଦିବସ ପାଳନରେ ଭାଗନେବାକୁ ମନା କରିଦେଇଥିଲେ । ଦେଶ ସ୍ୱାଧୀନ ହେବାର ମାତ୍ର ୭ ମାସ ଭିତରେ ଆତତାୟୀର ଗୁଳିରେ ସେ ଶହୀଦ ହୋଇଗଲେ ।

ଏତେ ଶୀଘ୍ର ମରଣ ମୁଖରେ ପଡ଼ିବେ ବୋଲି ଗାନ୍ଧିଜୀ ଆଶା କରିନଥିଲେ, ତେବେ ବି ସରକାରର ତ୍ରୁଟି ବିଚ୍ୟୁତିକୁ ଦର୍ଶାଇବାରେ ସେ ହେଳା କରିନଥିଲେ ଯଦିଓ ସରକାର ଜବାହରଲାଲ୍ ନେହେରୁଙ୍କ ନେତୃତ୍ୱରେ ଚାଲୁଥିଲା । ଗାନ୍ଧିଜୀ ଗୋଟିଏ ଲେଖା ଲେଖିଥିଲେ ଯାହାକୁ ତାଙ୍କର 'ଅନ୍ତିମ ବାଣୀ' ବୋଲି କୁହାଯାଏ । ସେଥିରେ ଦୁଇଟି ମୂଳ କଥା ଥିଲା ।

ପ୍ରଥମ ହେଲା କଂଗ୍ରେସକୁ ସଂପୂର୍ଣ୍ଣଭାବେ ଭାଙ୍ଗି ନିଶ୍ଚିହ୍ନ କରିଦିଆଯିବ ଯାହାଫଳରେ ବିଭିନ୍ନ ରାଜନୈତିକ ମତବାଦକୁ ଭିତ୍ତିକରି ଭିନ୍ନ ଭିନ୍ନ ରାଜନୈତିକ ଦଳ ସୃଷ୍ଟି ହେବେ ଓ ଭାରତର ସଂସଦୀୟ ଗଣତନ୍ତ୍ରକୁ ମଜବୁତ କରିବେ । ଦ୍ୱିତୀୟ କଥା ହେଲା - ଲୋକ ସେବକ ସଂଘ ନାମରେ ଗୋଟିଏ ସଂଘ ଗଠନ କରାଯିବ ଯାହାକି ଦଳୀୟ ରାଜନୀତି କରିବନାହିଁ ଓ ନିଃସ୍ୱାର୍ଥପର ଭାବରେ ଲୋକଙ୍କ ସେବାକରିବ । ନିଜର ନିଖୁଣ ମହାମାନବୀୟ ଦୂରଦୃଷ୍ଟି ବଳରେ ଗାନ୍ଧିଜୀ ଜଳଜଳ ଦେଖି ପାରୁଥିଲେ ଯେ ସ୍ୱାଧୀନତା ପରେ କଂଗ୍ରେସ ରହିଲେ ତାହା କ୍ରମେ କ୍ଷମତା ପିପାସୁ ସ୍ୱାର୍ଥାନ୍ୱେଷୀ ନେତାମାନଙ୍କର ସଂଗଠନରେ ପରିଣତ ହେବ । ଅନେକ ପୂର୍ବରୁ ଏପରିକି ୧୯୨୫ ମସିହାରେ ସେ ଲେଖିଥିଲେ ଯେ ''ମୁଁ ଚିଠି ପାଉଛି ଯେ କଂଗ୍ରେସ ଭିତରକୁ ବିଶୃଙ୍ଖଳା ଓ ଭ୍ରଷ୍ଟାଚାର ପଶିଆସୁଛି । ଏଭଳି ଲୋକ କଂଗ୍ରେସକୁ ଆସୁଛନ୍ତି ଯାହାଙ୍କର ଉଦ୍ଦେଶ୍ୟ ନିଜ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ କଂଗ୍ରେସକୁ ବ୍ୟବହାର କରିବା ।'' କଂଗ୍ରେସ ସଂଗଠନ ଉଦ୍ଦିଷ୍ଟ ଥିଲା ଭାରତକୁ ସ୍ୱାଧୀନ କରିବା ପାଇଁ । ଗାନ୍ଧିଜୀ ଯଥାର୍ଥରେ ଭାବିଥିଲେ ଯେ ତାଙ୍କ ସ୍ୱପ୍ନର ଭାରତ ଓ ତାର ସମାଜ ଗଠନରେ କଂଗ୍ରେସ କିଛି କାମ ଦେବ ନାହିଁ ।

ବିଧିର ବିଧାନ ଅଲଗା । ସେ ଆମଠୁ ଗାନ୍ଧିଜୀଙ୍କୁ ଛଡ଼ାଇ ନେଲା । ତାଙ୍କର ସ୍ୱପ୍ନ ସାର୍ଥକ କରିବାକୁ ସେ ବଞ୍ଚି ରହିଲେ ନାହିଁ । କଂଗ୍ରେସକୁ ଭାଙ୍ଗି ଦେବାପାଇଁ ଗାନ୍ଧିଜୀ ଦେଇଥିବା ପ୍ରସ୍ତାବକୁ ଅଖିଳ ଭାରତ କଂଗ୍ରେସ କମିଟି ପ୍ରତ୍ୟାଖ୍ୟାନ କଲା । ଗାନ୍ଧିଜୀଙ୍କ ଅନ୍ତିମ ଇଚ୍ଛାକୁ ସମ୍ମାନ ଦେବାକୁ ଜୟପ୍ରକାଶ ସ୍ମରଣ କରାଇଦେଲେ ମଧ୍ୟ କିଛି ଫଳ ହେଲା ନାହିଁ । କ୍ଷମତା ଉପଭୋଗ କରିବାକୁ କଂଗ୍ରେସ ରହିଲା । ଭାରତର ଜନଜୀବନରେ ଏହାର ବିଭତ୍ସ ପ୍ରଭାବ ଓ ପରିଣତି ଆଜି ସମସ୍ତଙ୍କ ଆଗରେ ସ୍ପଷ୍ଟ । ନେହେରୁ ଓ ତାଙ୍କ ଭଳି କଂଗ୍ରେସ ନେତାମାନେ ଗାନ୍ଧିଜୀଙ୍କ ଅନ୍ତିମ ବାଣୀକୁ ନ ମାନିବାରୁ ଗାନ୍ଧିଜୀଙ୍କର ସତର୍କବାଣୀ ସତ ହେଲା ।

ସ୍ୱାଧୀନ ଭାରତ ସରକାରଙ୍କର ପ୍ରଥମ ଭୁଲ ହେଲା ସମ୍ବିଧାନ ବିଧାୟକ ସଭାର ସେଇ ସର୍ବସମ୍ମତ ପ୍ରସ୍ତାବଟି କାର୍ଯ୍ୟକାରୀ ନ କରିବା ଯାହାକୁ ନାଥୁରାମ ଗଡ଼ସେ ଗାନ୍ଧିଜୀଙ୍କୁ ମାରିବା ପରିପ୍ରେକ୍ଷୀରେ, ସାଂପ୍ରଦାୟିକତାକୁ ଜବତ୍ କରିବା ପାଇଁ, ସମ୍ବିଧାନ ସଭା ଗ୍ରହଣ କରିଥିଲା । ଶ୍ରୀ ଅନନ୍ତ ଶୟନମ୍ ଆୟାଙ୍ଗାର ଯିଏ ପରେ ଲୋକସଭାର ବାଚସ୍ପତି ହୋଇଥିଲେ ୧୯୪୮ ଏପ୍ରିଲ ୧୩ ତାରିଖରେ ସମ୍ବିଧାନ ସଭାରେ ନିମ୍ନ ପ୍ରସ୍ତାବଟି ଆଣିଥିଲେ । ''ଦେଶର ଏକତା ଓ ଅଖଣ୍ଡତା ଦୃଷ୍ଟିରୁ ଭାରତର ଜନଜୀବନରୁ ସାଂପ୍ରଦାୟିକତାକୁ ସମୂଳେ ଲୋପ କରିବାକୁ ହେବ । ଅତଏବ ଯେଉଁ ସାମ୍ପ୍ରଦାୟିକ ସଂଗଠନ ନିଜ ସମ୍ବିଧାନରେ କିମ୍ବା ନିଷ୍ପତ୍ତି ବଳରେ କୌଣସି ବ୍ୟକ୍ତିଙ୍କୁ ଧର୍ମ, ଜାତିଆଣ କିମ୍ବା ଗୋଷ୍ଠୀ ଭିତ୍ତିରେ ସଭ୍ୟ କରିବ କିମ୍ବା ସଭ୍ୟ ପଦରୁ ବାଦ ଦେବ ଯେ ସଂଗଠନକୁ ସଂପ୍ରଦାୟର ସୀମିତ ତଥା ପ୍ରକୃତ ଧାର୍ମିକ ସାଂସ୍କୃତିକ ଓ ଶିକ୍ଷାଗତ କାର୍ଯ୍ୟଛଡ଼ା ଅନ୍ୟ ସାର୍ବଜନୀନ କାର୍ଯ୍ୟ

କରିବାକୁ ଦିଆଯିବ ନାହିଁ । ଏଥିପାଇଁ ଆବଶ୍ୟକୀୟ ଆଇନଗତ ଓ ପ୍ରଶାସନିକ ପଦକ୍ଷେପ ନିଆଯିବ ।'' ଏପ୍ରସ୍ତାବ କାର୍ଯ୍ୟକାରୀ ହେଲା ନାହିଁ । ଏହା କାର୍ଯ୍ୟକାରୀ ହୋଇଥିଲେ ସାଂପ୍ରଦାୟିକତା କିମ୍ବା ସାଂପ୍ରଦାୟିକ ସଂଗଠନ ନିଜର ବିଷଧାରୀ ଫଣା ଉଠାଇ ପାରି ନଥାନ୍ତେ । ଏଭଳି ଦେଶରକ୍ଷାକାରୀ ପ୍ରସ୍ତାବ କାହିଁକି ଅକାମୀ ହେଲା ତା'ର କାରଣ ମଧ କେହି କହୁନାହାନ୍ତି । ସାଂପ୍ରଦାୟିକତା ଅପରାଧ ଓ ଭ୍ରଷ୍ଟାଚାର ସହ ସଲା ସୂତ୍ରା ହୋଇ, ଦେଶକୁ କର୍କଟ ରୋଗ ଭଳି ଗ୍ରାସି ଚାଲିଛି ।

ଦେଶର ବର୍ତ୍ତମାନ ଅବସ୍ଥାକୁ ଟିକିଏ ଅନୁଧ୍ୟାନ କରାଯାଉ । ୧୯୯୫ ମସିହାରେ ଦେଶର ତତ୍କାଳୀନ ଗୃହ ସଚିବ ଶ୍ରୀ ଭୋରା ସରକାରଙ୍କୁ ଏକ ରିପୋର୍ଟ ଦେଲେ । ଗୁଇନ୍ଦା ବିଭାଗର ତଥ୍ୟକୁ ଭିତ୍ତିକରି ସେ ଲେଖିଲେ ଯେ ''ମାଫିଆ ବା ଦୁର୍ଦ୍ଦାନ୍ତ ଅପରାଧୀମାନଙ୍କର ଜାଲ ଦେଶସାରା ବିଛେଇ ହୋଇ ଯାଇଛି । ଏହା ସମାନ୍ତରାଳ ସରକାର ଚଳାଉଛି ଓ ବୈଧ ସରକାରୀ କଳକୁ ଅକାମୀ କରିଦେଇଛି । ଅପରାଧୀ ଗ୍ୟାଙ୍ଗ, ସ୍ମଗଲର ଗ୍ୟାଙ୍ଗ, ଡ୍ରଗସ୍ ମାଫିଆ, ଅସ୍ତ୍ରଧାରୀବାହିନୀ ଓ କଳାବଜାରୀ ପୁଞ୍ଜିପତିଗୋଷ୍ଠୀ ଦିନକୁ ଦିନ ବଢ଼ି ଚାଲିଛନ୍ତି ଓ ବ୍ୟାପି ଚାଲିଛନ୍ତି । କିଛି ବର୍ଷ ହେଲା ସେମାନଙ୍କର ବ୍ୟାପକ ସଂପର୍କ ସୂତ୍ର ଗଢ଼ିଉଠିଛି ଓ ସେମାନଙ୍କ ନିବିଡ଼ ସଂପର୍କରେ ବଡ଼ ଅଫିସର, ସ୍ଥାନୀୟ ସରକାରୀ କର୍ମକର୍ତ୍ତା, ରାଜନେତା, ସାମ୍ବାଦିକ ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଥିବା ବେସରକାରୀ ବ୍ୟକ୍ତି ରହିଛନ୍ତି । ଏହି ଗ୍ୟାଙ୍ଗ ବା ସିଣ୍ଡିକେଟମାନଙ୍କର ବିଦେଶରେ ସଂପର୍କ ସୂତ୍ର ଅଛି । ବିଦେଶୀ ଗୁପ୍ତଚର ସଂସ୍ଥାମାନଙ୍କ ସହ ମଧ ଏମାନଙ୍କର ଯୋଗାଯୋଗ ଅଛି । ବଡ଼ ସ୍ମଗଲିଙ୍ଗ ଗ୍ୟାଙ୍ଗମାନଙ୍କର କୁକର୍ମ ଅର୍ଥନୈତିକ କ୍ଷେତ୍ରରେ ବ୍ୟାପକ । ହାୱାଲା ଦେଣନେଣ, କଳାଟଙ୍କା କାରବାର ଓ ବିଭସ ସମାନ୍ତରାଳ ଅର୍ଥବ୍ୟବସ୍ଥା ଦ୍ୱାରା ସେମାନେ ଆମର ଅର୍ଥନୀତିକୁ ଅତି ଦୁର୍ବଳ କରି ପକାଇଛନ୍ତି । ଏହି ବଡ଼ ଗ୍ୟାଙ୍ଗମାନେ ଯଥେଷ୍ଟ ଅର୍ଥବଳ, ଗୁଣ୍ଡାବଳ ଓ ସାମାଜିକ ପ୍ରତିଷ୍ଠା ହାସଲ କରିଛନ୍ତି ଏବଂ ସରକାରୀ କଳକୁ ମୂଳରୁ ଚୂଳ ପର୍ଯ୍ୟନ୍ତ ଭ୍ରଷ୍ଟ କରି ଦେଇଛନ୍ତି, ଯାହାଫଳରେ ତଦନ୍ତକାରୀ ଓ ଦଣ୍ଡପ୍ରଦାନକାରୀ ସଂସ୍ଥାମାନଙ୍କର ହାତ ଏମାନଙ୍କ ବେକରେ ପଡ଼ିବା ଏକପ୍ରକାର ଅସମ୍ଭବ ହୋଇ ପଡ଼ିଛି । ଏପରିକି ବିଚାର ବିଭାଗର ଲୋକେ ମଧ ଏମାନଙ୍କର ପ୍ରେମ ଫାଶରୁ ବାଦ ପଡ଼ିନାହାନ୍ତି ।''

ଅପରାଧୀକରଣ ସଂପର୍କରେ ସ୍ୱୟଂ ସ୍ୱରାଷ୍ଟ୍ର ସଚୀବଙ୍କର ଏପରି ଭୟାବହ ରିପୋର୍ଟ ଉପରେ ସମସ୍ତ ରାଜନୈତିକ ଦଳ ଐକ୍ୟବଦ୍ଧ ପ୍ରତିକ୍ରିୟା ପ୍ରକାଶ କରିବା କଥା, କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ, ତତ୍କାଳୀନ ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଚୌହାନଙ୍କ ଦ୍ୱାରା ଆହୂତ ସର୍ବଦଳୀୟ ବୈଠକ ଏ ସଂପର୍କରେ କୌଣସି ନିଷ୍ପତ୍ତି ନେଇପାରିଲା ନାହିଁ । ଏଥିରୁ ସ୍ପଷ୍ଟ ପ୍ରମାଣିତ ଯେ, ରାଜନୈତିକ ଦଳମାନଙ୍କର ଚେତା ପଶିନାହିଁ ଓ ସେମାନେ ଦାୟିତ୍ୱହୀନ ଭାବେ କାର୍ଯ୍ୟ କରୁଛନ୍ତି ।

ଦେଖିଲେ ଦୁଃଖ ଲାଗୁଛି ଯେ, ଗଣତନ୍ତ୍ରର ସର୍ବୋଚ୍ଚ ସଂସ୍ଥା ସଂସଦରେ ଲୋକ ପ୍ରତିନିଧି ଭାବେ କେତେକ ଅପରାଧ ପୃଷ୍ଠଭୂମିର ବ୍ୟକ୍ତି ମଧ ଆସନ ଦଖଲ କରିଛନ୍ତି ।

ଲୋକସଭାରେ ସେ ଭଳି ସଭ୍ୟଙ୍କ ସଂଖ୍ୟା ପ୍ରାୟ ୪୦ । ଆଉଟଲୁକ୍ ପତ୍ରିକାର ସଂପାଦକ ବିନୋଦ ମେହେଟ୍ଟା ସେଇସବୁ ଦଳର ନେତାମାନଙ୍କୁ ଚିଠି ଲେଖିଲେ ଯାହାଙ୍କର ଲୋକସଭା ସଭ୍ୟ ଅପରାଧୀ ଭାବେ ଚିହ୍ନଟ ହୋଇଛନ୍ତି । ନେତାମାନେ ଚିଠିର ଉତ୍ତର ଦେବା ଦୂରର କଥା ପ୍ରାପ୍ତି ସ୍ୱୀକାର ମଧ୍ୟ କଲେ ନାହିଁ । ଉତ୍ତର ପ୍ରଦେଶର ଗତ ବିଧାନସଭାରେ ୧୮୫ ସଭ୍ୟଙ୍କର ଅପରାଧୀ ରେକର୍ଡ ଥିଲା । ଗତ ୧୯୯୬ ନିର୍ବାଚନରେ ସେଠାରେ ପ୍ରାୟ ୫୦୦ ଅପରାଧୀ ମୁଖ୍ୟ ରାଜନୈତିକ ଦଳମାନଙ୍କପକ୍ଷରୁ ପ୍ରାର୍ଥୀ ହୋଇଥିଲେ । ଅବସରପ୍ରାପ୍ତ ସି.ବି.ଆଇ. ଅଧିକାରୀ ଶ୍ରୀ ଏନ୍.କେ.ସିଂହ ତାଙ୍କର ସ୍ମରଣୀୟ ପୁସ୍ତକ ''ପ୍ଲେନ ଟ୍ରୁଥ୍'' (ଖାଣ୍ଟି ସତ୍ୟ) ବହିରେ ଦର୍ଶାଇଛନ୍ତି, କିପରି ନିଜ ଉପରେ ପଡ଼ିଲେ ରାଜନେତା ଓ ବଡ଼ ଅଫିସର ତଦନ୍ତ ଓ ବିଚାର ପ୍ରକ୍ରିୟାକୁ ଭଣ୍ଡୁର କରି ଦିଅନ୍ତି । କିସ୍‌ସା କୁର୍ସିକା ମାମଲା, ଚିନି ସ୍କାମ୍, ସେଣ୍ଟ କିଟସ ଜାଲିଆତି ଇତ୍ୟାଦି ଘଟଣା ପ୍ରମାଣ କରୁଛି ଯେ ଆଇନ୍ ପ୍ରକ୍ରିୟାକୁ ବିଫଳ କରିବାକୁ ଏକ ମାରାତ୍ମକ ଚକ୍ରାନ୍ତ ଚାଲିଛି ।

ଭ୍ରଷ୍ଟାଚାର ଦୁନିଆଁ ସାରା ହେଉଛି ବୋଲି କହି ସ୍ୱର୍ଗତ ଇନ୍ଦିରା ଗାନ୍ଧୀ ନିଜ ମାନସିକ ଦୁର୍ବଳତାହିଁ ପ୍ରଦର୍ଶନ କରିଥିଲେ । ବର୍ଲିନର ଗୋଟିଏ ସଂଗଠନ ଗତ ବର୍ଷ ତଥ୍ୟ ସଂଗ୍ରହ କରି ଭାରତକୁ ସବୁଠାରୁ ଅଧିକ ଭ୍ରଷ୍ଟ ଦେଶମାନଙ୍କ ତାଲିକାରେ ରଖିଥିଲେ । ପାକିସ୍ଥାନ, ଇଣ୍ଡୋନେସିଆ, ଫିଲିପାଇନସ୍ ଓ ଇଟାଲୀର ନାଁ ସେଥିରେ ଥିଲା । ଏକ ମୋଟାମୋଟି ହିସାବରୁ ଜଣାପଡ଼ିଛି ଯେ, ନରସିଂହ ରାଓଙ୍କ ଅମଳରେ ପ୍ରାୟ ପଚାଶ ହଜାର କୋଟି ଟଙ୍କାର ଜାତୀୟ ଧନ ବ୍ୟାଙ୍କ ସ୍କାମ୍, ହାୱାଲା, ଚିନି ସ୍କାମ୍ ଓ ଟେଲି ଯୋଗାଯୋଗ ଆଦି ଭ୍ରଷ୍ଟାଚାରରେ ଲୁଟ୍ ହୋଇ ଶାସନରେ ଥିବା କେତେକ ଖଳନାୟକଙ୍କ ପାଖକୁ ଯାଇଛି । ନରସିଂହ ରାଓ ଏତେ ସତ୍ତ୍ୱେ ବି ଇସ୍ତଫା ଦେଇନଥିଲେ । ଏବେ ସ୍ପଷ୍ଟ ପ୍ରମାଣିତ ହୋଇଛି ଯେ ରାଓ ସରକାର ବାସ୍ତବରେ ଭ୍ରଷ୍ଟାଚାରର ଗଙ୍ଗୋତ୍ରୀ । ନରସିଂହ ରାଓ ୧୯୯୧ରେ ଉଦାରୀକରଣ ଓ ଜଗତୀକରଣର ଯେଉଁ ଭୁଲ୍ ନୀତିକୁ ଡ଼ାକି ଆଣିଲେ, ଭ୍ରଷ୍ଟାଚାର ତାହାର ସହୋଦର ଭାଇ ଭାବେ ବହୁଗୁଣିତ ହୋଇ ଜନଜୀବନରେ ବ୍ୟାପିଗଲା । ଗାନ୍ଧିଜୀଙ୍କ ଅମଳରୁ ଆମେ ସ୍ୱଦେଶୀ, ସ୍ୱାବଲମ୍ବନ ଓ ସଂପୂର୍ଣ୍ଣ ରୋଜଗାରର ଯେଉଁ ଅବଧାରଣାକୁ ଉତ୍ତରାଧିକାରୀ ଭାବେ ପାଇଥିଲୁ ସେ ନୀତିକୁ ଆମେ ଗୋଇଠା ମାରିଦେଲୁ । ଜଗତୀକରଣ ଆମ ସମ୍ବିଧାନର ପବିତ୍ର ମୌଳିକ ନୀତିର ବିରୋଧୀ । ଚିଲିର ରାଷ୍ଟ୍ରପତି ଆଲେଣ୍ଡେଙ୍କୁ ଆମେରିକାର ନିର୍ଦ୍ଦେଶରେ ଚକ୍ରାନ୍ତକରି ହତ୍ୟା କରାଯାଇଥିବା କଥା କେହି ଭୁଲିପାରିବେ ନାହିଁ । ଚିଲିର ରାଷ୍ଟ୍ରପତି ଆଲେଣ୍ଡେ ବହୁରାଷ୍ଟ୍ରୀୟ କମ୍ପାନୀ ଅଧୀନରେ ଥିବା ନିଜ ଦେଶର ତମ୍ବାଖଣିକୁ ନିଜ ଦେଶର ହିତ ଦୃଷ୍ଟିରୁ ଓ ନିର୍ବାଚନ ପ୍ରତିଶ୍ରୁତି ପାଳନ କରିବାକୁ ଯାଇ ଜାତୀୟକରଣ କରିବାକୁ ତାଙ୍କୁ ଆମେରିକା ନିର୍ଦ୍ଦେଶରେ ରାଷ୍ଟ୍ରପତି ଭବନରେ ହତ୍ୟା କରାଯାଇଥିଲା । ପେପ୍‌ସିକୋଲା ଓ କୋକାକୋଲା ଭଳି ବହୁରାଷ୍ଟ୍ରୀୟ କମ୍ପାନୀ ଯେଉଁ ଦେଶକୁ ଯାଉଛନ୍ତି, ସେ ଦେଶରେ ଯାବତୀୟ ଅପରାଧ ଘଟାଉଛନ୍ତି । ସେଭଳି ଗୋଟିଏ

କମ୍ପାନୀ ଏନ୍‌ରନ୍ ବଡ଼େଇ କରି କହିଲା ଯେ ଭାରତୀୟଙ୍କୁ ଶିକ୍ଷା ଦେବା ପାଇଁ ଏ ଷାଠିଏ କୋଟି ଟଙ୍କା ଖର୍ଚ୍ଚ କରିଛି, ଅନ୍ୟ ଭାଷାରେ କହିଲେ ସେ ଲାଞ୍ଚ ଦେଉଛି ।

ସରକାର ଦାବି କରୁଛି ଯେ, ବିଗତ ବର୍ଷମାନଙ୍କରେ ଗରିବ ଲୋକଙ୍କ ସଂଖ୍ୟା କମିଛି । ଅଥଚ ପ୍ରୟୋଗାତ୍ମକ ଅର୍ଥନୀତି ଗବେଷଣାର ଜାତୀୟ ପରିଷଦ ସ୍ପଷ୍ଟ କରିଛି ଯେ ଦେଶର ଶତକଡ଼ା ୫୨ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖାତଳେ । ସେଇ ଦରିଦ୍ରଲୋକଙ୍କ ମଧ୍ୟରୁ ଅଧେ ଦିନକୁ ଦଶ ଟଙ୍କା ବି ରୋଜଗାର କରିବା ଅବସ୍ଥାରେ ନଥିବାବେଳେ ବାକି ୫୦ ଶତକଡ଼ା ଦିନକୁ ଖୁବ୍ ବେଶୀ ଅଢ଼େଇରୁ ପାଞ୍ଚ ଟଙ୍କା ଯାଏ ରୋଜଗାର କରନ୍ତି । ନିକଟରେ ମହାରାଷ୍ଟ୍ରର ଅମରାବତୀ ଜିଲ୍ଲାର ମହାଘାଟ ତାଲୁକରେ ୩୦୦ ପିଲା ଖାଦ୍ୟ ନପାଇ ମରିଗଲେ । କିଛିଦିନ ତଳେ ଓଡ଼ିଶାର ମରୁଡ଼ି-ଅନାହାର ମୃତ୍ୟୁ ପ୍ରପୀଡ଼ିତ ଜିଲ୍ଲା କଳାହାଣ୍ଡିରେ ୩୦୦ରୁ ଅଧିକ ଲୋକ ଭଲ ପିଇବା ପାଣି ନପାଇ ପେଟରୋଗରେ ମଲେ । କିନ୍ତୁ ଏ ସଂଖ୍ୟା ତାଳରୁ ତିଳେ । ଅନାହାର ମୃତ୍ୟୁ ଏକ ସର୍ବଭାରତୀୟ ଘଟଣା ହୋଇଗଲାଣି । ଯେତେବେଳେ ଆମ ଜୀବନ କ୍ରମେ ମୂଲ୍ୟବୋଧହୀନ ହୋଇ ଚାଲିଛି, ଗଣ୍ଡିଏ ଖାଇ ଖଣ୍ଡିଏ ପିନ୍ଧି ଚଳିବା ମୁସ୍କିଲ୍ ହୋଇ ପଡ଼ିଛି ସେତିକିବେଳେ ରାଜନେତାମାନଙ୍କର ଦୁର୍ନୀତି ଆମ ସାଧାରଣ ଜୀବନକୁ ଆହୁରି ପଙ୍ଗୁ କରି ଦେଉଛି ଓ ଆମ ଅସ୍ତିତ୍ୱକୁ ବିପନ୍ନ କରିଛି । ସଂସଦୀୟ ଗଣତନ୍ତ୍ର ସଫଳ ହେବାକୁ ହେଲେ ରାଜନୀତିରେ ନୈତିକତା ରହିବା ଏକାନ୍ତ ଆବଶ୍ୟକ । ଆମେ ସଂସଦୀୟ ଗଣତନ୍ତ୍ରକୁ ଜୀବନର ଧାରା ବୋଲି ଗ୍ରହଣ କରି ନେଇଛୁ । ସଂବିଧାନ ବିଶାରଦ ଆଇଭର ଜେନିଂ କହିଛନ୍ତି, ''ଜଣେ ମନ୍ତ୍ରୀର ମୌଳିକ ଯୋଗ୍ୟତା ହେଲା ସାଧୁତା ଓ ସଚ୍ଚୋଟ ପଣିଆ । ଏହି ଯୋଗ୍ୟତା ମନ୍ତ୍ରୀ ପାଖରେ ଥିବା ଯଥେଷ୍ଟ ନୁହେଁ, ଏହା ଅଛି ବୋଲି ଜଳଜଳ ଦିଶୁଥିବା ଦରକାର ।'' ନ୍ୟାୟମୂର୍ତ୍ତି ହିଦାୟତୁଲ୍ଲା ଦୃଢ଼ଭାବେ କହିଥିଲେ, ''ସାଧାରଣ ଜୀବନରେ ଥିବା ଲୋକ ନାଁରେ ଅଭିଯୋଗ ଯେ ନହେବ ସେକଥା ନୁହେଁ କିନ୍ତୁ ଅଭିଯୋଗ ହେବା ମାତ୍ରେ ଦୋଷ ମୁକ୍ତ କିମ୍ବା ସାବ୍ୟସ୍ତ ହେବାପାଇଁ ତଦନ୍ତ ହେବା ଆବଶ୍ୟକ ।''

ଶାସନକଳ ଲୋକ ପ୍ରତିନିଧିଙ୍କ ନିକଟରେ ଉତ୍ତରଦାୟୀ ରହିବାଟାହିଁ ଗଣତନ୍ତ୍ରର କଷଟି ପଥର । ୧୯୫୬ ମସିହା ନଭେମ୍ବର ୨୪ ତାରିଖରେ ଲୋକସଭାରେ ପଣ୍ଡିତ ନେହେରୁ ଏ ସଂପର୍କରେ ମାର୍ଗ ନିର୍ଦ୍ଦେଶ କରିଥିଲେ । ରେଳ ଦୁର୍ଘଟଣାରେ ମର୍ମାହତ ହୋଇ ଲାଲବାହାଦୁର ଶାସ୍ତ୍ରୀ ମନ୍ତ୍ରିମଣ୍ଡଳରୁ ଦେଇଥିବା ଇସ୍ତଫାକୁ ଗ୍ରହଣ କରି ନେହେରୁ କହିଥିଲେ, ''ଏ ଦେଶରେ ଯାହା ଘଟୁଛି ତାହାର ଚୂଡ଼ାନ୍ତ ଦାୟିତ୍ୱ ଭାରତ ସରକାରର । ଆମେ ସେ ଦାୟିତ୍ୱରୁ ଖସିଯିବାକୁ ଚାହୁଁନା । ଆମେ ସ୍ୱୀକାର କରୁଛୁ ଯେ ରେଳବିଭାଗରେ ଯାହା ଘଟିବ ତା'ର ଦାୟିତ୍ୱ ବିଶେଷ ଭାବରେ ରେଳ ମନ୍ତ୍ରଣାଳୟର, ଯଦିଓ ସରକାରର ଅନ୍ୟମାନେ ମଧ୍ୟ ସେଥିରେ ଅଂଶୀଦାର ।'' ଅଥଚ କିଛିଦିନ ତଳେ ଉତ୍ତରପ୍ରଦେଶରେ ପୁରୁଷୋତ୍ତମ ଏକସପ୍ରେସ୍ ଦୁର୍ଘଟଣାଗ୍ରସ୍ତ ହୋଇ ପ୍ରାୟ ପାଞ୍ଚଶହ ଲୋକ ମଲେ ଓ ମନ୍ତ୍ରୀ

ଇସ୍ତଫା ଦେବାକୁ ସଂସଦରେ ବାରମ୍ବାର ଦାବି ହେଲେ ମଧ୍ୟ ତତ୍କାଳୀନ ରେଳମନ୍ତ୍ରୀ ଇସ୍ତଫା ଦେବାତ ଦୂରର କଥା, ସେ ବିଷୟରେ ଚିନ୍ତା ମଧ୍ୟ କଲେ ନାହିଁ । ନିଜେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପି.ଭି. ନରସିଂହ ରାଓ ସେତେବେଳେ ରେଳ ବିଭାଗ ଦାୟିତ୍ୱରେ ଥିଲେ କାରଣ ରେଳମନ୍ତ୍ରୀ ଜାଫର ଶରିଫ ଚିକିତ୍ସା ପାଇଁ ଲଣ୍ଡନରେ ଥିଲେ ।

ଆମେ ଯେତେବେଳେ ଗାନ୍ଧିଜୀଙ୍କ ମହାନ୍ ନେତୃତ୍ୱରେ ସ୍ୱାଧୀନତାର ଲଢ଼େଇ ଲଢୁଥିଲୁ, ସେତେବେଳେ ଦୁନିଆଁର ଦେଶମାନଙ୍କ ମଧ୍ୟରେ ଆମ ଭାରତର ନୈତିକ ଭାବମୂର୍ତ୍ତି ଖୁବ୍ ଜାଜ୍ୱଲ୍ୟମାନ ଥିଲା । ସ୍ୱାଧୀନତା ପରେ ଆମେ ଯେ ସୁନାମ ହରାଇଛୁ, ଏହା ଜଣାଶୁଣା କଥା । ଭାରତର ସାଧାରଣ ଜୀବନରେ ସବୁ କ୍ଷେତ୍ରରେ ହୋଇଥିବା ଏ ପତନ ପାଇଁ କେବଳ ସରକାରରେ ଥିବା ନେତାମାନେ ଦାୟୀ ନୁହଁନ୍ତି, ସବୁ ଦଳ ଓ ମତବାଦର ରାଜନେତା, ବୁଦ୍ଧିଜୀବୀ ଓ ଅଭିଜାତବର୍ଗ ଏଥିପାଇଁ ସମାନ ଭାବେ ଦାୟୀ । ଏହା ଆନନ୍ଦର କଥା ଯେ, ବିଚାରପତିମାନେ ଏ ଜମାଟବନ୍ଧା ଅନ୍ଧାରରେ ଦୀପ ଶିଖା ହୋଇ ଲୋକଙ୍କ ଆସ୍ଥା ଲାଭ କରିଛନ୍ତି ।

ଜର୍ମାନର ଲୋକେ ଗାନ୍ଧିଜୀଙ୍କୁ କିଭଳି ସମ୍ମାନ ଦେଇଛନ୍ତି ତାହା ଉଲ୍ଲିଖିତ ସମ୍ବାଦରୁ ଜଣାପଡ଼େ । ବର୍ଲିନର ନୂଆ ସଂଗ୍ରହାଳୟରେ ଅନ୍ୟ ଦୁର୍ଲ୍ଲଭ ବସ୍ତୁ ସହ ମହାତ୍ମାଗାନ୍ଧିଙ୍କ ସ୍ମୃତି ମଧ୍ୟ ସାଇତା ହୋଇ ରହିଛି । ଭାରତର ଜାତିର ଜନକଙ୍କ ପାଇଁ ଜର୍ମାନ କର୍ତ୍ତୃପକ୍ଷ ସଂଗ୍ରହାଳୟରେ ସ୍ୱତନ୍ତ୍ର ସ୍ଥାନ ଦେଇଛନ୍ତି, ଅହିଂସା ଓ ସତ୍ୟାଗ୍ରହକୁ ସମଗ୍ର ଦୁନିଆ ଆଗରେ ସବୁ ପ୍ରକାର ଏକଛତ୍ରବାଦର ସଫଳ ଆୟୁଧ ବୋଲି ପ୍ରତିପାଦିତ କରିବାକୁ । ମହାତ୍ମାଙ୍କ ନିମିତ୍ତ ଉଦ୍ଦିଷ୍ଟ କକ୍ଷର ପ୍ରବେଶ ଦ୍ୱାରରେ ଆଇନଷ୍ଟାଇନ୍‌ଙ୍କ ବିଖ୍ୟାତ ଉକ୍ତି ଉଲ୍ଲିଖିତ ହୋଇଛି, - ''ଆଗାମୀ ବଂଶଧରମାନେ ବିଶ୍ୱାସ କରି ପାରିବେ ନାହିଁ ଯେ ରକ୍ତ ମାଂସ ଶରୀର ଧରି ଏଭଳି ଏକ ମଣିଷ ପୃଥିବୀ ଉପରେ କେବେ ପାଦ ରଖିଥିଲା ।'' ଗାନ୍ଧିଜୀଙ୍କର ବାଣୀ ହେଲା - ''ସତ୍ୟାଗ୍ରହ ଏଭଳି ଏକ ଅସ୍ତ୍ର ଯାହା ନିରବରେ ଓ ଧିରେ ଧିରେ କାମକଲା ଭଳି ଜଣାଯାଏ, କିନ୍ତୁ ବାସ୍ତବରେ ତା'ଭଳି ତୀକ୍ଷ୍ଣ ଓ ବିଚକ୍ଷଣ ଅସ୍ତ୍ର ନାହିଁ ।'' ...''ଏକ ରାଜନୈତିକ ଅସ୍ତ୍ରଭାବେ ଅହିଂସାତ୍ମକ ପ୍ରତିରୋଧ ଆଜି ବି ନବୀନ । ଏହାର ସମ୍ଭାବନା ଏବେ ବି ଅଜଣା ରହିଥିବାରୁ ଲୋକେ ଓ ପ୍ରଚାର ମାଧ୍ୟମ ଏଥିପ୍ରତି ଆକୃଷ୍ଟ ହୋଇ ପାରିନାହାଁନ୍ତି ।'' ଲେଖାରେ ଆହୁରି କୁହାଯାଇଛି ଯେ ଅଚଳ ଅମଲାତନ୍ତ୍ର, ଅସ୍ତ୍ର ପ୍ରତିଯୋଗିତା ଓ ଏକଛତ୍ରବାଦ ବିରୁଦ୍ଧରେ ଅହିଂସା ଏକ ସଫଳ କ୍ରମବର୍ଦ୍ଧିଷ୍ଣୁ ଶକ୍ତି । ଯେକୌଣସି ପ୍ରକାର ହିଂସା ବିରୁଦ୍ଧରେ ଏହା ସବୁଠାରୁ ଫଳପ୍ରଦ ଓ ଶକ୍ତିଶାଳୀ ଶକ୍ତି । କକ୍ଷରେ ସୁଶୋଭିତ ହୋଇଛି ବ୍ରିଟିଶ ବିରୁଦ୍ଧରେ ଗାନ୍ଧିଜୀଙ୍କ ଅହିଂସାତ୍ମକ ସଂଗ୍ରାମର ସଂକ୍ଷିପ୍ତ ବିବରଣୀର ଫଟୋଚିତ୍ର ଓ ମାଞ୍ଚେଷ୍ଟରର ବୟନ ଶିଳ୍ପ ଶ୍ରମିକଙ୍କ ସହ ସାକ୍ଷାତ, ବ୍ରିଟିଶ କମନ ସଭାରେ ଭାଷଣ, ସ୍ୱଦେଶୀ ବସ୍ତ୍ର ବ୍ୟବହାର ପାଇଁ ଆହ୍ୱାନ, ବ୍ରିଟିଶ ବସ୍ତ୍ର ବର୍ଜନ ଓ ଦହନ, ଦାଣ୍ଡି ଯାତ୍ରା ଓ ଭାରତ ଛାଡ଼ ଡ଼ାକରା ଆଦି ଘଟଣାର ବିରଳ ଚିତ୍ର ।'

ଜର୍ମାନୀର ସାଧାରଣ ମଣିଷ ମନରେ ଗାନ୍ଧିଜୀଙ୍କ ପଦାଙ୍କ ଅନୁସରଣ କରିବାର ଆକାଂକ୍ଷା ତୀବ୍ରହୋଇ ଉଠିଛି । ସତେ ଯେପରି ସେମାନେ ଗାନ୍ଧିଜୀଙ୍କୁ ତାଙ୍କର ତ୍ରାଣକର୍ତ୍ତା ବୋଲି ମାନି ନେଇଛନ୍ତି । ଆମେ ଏଥିରୁ ଶିଖିବା ଉଚିତ୍ । ଆମ ଦେଶ ଓ ସମାଜକୁ ଧ୍ୱଂସ ମୁଖରୁ ରକ୍ଷା କରିବା ପାଇଁ ସଶକ୍ତ ଜନ ଆନ୍ଦୋଳନ ଗଢ଼ି ତୋଳିବାକୁ ଆମେ ସଂକଳ୍ପବଦ୍ଧ ହେବା ଆବଶ୍ୟକ ।

ଅନ୍ଧକାର ଯେତେ ଗାଢ଼ ହେଲେ ମଧ୍ୟ ସବୁବେଳେ ଆଶାର କିରଣ ଦେଖାଦେଇଥାଏ । ପ୍ରତିଷ୍ଠିତ ସଂସ୍ଥାମାନଙ୍କ ଦ୍ୱାରା ଗବେଷଣାଲବ୍ଧ ତଥ୍ୟରୁ ଜଣାଯାଏ ଯେ, ସଂଭ୍ରାନ୍ତ ଲୋକଙ୍କ ଅପେକ୍ଷା ଗରିବ ଲୋକହିଁ ଗଣତନ୍ତ୍ରକୁ ନିଜର ଗରଜ ଭାବି ରକ୍ଷା କରୁଛନ୍ତି । ସବୁଠୁ ଗରିବ ମହିଳା ମଧ୍ୟ ଭୋଟର ମହତ୍ୱ ବୁଝୁଛି । ଯେତେବେଳେ ବୈଧତା ନେଇ ସଂକଟ ଦେଖା ଦେଇଛି, ଲୋକେ ସରକାର ଓ ସଂସ୍ଥା ଉପରେ ଦୋଷ ଦେଇଛନ୍ତି କିନ୍ତୁ ଗଣତନ୍ତ୍ର ପ୍ରତି ନିଜର ଆସ୍ଥା ଅତୁଟ ରଖିଛନ୍ତି । ଲୋକେ ଗଣତନ୍ତ୍ର ଉପରେ ବିଶ୍ୱାସ ଅବ୍ୟାହତ ରଖିଥିଲାବେଳେ ରାଜନେତାମାନେ ନିଜର ବିଶ୍ୱସନୀୟତା ହରାଇ ବସିଛନ୍ତି । ନିର୍ବାଚନ କମିଶନ ରାଜନୈତିକ ଦଳମାନଙ୍କ ଅପେକ୍ଷା ଅଧିକ ସମ୍ମାନ ଅର୍ଜନ କରିଛନ୍ତି । ଅଣ ରାଜନୈତିକ ଲୋକ ସମୂହ ହିଁ ଭାରତର ସବୁଠୁ ବଡ଼ ରାଜନୈତିକ ଦଳ । ରାଜନୈତିକ ଜୀବନର ମୁଖ୍ୟଧାରାକୁ ଲୋକଙ୍କୁ ଅଣାଯାଇନାହିଁ । ଜନସାଧାରଣଙ୍କୁ ଶକ୍ତିଶାଳୀ କରିବାକୁ ହେଲେ ଏଭଳି ଏକ ବ୍ୟାପକ ଜନ ଆନ୍ଦୋଳନ ଲୋଡ଼ା, ଯେଉଁ ଆନ୍ଦୋଳନ ସମ୍ମାନତାର ଆଦର୍ଶ ସହ ଗାନ୍ଧିଜୀଙ୍କର ସତ୍ୟାଗ୍ରହ ଓ ଗଠନମୂଳକ କାର୍ଯ୍ୟପ୍ରତି ନିଷ୍ଠାବାନ୍ ହେବ । ଏଭଳି ଆନ୍ଦୋଳନରେ ଅଂଶୀଦାର ହେବାକୁ ଚାହୁଁଥିବା ନିଷ୍ଠାପର ବ୍ୟକ୍ତି ଏ ଦେଶରେ ଅନେକ ଅଛନ୍ତି । ସେମାନେ ଏକାଠି ବସି ଏ ସଂପର୍କରେ ବିଚାର ଆଲୋଚନା କରିବା ଆବଶ୍ୟକ । ଗାନ୍ଧିଜୀଙ୍କର ଗଣଆନ୍ଦୋଳନ ଓ ସାହିତ୍ୟ ନୂତନ ଜନ ଆନ୍ଦୋଳନର ମାର୍ଗଦର୍ଶନ ହେବ । ଦକ୍ଷିଣ ଆଫ୍ରିକା ଓ ଭାରତରେ ଗାନ୍ଧିଜୀଙ୍କ ଅଭିଯାନର ଅନୁଭୂତି ଦୁନିଆଁର ଭ୍ରାନ୍ତିକାରୀ ଜ୍ଞାନ ଭଣ୍ଡାରର ଅଂଶ ହୋଇଗଲାଣି । ଆମେ ସେଥିରୁ ପ୍ରେରଣା ନେବା । ସ୍ୱର୍ଗତ ମାର୍ଟିନ୍ ଲୁଥର୍ କିଙ୍ଗଙ୍କର ଏକ ସ୍ମରଣୀୟ ଉକ୍ତି ଉଦ୍ଧାର କରି ମୁଁ ମୋର ବକ୍ତବ୍ୟ ସମାପ୍ତ କରିବି । କିଙ୍ଗ କହିଥିଲେ, ''ମୁଁ ଅନ୍ୟ ଦେଶକୁ ଭ୍ରମଣ କରିବାକୁ ଯାଏ କିନ୍ତୁ ଭାରତ ଆସିଛି ତୀର୍ଥଯାତ୍ରୀ ହୋଇ । ମୋ' ପାଇଁ ଭାରତ ଅର୍ଥ ହେଉଛି ମହାତ୍ମା ଗାନ୍ଧୀ, ଯୁଗ ଯୁଗ ପାଇଁ ଜଣେ ମହାପୁରୁଷ । ଭାରତ ଏଭଳି ଏକ ଭୂମି, ଯେଉଁଠି ସାମାଜିକ ପରିବର୍ତ୍ତନ ପାଇଁ ଅହିଂସାର ଅସ୍ତ୍ର ଶାଣିତ ହୋଇଛି, ଯାହାକୁ ମୋ' ଲୋକ ଆମେରିକାର ଦକ୍ଷିଣାଞ୍ଚଳରେ ବ୍ୟବହାର କରିଛନ୍ତି । ସେ ଅସ୍ତ୍ର ଆମ ପାଇଁ ଫଳପ୍ରଦ ଓ ସ୍ଥାୟୀ ପ୍ରମାଣିତ ହୋଇଛି ।'' ଆମେ କ'ଣ କିଙ୍ଗ୍‌ଙ୍କର ଏହି କଥାରୁ କିଛି ଶିଖିବାରେ ଆତ୍ମିକ ସାହସ ଜୁଟାଇ ପାରିବା ନାହିଁ ? ଯଦି ପାରିବା, ତେବେ ହୁଏତ ଆମର ଦେଶ ଓ ସମାଜ ବଞ୍ଚିଯିବ ।

(ବି.ଦ୍ର. : ଶ୍ରୀଯୁକ୍ତ ରବିରାୟଙ୍କ ସଂପର୍କରେ ପରିଚୟ ଦେବାର ଆବଶ୍ୟକତା ହିଁ ଉଠିବା କଥା ନୁହେଁ କିନ୍ତୁ ଯେତେବେଳେ ଆଜିର ଯୁବାବର୍ଗଙ୍କ ଭିତରୁ କେତେକ ଗାନ୍ଧିଜୀଙ୍କ ନାମ ବି

କହିପାରନ୍ତି ନାହିଁ ଏବଂ ଲାଲ୍, ବାଲ୍, ପାଲ୍‌ଙ୍କ ପୂରାନାମ ପଚାରିଲେ ଲାଲକୃଷ୍ଣ ଆଡ୍‌ଭାନୀ, ବାଲ ଠାକରେ ଓ ସ୍ୱରାଜ ପାଲଙ୍କ ନାମ ସେ ବି ବହୁତ କଷ୍ଟରେ କହିଥାଆନ୍ତି । ସେ ପରିସ୍ଥିତିରେ ଶ୍ରୀଯୁକ୍ତ ରବିରାୟଙ୍କ ସଂକ୍ଷିପ୍ତ ପରିଚୟ ପାଇଁ ଅନ୍ତତଃ ଦୁଇଧାଡ଼ି ଲେଖିବାକୁ ବାଧ ହେଉଛି । ଆଜିର ଯୁବସମାଜର ଏହି ଅଜ୍ଞତା ପାଇଁ ସେମାନଙ୍କର ତିଳେମାତ୍ର ଦୋଷ ନାହିଁ । ବିଶ୍ୱବ୍ୟାଙ୍କ ଏବଂ ବହୁଦେଶୀୟ କଂପାନୀମାନଙ୍କ ନିର୍ଦ୍ଦେଶରେ ଆମ ଦେଶରେ ପ୍ରାୟୋଜିତ ଶିକ୍ଷା ବ୍ୟବସ୍ଥା ଏବଂ ସଂସ୍କୃତିର ଏ ହେଉଛି ପ୍ରାଥମିକ ଉପସର୍ଗ । ପ୍ରାଥମିକ ସ୍କୁଲର ପାଠ୍ୟକ୍ରମରେ ବହୁଦେଶୀୟ କଂପାନୀମାନଙ୍କ ନାମ ଓ ସାମଗ୍ରୀ ବିଷୟରେ ପଢ଼ା ହେଉଛି ଅଥଚ ଆମ ସ୍ୱାଧୀନତା ସଂଗ୍ରାମ ବିଷୟରେ ପ୍ରାୟ ତଥ୍ୟ ଦିଆଯାଉନାହିଁ । ଆମ ପ୍ରଚାର ମାଧ୍ୟମର ପ୍ରଭାବରେ ପିଲାମାନେ ନିଜ ବାପା ମାଆଙ୍କ ନାମ ଓ ପରିଚୟ ଜାଣିବା ପୂର୍ବରୁ ମାଇକେଲ ଜାକସନ୍ ବା ଦାଲେର ମହେନ୍ଦିଙ୍କ ବିଷୟରେ ସବିଶେଷ ଜାଣି ପାରୁଛନ୍ତି । ଆମ ଦେଶର ତଥାକଥିତ ବୁଦ୍ଧିଜୀବୀ ଏବଂ ମଧ୍ୟବିତ୍ତଶ୍ରେଣୀର ନିଷ୍କ୍ରିୟତାର ଏ ପରିଣାମ । ଯଦି ଏବେଠାରୁ ଜାଗ୍ରତ ନହେବା ତେବେ ଆଗକୁ ତ ଭୟଙ୍କର ପରିଣାମ ।

ଆବାଲ୍ୟ ସଂଗ୍ରାମୀ, ସ୍ୱାଧୀନତା ଆନ୍ଦୋଳନର ତୁଙ୍ଗ ଛାତ୍ରନେତା, ଯାହାଙ୍କ ଜାତକରେ ନୈତିକତା ବିରୁଦ୍ଧରେ ସାଲିସ କରିବାର ପ୍ରଶ୍ନ ନାହିଁ, ସାଂସଦ ହିସାବରେ ଆନ୍ତର୍ଜାତିକ ସ୍ତରରେ ଖ୍ୟାତ ଏବଂ ସମ୍ମାନିତ, ଦେଶର ବିଭିନ୍ନ ବିଭାଗରେ ପୂର୍ବତନ ମନ୍ତ୍ରୀ ତଥା ଲୋକସଭାର ପୂର୍ବତନ ଅଧ୍ୟକ୍ଷ ଶ୍ରୀଯୁକ୍ତ ରବି ରାୟ ଗତ ପଚାଶ ବର୍ଷରୁ ଅଧିକ ସମୟଧରି ଓଡ଼ିଶା ତଥା ଭାରତର ଜାତୀୟ ଜୀବନରେ ଏକ ନେତୃସ୍ଥାନୀୟ ଭୂମିକା ନେଇ ଆସିଛନ୍ତି । ଆମ ଦେଶର ସାଂପ୍ରତିକ ଦୁର୍ଦ୍ଦଶା ଏବଂ ଉଦବେଗଜନକ ପରିସ୍ଥିତି ପ୍ରତି ଆଦୌ ଚିନ୍ତିତ ନହୋଇ ପ୍ରାୟ ପ୍ରତିଟି ରାଜନୈତିକ ଦଳ କେବଳ କ୍ଷମତାର ଲୋଭରେ ଯେଭଳି ଦାୟିତ୍ୱହୀନଭାବ ପ୍ରଦର୍ଶନ କରି ଆସୁଛନ୍ତି ସେଥିରେ ବ୍ୟଥିତ ହୋଇ ସଂପ୍ରତି ଦେଶର ସୁରକ୍ଷା ଏବଂ ପୁନର୍ଗଠନ ନିମନ୍ତେ ଏକ ବିକଳ୍ପର ସନ୍ଧାନରେ ସେ କାର୍ଯ୍ୟରତ ଅଛନ୍ତି ।

ଶ୍ରୀଯୁକ୍ତ ରବିରାୟଙ୍କ ଏହି ଲେଖାଟି ପ୍ରଥମେ ଇଂରାଜୀରେ ପ୍ରକାଶିତ ହୋଇଥିଲା । ଏବେ ତାହା ବିଭିନ୍ନ ଭାରତୀୟ ଭାଷାରେ ଅନୁବାଦିତ ହୋଇଛି । ଏହା ଉପରେ ବ୍ୟାପକ ଆଲୋଚନା ଚାଲିଛି ଏବଂ ଏହି ବିଚାର ମନ୍ଥନରୁ 'ଲୋକଶକ୍ତି ଅଭିଯାନ' ନାମକ ସଂଗଠନ ସୃଷ୍ଟି ହୋଇଛି, ଯେଉଁଥିରେ ସୁପ୍ରିମକୋର୍ଟର ପୂର୍ବତନ ବିଚାରପତିଙ୍କ ଠାରୁ ଆରମ୍ଭ କରି ଆଦିବାସୀ, ଦଳିତ, ଚାଷୀ ମୂଲିଆଙ୍କ ପର୍ଯ୍ୟନ୍ତ ପ୍ରତ୍ୟକ ବର୍ଗର ଦେଶପ୍ରେମୀ ନେତୃବର୍ଗ ସାମିଲ ହୋଇଛନ୍ତି । ଏହି ଅଭିଯାନରେ ଅଂଶ ଗ୍ରହଣ କରି ନେତୃତ୍ୱ ନେବାକୁ ସମସ୍ତଙ୍କୁ ଆହ୍ୱାନ କରାଯାଉଛି ।





# ଗାନ୍ଧି ହିଁ ଆମର ତ୍ରାଣକର୍ତ୍ତା

ମୁଁ ଯଦି କହେ ଯେ କେବଳ ଗାନ୍ଧିଜୀ ଏବଂ କେବଳ ଗାନ୍ଧି ଦର୍ଶନ ହିଁ ଭାରତକୁ ଆସନ୍ନ ବିପର୍ଯ୍ୟୟରୁ ରକ୍ଷାକରିବ ତେବେ ମୁଁ କୌଣସି ଅତିଶୟୋକ୍ତି କରିବି ନାହିଁ । ଅବଶ୍ୟ ମୁଁ ଜାଣେ ସମ୍ଭ୍ରାନ୍ତ ବୋଲାଉଥିବା ଭାରତର ଶାସକଶ୍ରେଣୀ ଏହା ସ୍ୱୀକାର କରିବ ନାହିଁ । ଶିଳ୍ପ-ସର୍ବସ୍ୱ ପାଶ୍ଚାତ୍ୟ ଦେଶମାନଙ୍କରୁ ଆମଦାନୀ କର । କିଛି ଆଖିଝଲସା ମିଥ୍ୟା ପ୍ରଚାର ସେମାନଙ୍କୁ ଅନ୍ଧ କରିଦେଇଛି । ଶ୍ରୀ ନରସିଂହ ରାଓ ଭାରତର ପ୍ରଧାନମନ୍ତ୍ରୀ ଥିବାବେଳେ, ବିଶ୍ୱବ୍ୟାଙ୍କ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ତଥା ବିଶ୍ୱବ୍ୟାଙ୍କ ପ୍ରଥମଥର ପାଇଁ ଏହି ତ୍ରିମୂର୍ତ୍ତି ନିର୍ଦ୍ଦେଶରେ କେତେକ ଅର୍ଥନୈତିକ ସଂସ୍କାର ଦେଶରେ ପ୍ରଚଳନ କଲେ । ଏହି ତିନି ବିଶ୍ୱସଂସ୍ଥା ଉପରେ ଏକାଧିପତ୍ୟ ବିସ୍ତାର କରିଛନ୍ତି ଜି-୭ ରୂପେ ପରିଚିତ ବିଶ୍ୱର ସପ୍ତଶ୍ରେଷ୍ଠ ଦେଶ, ଯଥା : ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, କାନାଡ଼ା, ଇଟାଲୀ, ଜାପାନ ଓ ଜର୍ମାନୀ । ଏହି ସାତ ଧନୀ ରାଷ୍ଟ୍ରଙ୍କର ରହିଛି କଳଙ୍କିତ ସାମ୍ରାଜ୍ୟବାଦୀ ଇତିହାସ । ନବ ଆନ୍ତର୍ଜାତିକତାବାଦର ଦ୍ୱାହି ଦେଇ ପୃଥିବୀକୁ, ବିଶେଷ କରି, ତୃତୀୟବିଶ୍ୱକୁ ସେମାନଙ୍କର ସାମ୍ରାଜ୍ୟବାଦୀ ପଞ୍ଝା ପୁନଶ୍ଚ କବଳିତ କରିବା ପାଇଁ ବଦ୍ଧପରିକର । ଶ୍ରୀ ରାଓ ଜଗତୀକରଣ ତଥା ଉଦାରୀକରଣ ମାଧ୍ୟମରେ ଭାରତୀୟ ଅର୍ଥନୀତିରେ ବିଭିନ୍ନ ସଂରଚନାତ୍ମକ ସଂସ୍କାର ପ୍ରବର୍ତ୍ତନ କଲେ । ଏବେ ଆମର ମୁନିବ ସାଜିଥିବା ଉକ୍ତ ବିଶ୍ୱସଂସ୍ଥାମାନଙ୍କ ନିକଟରେ ଆନୁଗତ୍ୟର ପ୍ରମାଣ ଦେବାପାଇଁ ଶ୍ରୀ ରାଓଙ୍କୁ ଏତକ କରିବାକୁ ପଡିଲା । ଡଃ ମନମୋହନ ସିଂହ, ଯେ କି ପୂର୍ବରୁ ବିଶ୍ୱବ୍ୟାଙ୍କର ଜଣେ କର୍ମଚାରୀ ଥିଲେ, ଶ୍ରୀ ରାଓଙ୍କ ସରକାରରେ ଅର୍ଥମନ୍ତ୍ରୀ ହୋଇଥାଆନ୍ତି । ସେ ତାଙ୍କ ମନ୍ତ୍ରୀତ୍ୱ କାଳରେ ଯେଉଁ ବଜେଟ ପ୍ରଚଳନ କଲେ, ମୋର ସ୍ପଷ୍ଟ ମନେ ଅଛି, ସେଥିରେ ସ୍ୱାସ୍ଥ୍ୟ ତଥା ଶିକ୍ଷା ବଳି ପଡ଼ିଲେ । ଏହା ସେହି ଧନୀ ଦେଶମାନଙ୍କ ନିର୍ଦ୍ଦେଶରେ କରାଯାଇଥିଲା । ଗାନ୍ଧିଜୀଙ୍କ ସ୍ୱପ୍ନର ସ୍ୱରାଜକୁ ଖତମ୍ କରିଦେବା ଚକ୍ରାନ୍ତର ଇଏ ଥିଲା ଆରମ୍ଭ ମାତ୍ର ।

ଏଇଠି ମୋର ଅଭିଜ୍ଞତା ସ୍ମୃତିପଟରେ ଭାସି ଉଠେ । ଇଏ ୧୯୯୧ର କଥା ଅର୍ଥାତ୍ ଭାରତରେ ଜଗତୀକରଣର ଉଷାକାଳ । ମୁଁ ଲୋକସଭାରେ ସଭ୍ୟ ଥାଏ । ଶ୍ରୀ ରାଓ ଏବଂ ଶ୍ରୀ ସିଂହ ଥାଆନ୍ତି ଯଥାକ୍ରମେ ପ୍ରଧାନମନ୍ତ୍ରୀ ଏବଂ ଅର୍ଥମନ୍ତ୍ରୀ । ଲୋକସଭା ଗୃହରେ ଗୋଟିଏ ପ୍ରଶ୍ନ ଉତ୍ଥାପନ ପାଇଁ ମୁଁ ଶୂନ୍ୟକାଳରେ ବାଚସ୍ପତିଙ୍କ ଅନୁମତି ଲୋଡ଼ିଲି । ବାଚସ୍ପତି ପ୍ରଶ୍ନଟି ଉତ୍ଥାପନ କରିବା ପାଇଁ ମୋତେ ତତ୍କ୍ଷଣାତ୍ ସଦୟ ଅନୁମତି ଦେଲେ । ମୋ ହାତରେ ସେତେବେଳେ ଏବେ ବହୁ ଚର୍ଚ୍ଚିତ ସାଉଥ୍-ସାଉଥ୍ ରିପୋର୍ଟ । ଗାନ୍ଧୀ ଦର୍ଶନ ପ୍ରତି ଅନୁରକ୍ତ ତାଞ୍ଜାନିଆର ପ୍ରାତଃ ସ୍ମରଣୀୟ ରାଷ୍ଟ୍ରପତି ଜୁଲିୟସ୍ ନ୍ୟାରାରେଙ୍କ ଅଧ୍ୟକ୍ଷତାରେ ଗଠିତ ସାଉଥ୍ - ସାଉଥ୍ କମିଟି ତାଙ୍କର ଉକ୍ତ ରିପୋର୍ଟରେ ଜଗତୀକରଣ ତଥା

ଉଦାରୀକରଣ ନୀତି ପ୍ରଚଳନ ଫଳରେ ଅନଗ୍ରସର ଦେଶମାନଙ୍କରେ କିଭଳି ବିପର୍ଯ୍ୟୟ ଦେଖାଦେବ ତାହା ବର୍ଣ୍ଣନା କରିଥିଲେ । ମୁଁ ଗୃହର ସଭ୍ୟମାନଙ୍କ ସମ୍ମୁଖରେ ରିପୋର୍ଟଟି ଉତ୍ତୋଳନ କରି କହିଲି ''ଯେଉଁ କମିଟିର ଏ ରିପୋର୍ଟ ସେଥିରେ ଜଣେ ଭାରତୀୟ ମଧ୍ୟ ସଭ୍ୟ ଥିଲେ ଓ ସେ ମଧ୍ୟ ଏ ରିପୋର୍ଟରେ ଦସ୍ତଖତ କରିଛନ୍ତି । ଏ ରିପୋର୍ଟରେ ଦସ୍ତଖତ କରିଥିବା ଉକ୍ତ ବ୍ୟକ୍ତି ଓ ଶ୍ରୀରାଓଙ୍କ ମନ୍ତ୍ରିମଣ୍ଡଳରେ ସଭ୍ୟ ଥିବା ଜନୈକ ବ୍ୟକ୍ତିଙ୍କର ନାମ ସମାନ । ମୁଁ ଜାଣିବାକୁ ଚାହେଁ ଉକ୍ତ ରିପୋର୍ଟରେ ସଂରଚନାତ୍ମକ ସଂସ୍କାର ବିରୁଦ୍ଧରେ ମତ ଦେଇଥିବା ବ୍ୟକ୍ତି ଏବଂ ଏବେ ଆମ ଦେଶରେ ସଂରଚନାତ୍ମକ ସଂସ୍କାର ପ୍ରଚଳନ କରିବାକୁ ଯାଉଥିବା ମନ୍ତ୍ରୀ ସମାନ ବ୍ୟକ୍ତି କି ?'' ଉତ୍ତର ଆଶାରେ ବାଚସ୍ପତିଙ୍କ ସମେତ ସମସ୍ତ ସଭ୍ୟ ଉତ୍କଣ୍ଠିତ ହୋଇ ସରକାରୀ ଦଳ ଆଡ଼କୁ ଚାହିଁଲେ । କେହି କିଛି ଉତ୍ତର ଦେଲେ ନାହିଁ । ତା'ପରେ ମୁଁ ଗୃହରେ ପ୍ରକାଶ କଲି ଯେ, ସେ ଘରେ ମାଉସୀ ଓ ଏ ଘରେ ପିଉସୀର ଭୂମିକା ଗ୍ରହଣ କରିଥିବା ବ୍ୟକ୍ତିଟି ଆଉ କେହି ନୁହନ୍ତି । ସେ ସ୍ୱୟଂ ଶ୍ରୀ ମନମୋହନ ସିଂହ । ଏହା ଶୁଣି ସମଗ୍ର ଗୃହ ସ୍ତବ୍ଧ ହୋଇଗଲା । ଏପ୍ରକାର ଆଚରଣ ଦେଖି ଯେକେହି ସ୍ତବ୍ଧ ହୋଇଯିବା କଥା । ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ନିକଟରେ ଆନୁଗତ୍ୟ ସ୍ୱୀକାର ପ୍ରତିଯୋଗିତାରେ ଆମ ସରକାର ଓ ତାଙ୍କ ଅର୍ଥମନ୍ତ୍ରୀ ସେତେବେଳେ ସବୁ ଅନଗ୍ରସର ଦେଶକୁ ଟପିଗଲେ । ଆହୁରି ଭାଗ୍ୟର ବିଡ଼ମ୍ବନା, 'ଦେଶକୁ ବିକ୍ରୀ କରିଦିଆ ଯାଉଛି', ବହୁକଷ୍ଟାର୍ଜିତ ସ୍ୱାଧୀନତା ଅପହୃତ ହେଲା' - ଇତ୍ୟାଦି ଧିକ୍କାରବାଣୀ ସେତେବେଳେ କଂଗ୍ରେସକୁ ଶୁଣାଉଥିବା ତତ୍କାଳୀନ ବିରୋଧୀଦଳ ନେତା ଶ୍ରୀ ଅଟଳ ବିହାରୀ ବାଜପେୟୀ କ୍ଷମତାକୁ ଆସିବାପରେ ଶ୍ରୀ ରାଓଙ୍କ ପଦାଙ୍କ ଅନୁସରଣ କଲେ । ଭାରତକୁ ଦାସତ୍ୱର ବେଡ଼ି ପିନ୍ଧାଇବା ପାଇଁ କଂଗ୍ରେସ ଅମଳରେ ଆରମ୍ଭ ହୋଇଥିବା ଏହି ଚକ୍ରାନ୍ତକୁ ପୂର୍ଣ୍ଣ ସଫଳତା ପ୍ରଦାନ ପାଇଁ ବାଜପେୟୀ ପୂରାଦମ୍‌ରେ ଲାଗି ପଡ଼ିଛନ୍ତି । ଏସିଆ, ଆଫ୍ରିକା ତଥା ଲାଟିନ୍ ଆମେରିକାର ଯେଉଁ ସବୁ ଦେଶ ଏହି ନୀତିକୁ ଗ୍ରହଣ କରି ନେଲେଣି ସେମାନେ ସେହି ଜି-୭ ଦେଶମାନଙ୍କର ବସ୍ତୁତଃ ଉପନିବେଶରେ ପରିବେଶ ହେଲେଣି ଏବଂ ସେମାନଙ୍କ ଅର୍ଥନୀତିରେ ଦ୍ରୁତ ଅବକ୍ଷୟ ଘଟିବାରେ ଲାଗିଛି ।

ଏହି ଜଗତୀକରଣର ପ୍ରଭାବ କ'ଣ ? 'ଟ୍ରାନ୍ସପରେନ୍‌ସି ଇଣ୍ଟରନାସ୍‌ନାଲ୍' ତଥା 'ଇଉ.ଏନ.ଡି.ପି.' ଉଭୟଙ୍କର ରିପୋର୍ଟ ଅନୁଯାୟୀ ପୃଥିବୀର ସବୁଠାରୁ ଅଧିକ ଦୁର୍ନୀତିଗ୍ରସ୍ତ ତଥା ଅଧିକ ଦରିଦ୍ର ଦେଶମାନଙ୍କ ମଧ୍ୟରେ ଭାରତ ଅନ୍ୟତମ । ଏହାଠାରୁ ବଳି ଲଜ୍ଜାକର ସମ୍ବାଦ ଜଣେ ଭାରତୀୟ ପାଇଁ ଆଉ କ'ଣ ହୋଇପାରେ ? ହେଲେ, କିଏ ଏସବୁ କଥାକୁ ଖାତିର କରୁଛି ? ଏହି ପ୍ରସଙ୍ଗରେ ୨୦୦୧ ମସିହା ପାଇଁ ଅର୍ଥନୀତିରେ ନୋବେଲ ପୁରସ୍କାରପ୍ରାପ୍ତ ଯୋସେଫ୍ ସ୍ଟିଗ୍‌ଲିଜ୍‌କୁ ଉଦ୍ଧାର ନକଲେ କର୍ତ୍ତବ୍ୟରେ ଅବହେଳା କରୁଛି ବୋଲି ମନେ କରିବି । ସ୍ଟିଗ୍‌ଲିଜ୍ କହୁଛନ୍ତି :

''ଜଗତୀକରଣ ଆଜି ଆଉ କିଛି କାମର ନୁହେଁ ।'' ପୃଥିବୀର ଦରିଦ୍ର ଜନସାଧାରଣଙ୍କ ସ୍ୱପ୍ନ ସାର୍ଥକ କରିବା ଦିଗରେ ଏହା ବିଫଳ । ପରିବେଶ ସୁରକ୍ଷା ଦିଗରେ ଏହା ବିଫଳ । ଜାଗତିକ ଅର୍ଥନୀତିରେ ସ୍ଥିରତା ଆଣିବା ଦିଗରେ ଏହା ଆଜି ବିଫଳ ।''

ଜଗତୀକରଣର ବିରୋଧ କରୁଥିବା ବ୍ୟକ୍ତିମାନଙ୍କ ତୁଣ୍ଡରୁ ଏଭଳି ନିରାଶବାଣୀ ବାହାରୁଥିଲେ ଆଶ୍ଚର୍ଯ୍ୟ ଲାଗନ୍ତା ନାହିଁ, କିନ୍ତୁ ସ୍ଟିଗ୍‌ଲିଜ୍ ହେଉଛନ୍ତି ଜଗତୀକରଣ ତତ୍ତ୍ୱର ଅନ୍ୟତମ ସ୍ରଷ୍ଟା । ସେ ପ୍ରଥମେ ରାଷ୍ଟ୍ରପତି କ୍ଲିଣ୍ଟନ୍‌ଙ୍କର ମୁଖ୍ୟ ଅର୍ଥନୈତିକ ପରାମର୍ଶଦାତା ଏବଂ ତାପରେ ହେଲେ ଜଗତୀକରଣର ଅନ୍ୟତମ ସ୍ତମ୍ଭ ବିଶ୍ୱବ୍ୟାଙ୍କର ମୁଖ୍ୟ ଅର୍ଥନୀତିଜ୍ଞ । ଏହି ସବୁ କାରଣରୁ ସ୍ଟିଗଲିଜଙ୍କ ପୁସ୍ତକଟିରେ ଜଗତୀକରଣ ପ୍ରକ୍ରିୟାର କରାଯାଇଥିବା ସମୀକ୍ଷା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ଆଜି ଜି-୭ ଧନୀକ ଦେଶମାନେ ଉପରୋକ୍ତ ତିନି ବିଶ୍ୱସଂସ୍ଥାର ପରିଚାଳନାକୁ କରଗତ କରିଛନ୍ତି । ଘରୋଇକରଣ, ଉଦାରୀକରଣ ଏବଂ ସ୍ଥିତି ଦୃଢ଼ୀକରଣ ଭୟଙ୍କର କୁପରିଚାଳନା ହେତୁ ତୃତୀୟ ବିଶ୍ୱର ଦେଶ ସମୂହରେ ଏବଂ ପୂର୍ବତନ ସାମ୍ୟବାଦୀ ଦେଶମାନଙ୍କରେ ଅବସ୍ଥାର ଉନ୍ନତି ଘଟିବା ପରିବର୍ତ୍ତେ ଅବସ୍ଥା ଶୋଚନୀୟ ହେବାରେ ଲାଗିଛି ।

ଏଠାରେ ମୁଁ ଗାନ୍ଧୀଜୀଙ୍କର ଗୋଟିଏ ବକ୍ତୃତା ଉଦ୍ଧାର କରିବାର ଲୋଭ ସମ୍ବରଣ କରିପାରୁନାହିଁ । ବାରାଣାସୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ଫେବୃଆରୀ ୪, ୧୯୧୬ରେ ଗାନ୍ଧିଜୀ ଏହି ପ୍ରସିଦ୍ଧ ଭାଷଣ ପ୍ରଦାନ କରିଥିଲେ । କେବଳ ଏହାର ବୈପ୍ଳବିକ ସ୍ୱରପାଇଁ ଭାଷଣଟି ଉପାଦେୟ ନୁହେଁ । ଯେତେବେଳେ ବ୍ରିଟିଶ୍ ଶାସନର ଶକ୍ତ ଲୌହଶୃଙ୍ଖଳରେ ଭାରତର ହାତ ଗୋଡ଼ ବନ୍ଧା ହୋଇଥିଲା, ସେହିଭଳି ଦୁଃସମୟରେ ଭାରତୀୟ ଯୁବମାନଙ୍କୁ ପ୍ରଚଣ୍ଡଭାବେ ଉଦ୍‌ବେଳିତ କରିପାରିଥିଲା ଏହି ଭାଷଣ । ଆଜକୁ ୫୬ ବର୍ଷ ହେବ ଇଂରେଜ ସୈନ୍ୟ ଭାରତମାଟିରୁ ଅପସରି ଯାଇଥିଲେ ମଧ୍ୟ ପୁନଶ୍ଚ ଏ ଦେଶ ନବଉପନିବେଶବାଦର ବେଢ଼ି ପିନ୍ଧିଲାଣି । ଏହି ପରିପ୍ରେକ୍ଷୀରେ ଗାନ୍ଧୀଜୀଙ୍କ ଉପରୋକ୍ତ ଭାଷଣ ପୁନଶ୍ଚ ଆମକୁ ଉଦ୍‌ବୋଧିତ କରିପାରେ । ଗାନ୍ଧୀଜୀ କହିଛନ୍ତି :

ବନ୍ଧୁଗଣ, ମୋ ପୂର୍ବ ବକ୍ତା ଭଦ୍ରମହିଳାଙ୍କର (ମିସେସ୍ ଆନି ବେଶାନ୍ତଙ୍କର) ଅସାଧାରଣ ବାଗ୍ମୀତାଦ୍ୱାରା ପ୍ରଭାବିତ ହୋଇ ଆପଣମାନେ ବିଶ୍ୱାସ କରନ୍ତୁ ନାହିଁ ଯେ ଆମର ଏହି ବିଶ୍ୱବିଦ୍ୟାଳୟ ଗୋଟିଏ ପୂର୍ଣ୍ଣାଙ୍ଗ ଅନୁଷ୍ଠାନ ହୋଇସାରିଛି ଏବଂ ଯେଉଁ ଯୁବକମାନେ ଏହି ବିଶ୍ୱବିଦ୍ୟାଳୟକୁ ଆସିବେ, ସେମାନେ ଏଠାରେ ଶିକ୍ଷାଲାଭ କରି ଏହି ବିଶାଳ ସାମ୍ରାଜ୍ୟର ଉଦୀୟମାନ ନାଗରିକ ହୋଇ ଏଠାରୁ ବିଦାୟ ନେବେ । ଏହି ଅନୁଷ୍ଠାନ ଏବେ ସୁଦ୍ଧା ଗଢ଼ି ଉଠିବାକୁ ଓ ଦୃଢ଼ ହେବାକୁ ବାକୀ ଅଛି । ଆଜି ଯେଉଁ ଛାତ୍ର-ସମାଜ ପ୍ରତି ମୋର ବକ୍ତବ୍ୟ ଅଭିପ୍ରେତ, ଯଦି ସେମାନେ ମୁହୂର୍ତ୍ତକ ପାଇଁ ସୁଦ୍ଧା ଭାବନ୍ତି ଯେ, ଯେଉଁ ଆଧ୍ୟାତ୍ମିକ ଜୀବନ ପାଇଁ ଏହି ଦେଶ ପ୍ରଖ୍ୟାତ ଓ ପୃଥିବୀରେ ଏଥିପାଇଁ ଅଦ୍ୱିତୀୟ ଅଟେ, ସେହି ଆଧ୍ୟାତ୍ମିକ ଜୀବନର ଧାରଣା କେବଳ କଥାଦ୍ୱାରା ପ୍ରଚାରିତ ହୋଇପାରିବ, ତେବେ ଆପଣମାନେ ମସ୍ତବଡ଼ ଭୁଲ କରିବେ । ମୋର ଆଶା ଯେ, ସମଗ୍ର ଜଗତରେ ଦିନେ ଭାରତବର୍ଷ ଯେଉଁ ବାଣୀ ପ୍ରଚାର କରିବ, ତାହାକୁ ଆପଣମାନେ ନିଜକୁ ତୁଚ୍ଛା କଥାରେ

ପ୍ରଚାର କରି ପାରିବେ ନାହିଁ । ଜୀବନରେ ମୁଁ ବହୁ ବକ୍ତୃତା ଶୁଣିଛି । ଗତ ଦୁଇଦିନ ଧରି ଯେଉଁ ବକ୍ତୃତାମାନ ଶୁଣାଯାଇଛି, ସେଗୁଡିକୁ ମୁଁ ମାମୁଲି ଶ୍ରେଣୀରୁ ବାଦ୍ ଦେଉଛି, କାରଣ ସେଗୁଡ଼ିକ ଅତ୍ୟନ୍ତ ଆବଶ୍ୟକ । ମାତ୍ର, ମୁଁ ଏହା କହିବାକୁ ସାହସ କରୁଅଛି ଯେ ଆମର ବକ୍ତୃତା ଭଣ୍ଡାର ଶେଷ ହୋଇ ଆସିଲାଣି । କେବଳ ଶୁଣି ବା ଦେଖି ଆନନ୍ଦ ଲାଭକଲେ ଯଥେଷ୍ଟ ହେବନାହିଁ । ଆମର ହୃଦୟ ସନ୍ଦିତ ହେବା ସଙ୍ଗେ ସଙ୍ଗେ ହସ୍ତ-ପଦ ସଞ୍ଚାଳିତ ହେବା ଆବଶ୍ୟକ ।

ମୁଁ ଆଉ ଗୋଟିଏ ଚିତ୍ର ସହିତ ଆପଣମାନଙ୍କୁ ପରିଚିତ କରାଉଛି । କାଲି ଯେଉଁ ମହାରାଜା ସାହେବ ଆମର ଉତ୍ସବରେ ସଭାପତି ହୋଇଥିଲେ, ସେ ଭାରତର ଦାରିଦ୍ର୍ୟ ବିଷୟରେ ଅନେକ କଥା କହିଲେ । ଅନ୍ୟାନ୍ୟ ବକ୍ତା ମଧ ତାହା ଉପରେ ଖୁବ୍ ଜୋର ଦେଇ କହିଲେ, କିନ୍ତୁ ଭାଇସ୍‌ରାୟ ପୁରୋଧା ହୋଇ ଯେଉଁ ମଣ୍ଡପ ଉପରେ ଭିତ୍ତି ସ୍ଥାପନ କଲେ, ସେହି ମଞ୍ଚ ଉପରେ ଆମ୍ଭେମାନେ କ'ଣ ଦେଖିଲୁ ? ସେ ଉତ୍ସବ ଖୁବ୍ ଆଡ଼ମ୍ବର ସହକାରେ ସମ୍ପନ୍ନ ହେଲା ଏବଂ ପ୍ୟାରିସ୍‌ରୁ ଯେଉଁ ଶ୍ରେଷ୍ଠ ଜହୁରୀ ଆସିଥିଲେ, ତାଙ୍କର ଆଖି ମଧ ମଣି-ମୁକ୍ତାର ପ୍ରଦର୍ଶନୀରେ ଝଲସି ପଡ଼ିଲା । ମହାର୍ଘ ଭୂଷଣରେ ଭୂଷିତ ଏହି ଧନୀଲୋକମାନଙ୍କ ସହିତ ଭାରତର ଜନସାଧାରଣଙ୍କ ପକ୍ଷରୁ ସେଗୁଡିକର ମାରଫତ୍‌ଦାର ହୋଇନଚଳନ୍ତି, ତାହା ହେଲେ ଭାରତର ମୁକ୍ତି ନାହିଁ,'' - ଏକଥା ଏହି ଧନୀ ଲୋକମାନଙ୍କୁ କହି ଦେବାକୁ ମୋର ମନେ ହୁଏ । (କରତାଳି) । ସମ୍ରାଟଙ୍କ ପ୍ରତି ପ୍ରକୃତ ରାଜଭକ୍ତି ଦେଖାଇବାକୁ ହେଲେ, ମୋତି-ମାଣିକ୍ୟର ବାକ୍ସଗୁଡ଼ିକ ଖାଲି କରିଦେଇ ତାକୁରୁ ତଳିପା ଯାଏ ମୋତି ମାଣିକ୍ୟରେ ଭୂଷିତ ହୋଇ ସଭାକୁ ଯିବାକୁ ହେବ, ଏହା ଭାରତ-ସମ୍ରାଟ ବା ଲର୍ଡ ହାର୍ଡିଞ୍ଜଙ୍କର ଇଚ୍ଛା ନୁହେଁ, ଏ ବିଷୟରେ ମୁଁ ନିଶ୍ଚିତ । ମୋ' ଜୀବନକୁ ବିପନ୍ନ କରି ମୁଁ ସ୍ୱୟଂ ପଞ୍ଚମ ଜର୍ଜଙ୍କଠାରୁ ଜବାବ୍ ଆଣିଦେଇ ପାରେ ଯେ, ସେ ଏପରି କିଛି ଆଶା କରନ୍ତି ନାହିଁ । ମହାଶୟ ! ବ୍ରିଟିଶ ଭାରତର କିମ୍ବା କରଦ ରାଜ୍ୟର କୌଣସି ବଡ଼ ସହରରେ ଗୋଟିଏ ବଡ଼ ପ୍ରାସାଦ ନିର୍ମିତ ହେବା ଶୁଣିଲେ, ମୁଁ ତତ୍‌କ୍ଷଣାତ୍ ଈର୍ଷାରେ କହି ପକାଏ ''ଓଃ ! ଏସବୁ କୃଷକମାନଙ୍କଠାରୁ ଆସିଥିବା ଧନରେ ତିଆରି ।'' ଭାରତର ଲୋକସଂଖ୍ୟାର ଶତକରା ପଞ୍ଚସ୍ତରୀ ଭାଗ କୃଷିଜୀବୀ । ଗତ ରାତିରେ ମିଷ୍ଟର ହିଗିନ୍‌ବୋଥାମ୍ ସୁ-ନିର୍ବାଚିତ ବାକ୍ୟଭଙ୍ଗୀରେ କହିଛନ୍ତି ଯେ, ଏହି କୃଷକମାନେ ହିଁ ଗୋଟିଏ ଦୁର୍ବାଦଳ ସ୍ଥାନରେ ଯୋଡ଼ିଏ ଉତ୍ପାଦନ କରନ୍ତି (ଅର୍ଥାତ୍ ସେହିମାନେ ହିଁ ଦେଶର ପ୍ରକୃତ ଉତ୍ପାଦନକାରୀ) । କିନ୍ତୁ ଯଦି ଆମ୍ଭେମାନେ ସେମାନଙ୍କର ପରିଶ୍ରମର ସମସ୍ତ ଫଳ ଅପହରଣ କରୁଁ କିମ୍ବା କରିବାରେ ଅନ୍ୟକୁ ପ୍ରଶ୍ରୟ ଦେଉଁ, ତାହାହେଲେ ଆମ ଭିତରେ ସ୍ୱାୟତ୍ତ ଶାସନର କୌଣସି ପ୍ରେରଣା ବା ସତ୍ତା ରହିବ ନାହିଁ । କେବଳ କୃଷକର ଉନ୍ନତିରେ ହିଁ ଆମର ମୁକ୍ତି ଆସିପାରେ । ଓକିଲ, ଡାକ୍ତର କିମ୍ବା ଜମିଦାରମାନେ କଦାପି ଦେଶକୁ ଉଦ୍ଧାର କରି ପାରିବେ ନାହିଁ ।

ଭାରତର ମୁକ୍ତି ପାଇଁ ଯଦି ଇଂରେଜମାନଙ୍କୁ ଯିବାକୁ ହୁଏ କିମ୍ବା ସେମାନେ ବିତାଡ଼ିତ ହେବାକୁ ବାଧ ହୁଅନ୍ତି, ତେବେ ସେମାନେ ଅବଶ୍ୟ ଯିବାକୁ ହେବ ଏହି ଘୋଷଣା

କରିବାକୁ ମୁଁ କୁଣ୍ଠିତ ହେବି ନାହିଁ ଏବଂ ମୋର ସେହି ବିଶ୍ୱାସ ପ୍ରତିପାଦନ କରିବା ନିମିତ୍ତ ମୁଁ ମୃତ୍ୟୁ-ବରଣ କରିବା ପାଇଁ ପ୍ରସ୍ତୁତ ହେବି । ମୋ' ମତରେ ତାହା ହିଁ ସମ୍ମାନଜନକ ମୃତ୍ୟୁ । ବୋମା ନିକ୍ଷେପକାରୀ ଗୁପ୍ତଭାବରେ ଷଡ଼ଯନ୍ତ୍ର କରେ, ପ୍ରକାଶ୍ୟ ସ୍ଥାନକୁ ଆସିବାକୁ ଭୟ କରେ ଏବଂ ଧରାପଡ଼ିଲେ ତାହାର କୁପରିଚାଳିତ ଉତ୍ସାହ ପାଇଁ ଦଣ୍ଡ ଭୋଗ କରେ । ମୋତେ ଅନ୍ୟମାନେ କହିଛନ୍ତି, ''ଆମେ ଏପରି କରି ନଥିଲେ, କେତେକ ଲୋକ ବୋମା ପକାଇ ନଥିଲେ, ବଙ୍ଗ ବ୍ୟବଚ୍ଛେଦ ଆନ୍ଦୋଳନରେ ଆମେ ଯାହା ପାଇଛୁଁ, ତାହା ଆମେ ହାସଲ କରିପାରି ନଥାନ୍ତୁ ।'' (ମିସେସ୍ ବେଶାନ୍ତ : 'ଅନୁଗ୍ରହ କରି ତାହା କହନ୍ତୁ ନାହିଁ') । ଯେତେବେଳେ ମିଷ୍ଟର ଲିୟନ୍ ଗୋଟିଏ ସଭାରେ ସଭାପତିତ୍ୱ କରିଥିଲେ, ସେତେବେଳେ ବଙ୍ଗଳା ପ୍ରଦେଶରେ ମୁଁ ଏକଥା କହିଥିଲି । ମୁଁ ଭାବିଛି, ମୁଁ ଯାହା କହୁଛି, ତାହା ଆବଶ୍ୟକ ଅଟେ । ତଥାପି, ଯଦି ମୋତେ ବନ୍ଦ କରିବାକୁ କହନ୍ତି, ତେବେ ମୁଁ ଆଦେଶ ପାଳନ କରିବି । (ସଭାପତିଙ୍କ ଆଡକୁ ଲକ୍ଷ୍ୟ କରି) ମୁଁ ଆପଣଙ୍କ ଆଦେଶକୁ ଅପେକ୍ଷା କରୁଛି । ........ ଶାସକମାନଙ୍କୁ ଆମର ଯାହା କରିବାକୁ ଅଛି, ଯଦି ତାହା ପିତା ଲାଗେ, ସେଥିର ଫଳ ଭୋଗ କରିବାକୁ ଆମେ ପ୍ରସ୍ତୁତ ହୋଇ ରହିବା ଆବଶ୍ୟକ । ମାତ୍ର ତିରସ୍କାର କରିବା ଆମର ଅନୁଚିତ । ବିଶେଷଭାବରେ ଉର୍ଦ୍ଧ ସିଭିଲିଆନ ଗୋଷ୍ଠୀର ଜଣେ ସଭ୍ୟଙ୍କ ସହିତ ମୁଁ ସେଦିନ କଥାବାର୍ତ୍ତା କରୁଥିଲି । ସେହି ଗୋଷ୍ଠୀର ସଦସ୍ୟମାନଙ୍କ ସହିତ ମୋ' ମତ ବେଶୀ ମିଳେ ନାହିଁ, ମାତ୍ର ସେ ଯେପରି ଭାବରେ ତାଙ୍କର କଥା କହିଲେ, ମୁଁ ସେ ପ୍ରଣାଳୀକୁ ପ୍ରଶଂସା ନ କରି ରହିପାରିଲି ନାହିଁ, ସେ କହିଲେ, 'ମିଷ୍ଟର ଗାନ୍ଧୀ ଆମେ ସବୁ ସିଭିଲିଆନ୍ ଖରାପ ଏବଂ ଆମେ ଯାହାକୁ, ଶାସନ କରିବାକୁ ଆସିଛୁଁ, ସେମାନଙ୍କୁ ଉତ୍‌ପୀଡ଼ନ କରିବା ଯେ ଆମର ଇଚ୍ଛା - ଆପଣ ଏହା କେବେ ବିଶ୍ୱାସ କରନ୍ତି କି ? ମନା କଲି । 'ତେବେ ଆପଣଙ୍କୁ କେବେ ସୁଯୋଗ ମିଳିଲେ, ଏହି ଉର୍ଦ୍ଧ ସିଭିଲିଆନ୍ ଗୋଷ୍ଠୀକୁ ଅନ୍ୟ ଏକ ଶବ୍ଦରେ ସମ୍ବୋଧନ କରିବେ କି ? ମୁଁ ଏଠାରେ ସେହି ଶବ୍ଦ ବ୍ୟବହାର କରୁଅଛି । ହଁ, ଭାରତୀୟ ସିଭିଲିଆନ୍ ଗୋଷ୍ଠୀର ଅନେକ ସଦସ୍ୟ ନିଃସନ୍ଦେହରେ ଅସହିଷ୍ଣୁ, ସେମାନେ ଉତ୍ପୀଡକ ଏବଂ ସମୟେ ସମୟେ ବିଚାରହୀନ । ଆହୁରି ଅନେକ ବିଶେଷଣ ବ୍ୟବହୃତ ହୋଇପାରେ । ମୁଁ ଏସବୁ କଥା ସ୍ୱୀକାର କରିବା ସଙ୍ଗେ ସଙ୍ଗେ କହୁଛି ଯେ, ଭାରତରେ କେତେବର୍ଷ ରହିବା ପରେ ସେମାନଙ୍କ ମଧ୍ୟରୁ କେତେକଙ୍କର କେତେକ ପରିମାଣରେ ଅଧୋଗତି ହୁଏ । ଏଥିରୁ କି ସୂଚନା ମିଳୁଅଛି ? ଏଠାକୁ ଆସିବା ପୂର୍ବରୁ ସେମାନେ ଭଦ୍ର ଥିଲେ ଏବଂ ଯଦି ସେମାନଙ୍କର କିଛି ନୈତିକ ବିଚ୍ୟୁତି ଘଟେ, ତାହାହେଲେ ତାହା ଆମ୍ଭମାନଙ୍କ ପ୍ରତି ଏକ ଆକ୍ଷେପ । (''ନା, ନା'' - ଚିତ୍କାର) । ନିଜେ ଭାବିକରି ଦେଖନ୍ତୁ, କାଲି ଯେଉଁ ଲୋକ ଭଲ ଥିଲା, ସେ ଲୋକ ମୋ' ସଂସର୍ଶରେ ଆସିବା ସଙ୍ଗେ ସଙ୍ଗେ ଯଦି ଖରାପ ହୋଇଗଲା, ତେବେ ଏହି ଅଧୋଗତି ପାଇଁ ସେ ଦାୟୀ ନା ମୁଁ ଦାୟୀ ? ଭାରତକୁ ଆସି ସେମାନେ ଯେଉଁ ତୋଷାମଦ ଓ ମିଥ୍ୟାଚାର ଭିତରେ ରହିଥାନ୍ତି, ତାହାରି ଫଳରେ ସେମାନଙ୍କର ଅଧୋଗତି ଘଟେ । ଆମ୍ଭମାନଙ୍କର ଅନେକଙ୍କର ସେହିପରି ଘଟନା । ଅନେକ ସମୟରେ ନିଜ ଉପରକୁ ଦୋଷାରୋପ ନେବା

ଭଳ । ସ୍ୱାୟତ୍ତ ଶାସନ ପାଇବାକୁ ହେଲେ, ଆମ୍ଭମାନଙ୍କୁ ଏଗୁଡିକୁ ମାନି ନେବାକୁ ପଡିବ । ଯଦି ଆମ୍ଭେମାନେ ସ୍ୱାୟତ୍ତ-ଶାସନ ପାଇବାକୁ ଆଗ୍ରହୀ, ତେବେ ଆମକୁ ତାହା ଅର୍ଜନ କରିବାକୁ ହେବ । ଆମ୍ଭମାନଙ୍କୁ ସ୍ୱାୟତ୍ତ-ଶାସନ କହି ହାତ ଟେକି ଦାନ କରିଦେବ ନାହିଁ । ବ୍ରିଟିଶ୍ ସାମ୍ରାଜ୍ୟ ଓ ଜାତିର ଇତିହାସ ପ୍ରତି ଦୃଷ୍ଟିପାତ କରନ୍ତୁ । ସେ ଜାତି ସ୍ୱାଧୀନତାପ୍ରିୟ ହୋଇଥିବାରୁ, ଯେଉଁ ଜାତି ନିଜେ ସ୍ୱାଧୀନତା ଅର୍ଜନ କରି ନ ପାରିବ, ତାକୁ ସ୍ୱାଧୀନତା ଦାନ କରିବାକୁ ସେମାନେ ପକ୍ଷ ହୋଇ ପାରିବେ ନାହିଁ । ଯଦି ଇଚ୍ଛା କରନ୍ତି, ତେବେ ବୁଅର ଯୁଦ୍ଧରୁ ଶିକ୍ଷା ଲାଭ କରନ୍ତୁ । କେବଳ ଅଳ୍ପ କେତେ ବର୍ଷ ପୂର୍ବରୁ ଯେଉଁମାନେ ସେହି ସାମ୍ରାଜ୍ୟର ଶତ୍ରୁ ଥିଲେ, ବର୍ତ୍ତମାନ ସେମାନ ମିତ୍ର ହୋଇଯାଇଅଛନ୍ତି ।''

ଏହି ସମୟରେ ବକ୍ତୃତାରେ ବାଧା ପହଞ୍ଚିଲା । ସଭା ଛାଡ଼ି ଯିବା ପାଇଁ ସଭାମଣ୍ଡପ ଉପରେ ବସିଥିବା କେତେକ ଲୋକ ଅଥୟ ହେଲେ, ତେଣୁ ଏହିଠାରୁ ବକ୍ତୃତା ହଠାତ୍ ଶେଷ ହୋଇଗଲା ।

ଭାରତର ତତ୍‌କାଳୀନ ବଡଲାଟ ଲର୍ଡ ଇର୍‌ୱଇନ୍‌ଙ୍କୁ ଗାନ୍ଧିଜୀ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଚିଠି ଲେଖିଥିଲେ, ଯାହା ଏହି ପ୍ରସଙ୍ଗରେ ଉଦ୍ଧାର କରିବା ଅପରିହାର୍ଯ୍ୟ ମନେକରୁଛି । ୧୯୩୦-୩୧ର ଲବଣ ସତ୍ୟାଗ୍ରହ ସମୟରେ ସେ ଏ ଚିଠିଟି ଲେଖିଥିଲେ ।

''ମୋର ବ୍ୟକ୍ତିଗତ ବିଶ୍ୱାସ ସମ୍ପର୍କରେ ମୁଁ ଅତ୍ୟନ୍ତ ସ୍ପଷ୍ଟ । କୌଣସି ଜୀବକୁ ମଧ ସେ ଜ୍ଞାତସାରରେ କେବେବି ଆଘାତ ଦେଇ ପାରିବେ ନାହିଁ । କୌଣସି ମନୁଷ୍ୟକୁ ବା କିପରି ଆଘାତ ଦେବା କଥା କଳ୍ପନା କରିବି । ମୋ ପ୍ରତି ଅତ୍ୟନ୍ତ ଅବିଚାର କରିଥିବା ମନୁଷ୍ୟ ପ୍ରତି ମଧ ମୁଁ କେବେ ଅବିଚାର କରିପାରିବି ନାହିଁ, ଏଣୁ ଯଦିଓ ମୁଁ ଇଂରେଜ ଶାସନକୁ ଏକ ଅଭିଶାପ ବୋଲି ମନେକରେ ତଥାପି କୌଣସି ଗୋଟିଏ ହେଲେ ବି ଇଂରେଜ ଲୋକର କ୍ଷତି ଅଥବା ଭାରତରେ ଯଦି ତାଙ୍କର କୌଣସି ନ୍ୟାୟସଙ୍ଗତ ସ୍ୱାର୍ଥ ଥାଏ ସେଥିପ୍ରତି କୌଣସି ବିଘ୍ନ ଉପୁଜାଇବା ମୋର ଉଦ୍ଦେଶ୍ୟ ନୁହେଁ ।

କ୍ରମବର୍ଦ୍ଧିଷ୍ଣୁ ଶୋଷଣ ତଥା ଏକ ଅତ୍ୟନ୍ତ ହାନିକାରକ ବ୍ୟୟବହୁଳ ସାମରିକ ଏବଂ ବେସାମରିକ ଶାସନକଳ ଆଜି ଭାରତର କୋଟି କୋଟି ମୂକ ଜନତାଙ୍କ ଅବସ୍ଥା ଶୋଚନୀୟ କରିଦେଲାଣି । ଏ ବୋଝ ବୋହିବା ସେମାନଙ୍କ ପାଇଁ ଦୁର୍ବିସହ ହୋଇଗଲାଣି । ଏହା ଆମକୁ ରାଜନୈତିକ ଦାସରେ ପରିଣତ କରିଛି । ଏହା ଆମ ସଂସ୍କୃତିର ଭିତ୍ତିଭୂମିକୁ ଦୋହଲାଇ ଦେଇଛି ଏବଂ ଏକ ନିଷ୍ଠୁର ନିରସ୍ତ୍ରୀକରଣ ନୀତି ମାଧମରେ ଆମର ଆଧାତ୍ମିକ ଅବକ୍ଷୟ ସାଧିତ ହୋଇଛି । ଅନ୍ତର୍ନିହିତ ଶକ୍ତି ଅଭାବରୁ, ସାର୍ବଜନୀନ ନିରସ୍ତ୍ରୀକରଣ ଫଳ ସ୍ୱରୂପ ଆମ୍ଭେମାନେ ଭୀରୁ ସୁଲଭ ଅସହାୟତାର ଶିକାର ହୋଇଛୁ ।

''ଭୂରାଜସ୍ୱର ଭୟଙ୍କର ବୋଝ, ସମଗ୍ର ବୋଝର ଏକ ବଡ଼ ଅଂଶ । ସ୍ୱାଧୀନ ଭାରତରେ ଏଥିରେ ସଂସ୍କାର ଅଣାଯିବା ଆବଶ୍ୟକ । ଏପରିକି ବହୁଳଭାବେ ପ୍ରଚାରିତ ଚିର ସ୍ଥାୟୀ ବନ୍ଦୋବସ୍ତ ରୟତଙ୍କୁ ନୁହେଁ, କେବଳ ବଡ଼ ବଡ଼ ଜମିଦାରଙ୍କୁ ଲାଭବାନ କରିଛି ।

ସାଧାରଣ ଚାଷୀ ଯେଉଁ ତିମିରେ ସେହି ତିମିରେ । ସେ କେବଳ tenant at will ବା ତଥାକଥିତ ସ୍ୱେଚ୍ଛାକୃତ ଭାବେ ଭାଗଚାଷୀ । ଭୂରାଜସ୍ୱ ଯଥେଷ୍ଟ କମେଇ ଦିଆଯିବା ସଙ୍ଗେ ସଙ୍ଗେ ସମଗ୍ର ରାଜସ୍ୱ ବ୍ୟବସ୍ଥାରେ ଏପରି ସଂସ୍କାର ଅଣାଯିବା ଆବଶ୍ୟକ, ଯେପରିକି ଚାଷୀର ସ୍ୱାର୍ଥକୁ ଅଗ୍ରାଧିକାର ଦିଆଯାଇପାରିବ, କିନ୍ତୁ ଇଂରେଜ ସରକାର ଯେଉଁ ବ୍ୟବସ୍ଥା କରିଛନ୍ତି ତାହା କେବଳ ଚାଷୀକୁ ଦଳିପେଷି ଖତମ୍ କରିଦେବା ପାଇଁ ଉଦ୍ଦିଷ୍ଟ । ଏପରିକି ଯେଉଁ ଲୁଣ ଟିକକ ତା ଆହାର ପାଇଁ ଅପରିହାର୍ଯ୍ୟ ତାହା ଉପରେ ବସାଯାଇଥିବା କର ମଧ ଗରିବଟି ପାଇଁ ଏକ ପ୍ରକାଣ୍ଡ ବୋଝରେ ପରିଣତ ହୋଇଛି । ଧନୀ ଗରିବ ନିର୍ବିଶେଷରେ ସମସ୍ତଙ୍କ ଉପରେ ସମାନ ପରିମାଣ କର ବସାଇଦେବା ଏକ ହୃଦୟହୀନ ସମାନତା । ଧନୀ ଅପେକ୍ଷା ଗରିବ ଲୋକ ଉଭୟ ବ୍ୟକ୍ତିଗତ ଭାବେ ଓ ଗୋଷ୍ଠୀଗତ ଭାବେ ଅଧିକ ଲୁଣ ଆବଶ୍ୟକ କରେ । ଏହି ଦୃଷ୍ଟିରୁ ଦେଖିଲେ ଏ ଟିକସ ବୋଝ ଗରିବକୁ ଅଧିକ ବାଧିବା କଥା । ମଦ ଓ ଔଷଧ ରାଜସ୍ୱ ମଧ ଏହି ଗରୀବଙ୍କଠାରୁ ଆଦାୟ କରାଯାଉଛି । ଏହା ସେମାନଙ୍କର ସ୍ୱାସ୍ଥ୍ୟ ଓ ନୈତିକତାକୁ ଚିପୁଡି ନିଃଶେଷ କରି ଦେଉଛି । ବ୍ୟକ୍ତିସ୍ୱାଧୀନତାର ଦ୍ୱାହି ଦିଆଯାଇ ଏ ବ୍ୟବସ୍ଥାକୁ ସୁରକ୍ଷା ଦିଆଯାଉଛି । ମାତ୍ର ଏହା ବାସ୍ତବରେ କେବଳ ସ୍ୱସୁରକ୍ଷା ପାଇଁ ସରକାର ଚଲାଇଛନ୍ତି । ୧୯୧୯ ଶାସନ ସଂସ୍କାର ଯେଉଁମାନେ ପ୍ରଣୟନ କଲେ, ସେମାନଙ୍କ ଚତୁରତା ହେତୁ ଏହି ନିଶାରୁ ଆସୁଥିବା ରାଜସ୍ୱ ବୋଝ ଦ୍ୱୈତ ଶାସନର ଯେଉଁ ଅଂଶଟି ପ୍ରତିନିଧିମୂଳକ ଶାସନ ଦାୟିତ୍ୱରେ ଅଛି ତାହାରି ମୁଣ୍ଡରେ ଲଦି ଦିଆଯାଇଛି । ଫଳରେ ଦ୍ୱୈତ ଶାସନର ଏହି ଅଂଶଟିକୁ ଆଦ୍ୟରୁ ହିଁ ଶକ୍ତିହୀନ କରିଦିଆଯାଇଛି । ଯଦି ଅସନ୍ତୁଷ୍ଟ ମନ୍ତ୍ରୀ ନିଶାରୁ ଆସୁଥିବା ଏହି ରାଜସ୍ୱକୁ ମୂଳପୋଛ କରିଦିଅନ୍ତି ତେବେ ତାଙ୍କୁ ହୁଏତ ଶିକ୍ଷା ବିଭାଗ ପ୍ରତି ଚରମ ଅବହେଳା କରିବାକୁ ପଡିବ । କାରଣ ବର୍ତ୍ତମାନ ପରିସ୍ଥିତିରେ ତାଙ୍କର ସେହି ରାଜସ୍ୱ ପ୍ରତିବଦଳରେ ଅନ୍ୟକିଛି ନୂଆ ସୂତ୍ରରୁ ରାଜସ୍ୱ ଆଦାୟ କରିବାର ବାଟ ନାହିଁ । ଟିକସଭାର ଗରୀବଙ୍କ ଆଡୁ ମାଡିଆସିଛି ଅଥଚ ସେମାନଙ୍କ ପାଇଁ ପୂର୍ବରୁ ଥିବା ମୁଖ୍ୟ ଅତିରିକ୍ତ ଶିଳ୍ପ ସୂତା କଟାକୁ ଧ୍ୱଂସ କରିଦିଆଯାଇଛି ଓ ତଦ୍ୱାରା ସେମାନଙ୍କର ଆୟ କରିବା ଶକ୍ତି ନଷ୍ଟ ହୋଇଯାଇଛି । ଭାରତ ନାଁରେ ହୋଇଥିବା ଦେୟ ବୋଝ ଯେତିକି ହେଲାଣି ତାହା ନକହିଲେ ଭାରତର ଅବନତି ସଂପର୍କୀତ ଦୁଃଖଦ କାହାଣୀ ଶେଷ ହେବନାହିଁ । ସମ୍ବାଦପତ୍ର କଡାକଡି ଅନୁସନ୍ଧାନ କରିବା ଓ ସେଥିରୁ ଯେଉଁ ଗୁଡିକ ଅନ୍ୟାୟ ଓ ଅସୁନ୍ଦର ବୋଲି ବିବେଚିତ ହେବ ତାକୁ ଅଗ୍ରାହ୍ୟ କରିବା ସ୍ୱାଧୀନ ଭାରତର ପ୍ରଥମ କର୍ତ୍ତବ୍ୟ ହେବ ।

''ପୃଥିବୀର ସବୁଠାରୁ ବ୍ୟୟବହୁଳ ବୋଲି ପ୍ରମାଣିତ ଏକ ବିଦେଶୀ ଶାସନ ବ୍ୟବସ୍ଥାକୁ ଚଳାଇ ରଖିବା ପାଇଁ ଉପରୋକ୍ତ ଅସମାନତାଗୁଡ଼ିକୁ ସୁରକ୍ଷା ଦିଆଯାଇ ଆସିଅଛି । ଆପଣ ନିଜ ଦରମା କଥା ବିଚାର କରନ୍ତୁ । ଆପଣ ପାଆନ୍ତି ମାସକୁ ଟ. ୨୧୦୦୦୦ ଙ୍କା ଆଉ କେତେ ଆୟର ପନ୍ଥା ମଧ ଏଥିରେ ଯୋଡା ହୋଇପାରେ । ବିଲାତର ପ୍ରଧାନମନ୍ତ୍ରୀ ବର୍ଷକୁ ପାଆନ୍ତି ୫୦୦୦ ପାଉଣ୍ଡ, ଅର୍ଥାତ୍ ଏବେକା ବିନିମୟ ହାରରେ ମାସିକ ପ୍ରାୟ ଟ. ୫୪.୦୦ ଙ୍କା ଆପଣ ଦିନକୁ ପାଉଛନ୍ତି । ଟ. ୭୦୦

ଯେତେବେଳେ ଭାରତର ହାରାହାରି ଆୟ ଦିନକୁ ଦୁଇଅଣାରୁ କମ୍ । ପ୍ରଧାନମନ୍ତ୍ରୀଙ୍କ ଦରମା ଦିନକୁ ଟ. ୧୮୦ ଯେତେବେଳେ ଗ୍ରେଟ୍ ବ୍ରିଟେନ୍‌ର ଦୈନିକ ହାରାହାରି ଆୟ ଟ . ୨.୦୦ । ଏଣୁ ଆପଣଙ୍କ ଆୟ ଭାରତର ହାରାହାରି ଆୟର ପାଞ୍ଚହଜାର ଗୁଣରୁ ଅଧିକ । ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କ ଆୟ ତାଙ୍କ ପ୍ରଜାଙ୍କ ହାରାହାରି ଆୟର ମାତ୍ର ନବେଗୁଣ । ଏହି ପ୍ରକ୍ରିୟାଟିକୁ ଗମ୍ଭୀରତା ସହିତ ଅନୁଧାନ କରିବା ନିମିତ୍ତ ମୁଁ ଆପଣଙ୍କୁ ନତଜାନୁ ହୋଇ ପ୍ରାର୍ଥନା କରୁଛି । ଗୋଟିଏ ଅତି ଯନ୍ତ୍ରଣାଦାୟକ ସତ୍ୟ ଉଦ୍‌ଘାଟନ କରିବା ପାଇଁ ମୁଁ ଏକ ଅତ୍ୟନ୍ତ ବ୍ୟକ୍ତିଗତ ଉଦାହରଣଟିଏ ଦେଇଛି ।

ଯଦି ଭାରତ ଏକ ଜାତି ହିସାବରେ ବଞ୍ଚିରହିବା ଦରକାର, ଯଦି ତା ପ୍ରଜାକୁଳର ଏହି ମନ୍ଥର ମୃତ୍ୟୁକୁ ବନ୍ଦ କରାଯିବା ଆବଶ୍ୟକ ତେବେ ଏହାର ତୁରନ୍ତ ପ୍ରତିକାର ଜରୁରୀ ଅଟେ । ପ୍ରସ୍ତାବିତ ସମ୍ମିଳନୀ ଏହାର ପ୍ରତିକାର ନୁହେଁ । ବିତର୍କ ମାଧ୍ୟମରେ କିଛି ବୁଝାଇବା ଭଳି ବିଷୟ ଏହା ନୁହେଁ । ଏହାର ସମାଧାନ କେବଳ ବଳକୁ ମୁକାବିଲା କରିପାରିବା ଭଳି ପ୍ରତିବଳ ଦ୍ୱାରା ସମ୍ଭବ । ଯୁକ୍ତିଦ୍ୱାରା ଯେତେ ବୁଝାଇ ଦିଆଯାଇପାରିଲେ ମଧ୍ୟ ବିଲାତ ସରକାର ଭାରତରେ ଥିବା ତାଙ୍କର ବାଣିଜ୍ୟିକ ସ୍ୱାର୍ଥକୁ ସମସ୍ତ ବଳ ପ୍ରୟୋଗ କରି ରକ୍ଷା କରିବାକୁ ଚେଷ୍ଟିତ ହେବେ । ନିଜକୁ ମୃତ୍ୟୁର ଏହି ଆଲିଙ୍ଗନରୁ ମୁକ୍ତ କରିବା ପାଇଁ ଭାରତକୁ ମଧ୍ୟ ଯଥେଷ୍ଟ ପ୍ରତିବଳ ସୃଷ୍ଟିକରିବାକୁ ପଡିବ ।

''ମୁଁ ଜାଣେ, ଅହିଂସାତ୍ମକ ଲଢ଼େଇର ପନ୍ଥା ବାଛି ମୁଁ ଏପରି ଏକ ବିପଦ ବରଣ କରୁଛି ଯାହାକୁ କେବଳ ଏକ ପାଗଳ ସୁଲଭ ପଦକ୍ଷେପ ବୋଲି କୁହାଯାଇପାରିବ । ତେବେ ସତ୍ୟର ବିଜୟ କେବେ ହେଲେ ବିନା ବିପଦରେ ସମ୍ଭବ ନୁହେଁ । ଏ ବିପଦ ବେଳେ ବେଳେ ଅତ୍ୟନ୍ତ କରାଳ ରୂପ ଧରିପାରେ । ନିଜଠାରୁ ଯଥେଷ୍ଟ ଅଧିକ ସଂଖ୍ୟକ, ଅଧିକ ପ୍ରାଚୀନ ଓ କୌଣସି ମତେ କମ୍ ସଭ୍ୟ ହୋଇନଥିବା ଗୋଟିଏ ଦେଶକୁ ଯେଉଁ ଦେଶ କବଳିତ କରିଛି ତାକୁ ବାଟକୁ ଆଣିବା ପାଇଁ ଯେ କୌଣସି ବିପଦ ବରଣଯୋଗ୍ୟ । ....'' ''ଆପଣଙ୍କୁ କୌଣସି ଅଯଥା ଅପଦସ୍ଥ କରିବା ଭଳି କିଛି କହିବା ମୋର ଅଭିପ୍ରାୟ ନୁହେଁ । କୌଣସି ବି କାରଣରୁ ଆପଣଙ୍କୁ ଅପଦସ୍ଥ କରିବା ମୁଁ ଚାହେଁ ନାହିଁ । ମୁଁ ସାହାଯ୍ୟ କରିବା ଚାହେଁ । ଆପଣ ଯଦି ଭାବୁଛନ୍ତି ଯେ ମୋ' ଚିଠିର କୌଣସି ମୂଲ୍ୟ ଅଛି, ଏବଂ ମୋ' ସହିତ ଆଲୋଚନା କରିବା ପସନ୍ଦ କରୁଥାଆନ୍ତି ଏବଂ ସେହି କାରଣରୁ ଏ ଚିଠିର ପ୍ରକାଶ ସ୍ଥଗିତ ରଖିବା ଚାହୁଁଥାଆନ୍ତି ତେବେ ଏ ଚିଠିଟି ଆପଣଙ୍କ ପାଖରେ ପହଞ୍ଚିବା ସଙ୍ଗେ ସଙ୍ଗେ ଆପଣ ମୋତେ ଗୋଟିଏ ତାର ବାର୍ତ୍ତା ପଠାଇଦେଲେ ମୁଁ ଏହାର ପ୍ରକାଶନରୁ ନିବୃତ୍ତ ରହିବି । ତେବେ ଏ ଚିଠିକୁ ଆପଣଙ୍କ ସ୍ତରରେ କାର୍ଯ୍ୟକାରୀ କରିବା ଭଳି କୌଣସି ଉପାୟ ଯଦି ଆପଣଙ୍କୁ ଦେଖାଯାଉ ନଥାଏ, ତେବେ ଦୟାକରି ମୋତେ ମୋ' ପଥରୁ ବିଚ୍ୟୁତ ହେବା ପାଇଁ ପ୍ରବର୍ତ୍ତାଇବେ ନାହିଁ ।''

ଗାନ୍ଧୀଜୀ ଯେଉଁ ଅନାହାର ମୃତ୍ୟୁ କଥା ଉଲ୍ଲେଖ କରିଛନ୍ତି, ଜଗତୀକରଣ ହେତୁ ତାହା ସହସ୍ରଗୁଣ ବୃଦ୍ଧି ପାଇଛି । ଏପରିକି ଆନ୍ଧ୍ର, କର୍ଣ୍ଣାଟକ ଏବଂ ପଞ୍ଜାବ ପରି ଅପେକ୍ଷାକୃତ

ସମୃଦ୍ଧ ରାଜ୍ୟମାନଙ୍କରେ ମଧ୍ୟ ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ ପଡିବାରୁ ଚାଷୀମାନେ ବହୁ ସଂଖ୍ୟାରେ ଆତ୍ମହତ୍ୟା କରିବାରେ ଲାଗିଛନ୍ତି । ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆମ କୃଷିକ୍ଷେତ୍ରରେ ଅନୁପ୍ରବେଶ କରି ବାଣିଜ୍ୟିକ ଭିତ୍ତିରେ ଚାଷକୁ ଅପ ବ୍ୟବହାର କରିବାରେ ଲାଗିଛନ୍ତି । ଚାଷୀଙ୍କ ଦୁର୍ଗତିର ଏହାହିଁ ମୁଖ୍ୟ କାରଣ । ମେକ୍ସିକୋସ୍ଥିତ କାନ୍‌କୁନ୍‌ଠାରେ ନିକଟରେ ହୋଇଯାଇଥିବା ବିଶ୍ୱବାଣିଜ୍ୟ ସଂସ୍ଥାର ଆନ୍ତର୍ଜାତିକ ସମ୍ମିଳନୀରେ ଯାହା ସବୁ ଆଲୋଚନା ହେଲା, ସେଥିରୁ ସ୍ପଷ୍ଟ ହୋଇଯାଇଛି ଯେ ପୃଥିବୀର ଧନୀକ ଦେଶମାନେ ଆମେରିକା ନେତୃତ୍ୱରେ ତୃତୀୟ ବିଶ୍ୱର କୃଷିକୁ ଧ୍ୱସ୍ତବିଧ୍ୱସ୍ତ କରିବା ପାଇଁ ବଦ୍ଧପରିକର । ପୃଥିବୀର ବିଭିନ୍ନ କୋଣରୁ ଯେଉଁ ଦରିଦ୍ର ଚାଷୀ କାନ୍‌କୁନ୍‌ରେ ଏକଜୁଟ୍ ହୋଇଥିଲେ, ସେମାନେ ଏପରି କ୍ଷୁବ୍ଧ ଓ ଆତଙ୍କିତ ଅବସ୍ଥାରେ ଥିଲେ ଯେ, ଦକ୍ଷିଣ କୋରିଆରେ ଜଣେ ଚାଷୀ କୁନ୍ ହାଇଲି ସେହି ସମ୍ମିଳନୀ ହେଉଥିବା ଗୃହର ମୁଖ୍ୟ ଫାଟକ ସାମ୍ନାରେ ଆତ୍ମହତ୍ୟା କଲେ ।

ଅନେକ ତଥାକଥିତ ବିପ୍ଲବୀ ଭାବନ୍ତି ଯେ, ବିନା ହିଂସାରେ ବିପ୍ଲବ ସମ୍ଭବ ନୁହେଁ । ଗାନ୍ଧୀଜୀ ଏହା ମିଥ୍ୟା ବୋଲି ନିଜ ଜୀବଦ୍ଦଶାରେ ପ୍ରମାଣ କରି ଦେଇଯାଇଛନ୍ତି । ଆଜିର ପୃଥିବୀରେ ଅହିଂସକ ବିପ୍ଲବର ସେ ଯେ ପ୍ରବକ୍ତା ଓ ବିନ୍ଧାଣୀଥିଲେ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଏବେ ପ୍ରଶ୍ନଉଠୁଛି, ଆମେ ଏଠୁ ଯିବା କୁଆଡ଼େ ? ଆଜି ବିଶ୍ୱବ୍ୟାପି ଛାତ୍ର, ଶ୍ରମିକ କୃଷକ, ପରିବେଶବିତ୍ ଓ ଅନ୍ୟାନ୍ୟ ସାଧାରଣ ନାଗରିକ ଭିତରେ ବିଦ୍ରୋହ ଭାବ ପ୍ରକାଶ ପାଇଲାଣି । ଏହି ନୀତିର ଗରୀବ ଦେଶମାନଙ୍କ ଉପରେ ପଡୁଥିବା ନେତିମୂଳକ ପ୍ରଭାବ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଆଜି ସେମାନେ ପ୍ରେଗ୍, ସିଆଟଲ୍, ୱାସିଂଟନ ଓ କାନ୍‌କୁନ୍‌ର ରାସ୍ତାକୁ ଓହ୍ଲେଇଲେଣି । ଏହା ନିଶ୍ଚୟ ସ୍ୱାଗତଯୋଗ୍ୟ । ଆଜି ଭୁଲିଗଲେ ଚଳିବ ନାହିଁ ଯେ ବିଶ୍ୱର ଅନ୍ୟତମ ବୃହତ ଔପନିବେଶିକ ଶକ୍ତି ବିରୁଦ୍ଧରେ ଗାନ୍ଧିଜୀ ଭାରତରେ ଏକାଧିକ ଆଇନ୍ ଅମାନ୍ୟ ଆନ୍ଦୋଳନ କରାଇଥିଲେ । ତାଙ୍କ ଆନ୍ଦୋଳନର ନେତା ଅନନ୍ୟତା ହେଲା ତାଙ୍କ ଅନୁସୃତ ଅହିଂସକ ପଦ୍ଧତି । ଦକ୍ଷିଣ ଆଫ୍ରିକା ତଥା ଭାରତରେ ଗାନ୍ଧୀଜୀ କରିଥିବା ଅସହଯୋଗ ଆନ୍ଦୋଳନର ଅନୁଭୂତି ବିଶ୍ୱର ଏ ସମ୍ପର୍କୀୟ ଜ୍ଞାନ ଭଣ୍ଡାର ପାଇଁ ମହାର୍ଘ ସମ୍ପତ୍ତି । ଯୁକ୍ତରାଷ୍ଟ୍ର ଆମେରିକାର ଗୋରାକଳା ବର୍ଣ୍ଣ ବିଦ୍ୱେଷ ବିରୁଦ୍ଧରେ ଲଢ଼ିଥିବା ସୁପରିଚିତ ଗାନ୍ଧୀବାଦୀ ନେତା ମାର୍ଟିନ୍ ଲୁଥର କିଙ୍ଗ ଗାନ୍ଧୀଜୀଙ୍କ ସମ୍ପର୍କରେ କହୁଛନ୍ତି :

''ଅନ୍ୟ ଦେଶମାନଙ୍କୁ ମୁଁ ଯାଇଥାଏ ଜଣେ ପର୍ଯ୍ୟଟକ ରୂପେ, କିନ୍ତୁ ଭାରତକୁ ଆସିଛି ଜଣେ ତୀର୍ଥଯାତ୍ରୀ ରୂପେ । ଭାରତ କହିଲେ ମୁଁ ବୁଝେ ମହାତ୍ମାଗାନ୍ଧୀ, ବାସ୍ତବିକ ଜଣେ ସର୍ବକାଳୀନ ମହାତ୍ମା, ମହାମନା । ସର୍ବୋପରି ଭାରତ ସେଇ ମାଟି ଯେଉଁଠି ସମାଜ ପରିବର୍ତ୍ତନ ଅହିଂସକ ପନ୍ଥା ଉଦ୍ଭାବିତ ହୋଇଛି । ମଣ୍ଟୋଗେମରୀ, ଆଲ୍‌ବାମା ଓ ଯୁକ୍ତରାଷ୍ଟ୍ର

ଆମେରିକାର ଦକ୍ଷିଣ ରାଜ୍ୟମାନଙ୍କରେ ଆମେ ଏହି ଅସ୍ତ୍ର ପ୍ରୟୋଗ କରି ଲଢ଼ିଛୁ । ତାହା ଯେ ଏକ ସଫଳ ଓ ସ୍ଥାୟୀ ଅସ୍ତ୍ର ଏହା ଆମେ ଅନୁଭବ କରିଛୁ । ବାସ୍ତବିକ୍ ଇଏ ଏକ ଅମୋଘ ଅସ୍ତ୍ର ।''

ବିଶ୍ୱବ୍ୟାପୀ ଜନସାଧାରଣ ଅନ୍ୟାୟର ଶିକାର ହେଉଥିବାବେଳେ ଗାନ୍ଧୀ ପ୍ରଦର୍ଶିତ ଅହିଂସକ-ସଂଗ୍ରାମ ପଦ୍ଧତି କିପରି ପ୍ରତିଫଳିତ ହୋଇପାରେ ସେ କଥା ମାର୍ଟିନ୍ ଲୁଥର କିଙ୍ଗ ଅତି ସଂକ୍ଷେପରେ ଅଥଚ ଶକ୍ତିଶାଳୀ ଭାଷାରେ ପ୍ରକାଶ କରି ଦେଇଛନ୍ତି । ଗାନ୍ଧୀଜୀଙ୍କ ପ୍ରଦର୍ଶିତ ଶିକ୍ଷାକୁ ଆଧାରକରି ଆମକୁ ଆଜି ଆମ ଦେଶବାସୀଙ୍କୁ ସଂଗଠିତ କରିବାକୁ ପଡିବ । ଏହାହିଁ ଏ ମୁହୂର୍ତ୍ତର ଆହ୍ୱାନ ।

□□□



ଲୋକଶକ୍ତି ଅଭିଯାନର ରାଷ୍ଟ୍ରୀୟ ଶିବିରରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଦିନେଶ ଦାସ ଗୁପ୍ତାଙ୍କୁ ଶ୍ରୀ ରବି ରାୟ ସମ୍ମାନୀତ କରୁଛନ୍ତି

# ଆଞ୍ଚଳିକ ବିକାଶରେ ବିଷମତା

(ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, ଦୀର୍ଘକାଳ ଧରି ଦୈନିକ 'ସମାଜ'ର ସମ୍ପାଦକ ତଥା ଓଡ଼ିଆ ସାମ୍ବାଦିକତାର ପ୍ରବାଦପୁରୁଷ ଡ଼ଃ ରାଧାନାଥ ରଥଙ୍କ ଚତୁର୍ଥ ଶ୍ରାଦ୍ଧ ବାର୍ଷିକୀ ଅବସରରେ ରାଉରକେଲା ଠାରେ ଫେବୃୟାରୀ ୧୨ ତାରିଖରେ ଅନୁଷ୍ଠିତ ରାଧାନାଥ ସ୍ମାରକ ବ୍ୟାଖ୍ୟାନରେ ଲୋକସଭାର ପୂର୍ବତନ ବାଚସ୍ପତି ରବି ରାୟ ଦେଇଥିବା ଲିଖିତ ଭାଷଣ ।)

ବିକାଶ ଯେତେବେଳେ ଅସମତୁଲ ହୁଏ ଓ ଏକ ସମତୁଲ ଓ ସମଗ୍ରବ୍ୟାପି ଯୋଜନାରେ ପର୍ଯ୍ୟବେକ୍ଷିତ ନ ହୁଏ, ସେତେବେଳେ ବିଷମତା ଓ ଅଭାବ ତାହାର ଉଭୟ କାରଣ ଓ ପରିଣାମ ହୁଅନ୍ତି । ବିଷମତା ଓ ଅଭାବ ମାନବର ଇତିହାସ୍ ଲେଖା କାଳରୁ ସମାଜରେ ଅଛି ଏବଂ ଏହାର ଦୂରୀକରଣ ପାଇଁ ଆରମ୍ଭରୁ କଠିନ ପ୍ରଯତ୍ନ ଚାଲିଛି । ୟୁରୋପର ଶିଳ୍ପ ବିପ୍ଳବ-ସମ୍ଭୂତ ରାଷ୍ଟ୍ରଙ୍କ ଔପନିବେଶିକ ପ୍ରତିପତ୍ତି ଯୋଗୁଁ ଆନ୍ତର୍ଜାତିକ ଶ୍ରମ ବିଭାଜନ ଘଟି ଭାରତ ତଥା ଏସିଆର ଅଧିକାଂଶ ଭାଗ, ଆଫ୍ରିକା, ଲାଟିନ୍ ଆମେରିକା ଅଞ୍ଚଳ ଶୋଷଣ, ଅନଗ୍ରସରତା, ଶିଳ୍ପପ୍ରତିଲୋମତା ଓ ଅଭାବର ଶାସ୍ତ୍ରୀୟ ଉଦାହରଣ ହୋଇ ରହିଲେ । ଏ ପରିସ୍ଥିତିରୁ ଉଦ୍ଭବିଥିବା ବିଷମତା ଆମ ସମାଜର ଆର୍ଥିକ, ସାମାଜିକ ଓ ନୈତିକ ଅଧଃପତନର କାରଣ ହୋଇଛି । ଅନେକ ପିଢ଼ୀର ଲୋକେ ତାହାର ପରିଣାମ ଭୋଗିଛନ୍ତି, ଭୋଗୁଛନ୍ତି । ମତେ ଲାଗୁଛି, ଯଦି ଆଡାମ ସ୍ମିଥ୍ ଭାରତରେ ବା ଏସିଆ, ଆଫ୍ରିକା ବା ଲାଟିନ୍ ଆମେରିକାରେ ଜନ୍ମ ଗ୍ରହଣ କରିଥାଆନ୍ତେ, ତେବେ ସେ An Enquiry into the Wealth of Nations ଗ୍ରନ୍ଥ ନ ଲେଖି An Enquiry into the disparities and deprivations of Nations (ରାଷ୍ଟ୍ରମାନଙ୍କର ବିଷମତା ଓ ଅଭାବର ଅନୁସନ୍ଧାନ) ବୋଲି ଗ୍ରନ୍ଥ ଲେଖିଥାଆନ୍ତେ । ମାନବ ସମାଜର ଅଧିକାଂଶଙ୍କ ଅସମାନତା ଓ ଗଞ୍ଜଣା ଉପରେ ଗଢ଼ିଉଠିଥିବା ଶକ୍ତିଶାଳୀ ଓ ସାମର୍ଥ୍ୟବାନ୍ ଦେଶଙ୍କ ସମ୍ପତ୍ତି ଓ ସମୃଦ୍ଧି ତାଙ୍କ ବିବେଚନାର ବିଷୟ ଥିଲା । ବାସ୍ତବିକ, ଆମ ସମାଜରେ ଓ ଲୋକଙ୍କ ଭିତରେ ଥିବା ବିଷମତା ଓ ଅଭାବକୁ ଏକ 'ଅଧିକାର ବୈଷମ୍ୟର ନୀତି' ଦ୍ୱାରା ଯୁକ୍ତିଯୁକ୍ତ ବୋଲି ଦେଖାଇବାର ଚେଷ୍ଟା ହେଲା । ଏ ନୀତିରେ କୁହାଗଲା ଯେ ଅଷ୍ଟାଦଶ, ଊନବିଂଶ ଓ ବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧରେ ପ୍ରଗତି ଓ ଶିଳ୍ପସମୃଦ୍ଧ ଦେଶଙ୍କ ପାଇଁ ଏକ ପ୍ରକାରର ଅଧିକାର ଏବଂ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଦରିଦ୍ର ଜନସାଧାରଣଙ୍କ ପାଇଁ ଆଉ ଗୋଟିଏ ପ୍ରକାରର ଅଧିକାର । ଏ ବିଷମ ଅଧିକାର ନୀତି ଆମ ଦେଶର ଦାରିଦ୍ର୍ୟ, କୁପୋଷଣ ଓ ଦୁସ୍ଥତାର ମୂଳଦୁଆ ହେଲା । ଦକ୍ଷିଣ ଆଫ୍ରିକାରେ ସମାନ ନାଗରିକ ଅଧିକାର ପାଇଁ ମହାତ୍ମା ଗାନ୍ଧୀଙ୍କ ସଂଘର୍ଷ ଏବଂ ଆମର ମହାଭାରତୀୟ

ସ୍ୱାଧୀନତା ସଂଗ୍ରାମ ଏ ବିଷମ ଅଧିକାର ନୀତି ବିରୋଧରେ ଜନତାର ଦୃଢୋକ୍ତିର ଉତ୍କୃଷ୍ଟ ଉଦାହରଣ । ଆଡାମ୍ ସ୍ମିଥ୍ ଭାରତରେ ଜନ୍ମିଥିଲେ ଔପନିବେଶିକ ଭାରତରେ ଜନତାର ଉତ୍ପୀଡ଼ନ ଓ ଶୋଷଣ ଦେଖି କିଭଳି ଗ୍ରନ୍ଥ ଲେଖିଥାନ୍ତେ ସେକଥା ଆଗରୁ କହିଛି । ବାସ୍ତବିକ, ଭାରତରେ ବ୍ରିଟିଶ୍ ଶାସନଜନିତ ବିଷମତା ଦେଖି ଭାରତର ପ୍ରଥମ ଅର୍ଥଶାସ୍ତ୍ରୀ ଦାଦାଭାଇ ନାରୋଜୀ ତାଙ୍କ ପ୍ରସିଦ୍ଧ ଗ୍ରନ୍ଥ Poverty and Un-British Rule (ଦାରିଦ୍ର୍ୟ ଓ ଅବ୍ରିଟିଶ ଶାସନ)ରେ 'ନିଗାଡ଼ିବା ନୀତି' କଥା ଲେଖିଲେ । ଏ ନୀତି ହେଲା ଯେ ଆମ ଦେଶରୁ ସବୁ ସାଧନ ସାମଗ୍ରୀ ନିଗାଡି ପୋଛି ନେଇ ଇଂଲଣ୍ଡର ସମୃଦ୍ଧି ଘଟାଇବା, ଯାହାକି ଆମର ଦାରିଦ୍ର୍ୟ, ଦୁର୍ଭିକ୍ଷ ଓ ଅପାରଗତାର କାରଣ ହେଲା । ବାସ୍ତବିକ ବ୍ରିଟିଶଶାସିତ ଭାରତରେ ପୁଞ୍ଜି ବିନିଯୋଗର ପ୍ରକାର, ଔପନିବେଶିକ ଶୋଷଣର ଆରମ୍ଭ ଓ ଦ୍ରୁତ ବୃଦ୍ଧି ଏବଂ ଭାରତକୁ କେବଳ ଏକ ବଜାର ତଥା କଞ୍ଚାମାଲର ରପ୍ତାନି ସ୍ଥଳ ଭାବରେ ବ୍ୟବହାର କ୍ରମେ ଆମ ଅନଟନ ଓ ବିଷମତାର କାରଣ ହେଲେ । ବିଭିନ୍ନ ପାରମ୍ପରିକ ଜୀବିକାର ବହୁଳ ଉଚ୍ଚାଟନ, ପ୍ରଚଣ୍ଡ ଦାରିଦ୍ର୍ୟ, ବାରମ୍ବାର ପଡୁଥିବା ଦୁର୍ଭିକ୍ଷ ଓ କ୍ରମବର୍ଦ୍ଧମାନ ବେକାରୀ ଏହାର ଫଳ ହେଲେ । ବ୍ରିଟିଶ ଶାସନ ଖାଲି ବିଷମତା ସୃଷ୍ଟିକଲା ବୋଲି କହିଲେ ସତ୍ୟର ଅପଳାପ ହେବ । ବରଂ, ବ୍ରିଟିଶ ଶାସନ ଆମ ଦେଶର ପ୍ରଗତିରେ ପ୍ରଚଣ୍ଡ ବିଭ୍ରାଟ ଘଟାଇ ଭାରତୀୟ ସମାଜର ପ୍ରାକୃତିକ ସୁଷମ ବିକାଶର ସମ୍ଭାବନାକୁ ସମୂଳେ ନଷ୍ଟ କରିଦେଲା ବୋଲି କହିଲେ ଠିକ୍ ହେବ । ଏହା ଜାଣିଶୁଣି ଜାତି-ଜାତି, ସମ୍ପ୍ରଦାୟ-ସମ୍ପ୍ରଦାୟ ଭିତରେ ବୈମନସ୍ୟ ସୃଷ୍ଟି କଲା । ଭାରତର ଉତ୍ତର-ପୂର୍ବ ଅଞ୍ଚଳର ଲୋକଙ୍କ ବିଷୟରେ ସାଇମନ୍ କମିଶନ୍‌ଙ୍କ ବିଚାର ଏଭଳି ମନୋଭାବର ସୂଚନା ଦିଏ । କମିଶନ୍ ଲେଖିଲେ - ''ଏ ଅଞ୍ଚଳର ଲୋକଙ୍କ ସାମାଜିକ ବିକାଶର ଏବର ଅବସ୍ଥାରେ ଅନ୍ୟ ଅଞ୍ଚଳରେ ଗୃହୀତ ପ୍ରତିନିଧିତ୍ୱର ବ୍ୟବସ୍ଥା ଏଠାରେ ଲାଗୁପଡିବା ସମ୍ଭବ ନୁହେଁ । ସେମାନଙ୍କ ସୁଖ ସମାଧାନ ସେମାନଙ୍କ ରାଜନୈତିକ ପ୍ରଗତି ଉପରେ ନିର୍ଭର କରେନାହିଁ, ବରେ ସେମାନଙ୍କ ପ୍ରତି ସହାନୁଭୂତିପୂର୍ଣ୍ଣ ବ୍ୟବହାର ଉପରେ ଓ ସେମାନଙ୍କୁ ପଡିଶାଙ୍କ ଦ୍ୱାରା ଆର୍ଥିକ ଦାସତ୍ୱରୁ ରକ୍ଷାକରିବା ଉପରେ ।'' ଏହି ଭାବରେ ବ୍ରିଟିଶ ସରକାର ଆଦିବାସୀ ଓ ଅଣ ଆଦିବାସୀ ସମ୍ପ୍ରଦାୟ ଭିତରେ ତଥା ବିଭିନ୍ନ ଆଦିବାସୀ ସମ୍ପ୍ରଦାୟଙ୍କ ଭିତରେ ବିଭେଦ ଓ ସଂଶୟ ବଢେଇବାରେ ଲାଗିଲେ । ବିକାଶର ଏଭଳି ଶ୍ୱାସରୁଦ୍ଧକାରୀ ବ୍ୟବସ୍ଥା ବିରୋଧରେ କ୍ରମେ ଅନେକ ଜନଆନ୍ଦୋଳନ ଆରମ୍ଭ ହେଲା । ବିହାର-ବଙ୍ଗଳା ଓ ମାନ୍ଦ୍ରାଜ ପ୍ରଦେଶରେ ଥିବା ସମଗ୍ର ଓଡ଼ିଆଭାଷୀ ଅଞ୍ଚଳକୁ ଏକାଠି କରି ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦାବି ଅସମାନତା ଓ ଅଭାବ ଯୋଗୁଁ ଖଣ୍ଡିତ ପ୍ରଗତି ଏବଂ ବିକାଶର ବାଟରେ ଆଗେଇ ଯିବାପାଇଁ ଲୋକଙ୍କର ପ୍ରବଳ ଆକାଂକ୍ଷାର ନିଦର୍ଶନ ଥିଲା । ବାସ୍ତବରେ ଏଭଳି ଜନଆନ୍ଦୋଳନର ମୂଳରେ ଥିଲା କ୍ରମବର୍ଦ୍ଧିଷ୍ଣୁ ଦାରିଦ୍ର୍ୟ ଓ ଅପାରଗତାକୁ ରୋକିବାର ଅସମର୍ଥତା । ଏହାର ଆହୁରି ଏକ ଉଦାହରଣ ହେଲା, ଏକ ସ୍ୱତନ୍ତ୍ର ଆନ୍ଧ୍ରପ୍ରଦେଶ ଗଠନ ପାଇଁ ୧୯୧୭ରେ ତେଲୁଗୁ ଲୋକଙ୍କ ଆନ୍ଦୋଳନ । ମହାତ୍ମାଗାନ୍ଧୀ ତାଙ୍କର ଅନେକ ଭାଷଣରେ ଏ ତେଲୁଗୁ

ଆନ୍ଦୋଳନର ଉଲ୍ଲେଖ କରି କହିଥିଲେ ଯେ, ସେତେବେଳର ମାଡ୍ରାଜ ପ୍ରଦେଶରେ ତେଲୁଗୁଭାଷୀ ଲୋକଙ୍କର ଅସନ୍ତୋଷଜନକ ପ୍ରଗତି ଏ ଭାଷାଭିତ୍ତିକ ପ୍ରଦେଶ ଗଠନ ଦାବିର କାରଣ ଥିଲା । ମୁଁ ଆଞ୍ଚଳିକ ବିକାଶରେ ବିଷମତା ବିଷୟର ଯଥାର୍ଥ ବିବେଚନା ଲାଗି ଏସବୁ ଐତିହାସିକ ମୂଳର ଉପସ୍ଥାପନା କଲି ।

## ଗାନ୍ଧିଜୀଙ୍କ ସ୍ୱପ୍ନ

ମହାତ୍ମା ଗାନ୍ଧୀଙ୍କର ଆହ୍ୱାନକାରୀ ସ୍ୱପ୍ନ ଥିଲା ସମସ୍ତଙ୍କ ଆଖିରୁ ପ୍ରତି ଟୋପା ଲୁହ ପୋଛିଦେବା । ତାଙ୍କ ବିଚାରଧାରା ସମତୁଲ ବିକାଶର କେନ୍ଦ୍ରନୀତି ଥିଲା ଓ ଏବେ ମଧ ରହିଛି । କେବଳ ଦେଶର ସ୍ୱାଧୀନତା ପାଇଁ ନୁହେଁ, ପ୍ରଗତିଶୀଳ ସମାଜ ଗଠନ ପାଇଁ ଓ ସମାଜ ଏବଂ ରାଷ୍ଟ୍ରର ସଙ୍ଗତ ଓ ନ୍ୟାଯ୍ୟ ବିକାଶ ପାଇ ଉଦ୍ଦିଷ୍ଟ ଥିବା ତାଙ୍କ ଗଠନମୂଳକ କାର୍ଯ୍ୟକ୍ରମ କଥା ଦେଖାଯାଉ । ତାଙ୍କର ୧୮ ଦଫା କାର୍ଯ୍ୟକ୍ରମ ଭିତରୁ ୧୩ ବା ୧୪ ଦଫା ଏପରି ଥିଲା, ଯାହାର ବିକାଶରେ ଆଞ୍ଚଳିକ ବିଷମତା ଦୂର କରିପାରନ୍ତା । ଅସ୍ପୃଶ୍ୟତା ନିବାରଣ ଦ୍ୱାରା ସେ ଦଳିତୋଦ୍ଧାର ଉପରେ ଦୃଷ୍ଟି ନିବଦ୍ଧ କଲେ, ଯାହା ଫଳରେ ସେମାନଙ୍କର ମାନବାଧିକାର ମାନ୍ୟ ହେବ ଓ ସେମାନେ ବିକାଶରେ ଭାଗୀଦାର ହୋଇପାରିବେ । ସେହିଭଳି ଖଦୀ, ଅନ୍ୟ ଗ୍ରାମ୍ୟଶିଳ୍ପ, ଚାଷୀ, ମୂଲିଆ, ଆଦିବାସୀ, କୁଷ୍ଠରୋଗୀଙ୍କ କଥା ଏ କାର୍ଯ୍ୟକ୍ରମରେ ରଖି, ଯେଉଁମାନେ ଶହ ଶହ ବର୍ଷ ଧରି ବିକାଶ ପ୍ରକ୍ରିୟାରୁ ବଞ୍ଚିତ ହୋଇ ଅଭାବ ଓ ଦୁର୍ବିପାକରେ ପଡ଼ିଲେ, ସେମାନଙ୍କ ଉପରେ ଲକ୍ଷ୍ୟ କେନ୍ଦ୍ରିତ କଲେ । ଅସମତୁଲ ବିକାଶର ଶିକାର ହୋଇଥିବା ଅଗଣିତ ବୁଭୁକ୍ଷୁ ଜନତାଙ୍କ ପାଇଁ ଆର୍ଥିକ ସ୍ୱୟଂସଂପୂର୍ଣ୍ଣତାର ସର୍ବୋତ୍କୃଷ୍ଟ ଉଦାହରଣ ଥିଲା ତାଙ୍କ ଖଦୀ ଓ ଗ୍ରାମ୍ୟଶିଳ୍ପ ଯୋଜନା । ଆମ ସମାଜର ବିକାଶ ପ୍ରକ୍ରିୟାରେ ସବୁଠାରୁ ବେଶୀ ଉପେକ୍ଷିତ ଆଦିବାସୀ ଓ କୁଷ୍ଠରୋଗୀଙ୍କୁ ଏ କାର୍ଯ୍ୟକ୍ରମରେ ସାମିଲ କରିବାର ଗାନ୍ଧିଜୀଙ୍କ ଦୂରଦୃଷ୍ଟି ଦ୍ୱାରା ମୁଁ ପ୍ରଭାବିତ । ସେହିଭଳି, ଗଠନମୂଳକ କାର୍ଯ୍ୟକ୍ରମରେ ମହିଳାଙ୍କ ଉତ୍କର୍ଷର ସ୍ଥାନ ଦେଖି ବିସ୍ମିତ ହେବାକୁ ପଡ଼େ । ମହାତ୍ମା ଗାନ୍ଧୀ ଥରେ କହିଥିଲେ ଯେ, ମାଇପୀଙ୍କର ତହିଁରେ ସ୍ଥାନ ନ ଥିବାରୁ ଆମ ବିକାଶ ବ୍ୟବସ୍ଥା ଅଧାପନ୍ତରିଆ । ଆଜି ଲୈଙ୍ଗିକ ସମାନତା ବିକାଶର ମୂଳଦୁଆ ବୋଲି କୁହାଯାଉଥିବାବେଳେ ଅଶୀ ବର୍ଷ ତଳେ ଗାନ୍ଧିଜୀ ଏହା କଥା ଓ କାର୍ଯ୍ୟରେ ପାଳନ କରୁଥିଲେ ବୋଲି ମନେ ରଖିବା ଆବଶ୍ୟକ । ମନେ ରଖିବା ଉଚିତ ଯେ, ସତୁରୀ ହଜାର ନିରକ୍ଷର ସାଧାରଣ ମାଇପେ ଲବଣ ସତ୍ୟାଗ୍ରହରେ ଯୋଗଦେଇଥିଲେ । ବାସ୍ତବିକ୍, ସେ ଥରେ କହିଥିଲେ, ଭାରତୀୟ ସ୍ତ୍ରୀବର୍ଗ ଯଦି ସାମାଜିକ କାମରେ ଭାଗ ନ ନେବେ, ତେବେ ଦେଶର ଉଦ୍ଧାର ହୋଇପାରିବ ନାହିଁ । ମୁଁ ଆପଣମାନଙ୍କୁ ଜଣାଇଦେବାକୁ ଚାହେଁ ଯେ ପୃଥିବୀ ଇତିହାସରେ କୌଣସି ବିପ୍ଳବ ବା ଆନ୍ଦୋଳନରେ ସ୍ତ୍ରୀବର୍ଗ ଓ ତାହାର ଅଧିକାର ଆଡକୁ ଲକ୍ଷ୍ୟ ଦିଆଯାଇନଥିଲା । ମାନବ ଇତିହାସରେ ପ୍ରଥମେ ମହାତ୍ମାଗାନ୍ଧୀ ହିଁ ସାର୍ବଜନିକ କାମରେ ମହିଳାଙ୍କୁ ଆଣିଲେ । ମୋର ମନେ ପଡୁଛି ଯେ ୧୮୪୦ ମସିହାରେ

ଯେତେବେଳେ ଲଣ୍ଡନରେ ଦାସତ୍ୱବିରୋଧୀ ପ୍ରଥମ ବିଶ୍ୱ ସମ୍ମିଳନୀ ବସିଲା, ସେଥିରେ ଆମେରିକାର ମହିଳାମାନଙ୍କୁ ଯୋଗଦେବାପାଇଁ ଅନୁମତି ଦିଆଯାଇନଥିଲା । କାରଣ କୁହାଗଲା ଯେ, ସେମାନେ ଏଭଳି ସଭାରେ ଯୋଗଦେଲେ ତାଙ୍କର ସାମାଜିକ ପ୍ରତିଷ୍ଠା କ୍ଷୁର୍ଣ୍ଣ ହେବ । ଆମେରିକାର ସମ୍ବିଧାନ ତିଆରି ହେଉଥିଲାବେଳେ ତହିଁର ଜଣେ ପ୍ରଣେତା ଜନ୍ ଆଡାମ୍‌ସ୍‌ଙ୍କ ପତ୍ନୀ ସ୍ୱାମୀଙ୍କୁ ମହିଳାଙ୍କ କଥା ମନେରଖିବାକୁ କହିଲେ । ବିଦ୍ରୁପ ସ୍ୱରରେ ସ୍ୱାମୀ ଉତ୍ତର ଦେଲେ, ମହିଳା ନାମକ ''ଏକ ସଂଖ୍ୟାଧିକ ଓ ଶକ୍ତିଶାଳୀ ଜନଜାତି'' ଏବେ ପୁରୁଷଙ୍କ ସହିତ ସମାନ ଅଧିକାର ଦାବି କରି ବସିଲାଣି । ଫରାସୀ ବିପ୍ଳବ ପରେ ୧୭୮୯ର ମାନବ ଓ ନାଗରିକ ଅଧିକାର ଘୋଷଣା କେବଳ ପୁରୁଷ ଓ ଅଣଦାସଙ୍କ ପାଇଁ ଅଧିକାରର ଘୋଷଣା ଥିଲା । ଏହି ପୃଷ୍ଠଭୂମିରେ ଗାନ୍ଧିଜୀ ଦେଶର ସ୍ୱାଧୀନତା ଓ ପ୍ରଗତି ଏବଂ ସମାଜର ପୁନରୁଦ୍ଧାର ଲାଗି ତାଙ୍କ ଗଠନମୂଳକ କାର୍ଯ୍ୟକ୍ରମରେ ମହିଳାଙ୍କୁ ଅନ୍ତର୍ଭୁକ୍ତ କରିଥିବା କଥା ଦେଖିବାକୁ ହେବ । ଆଧୁନିକ ତତ୍ତ୍ୱବେତ୍ତାଙ୍କ ମତରେ ବିକାଶରେ ମହିଳା ନଥିବା ଅର୍ଥ ବିକାଶର ଅଭାବ । ଫ୍ରାନ୍‌ସିସ୍ ଫୁକୁୟାମା ତାଙ୍କର ଏକ ଲେଖା 'ଯଦି ମହିଳାମାନେ ପୃଥିବୀ ଚଳାନ୍ତେ'ରେ ଲେଖିଛନ୍ତି ଯେ ମହିଳାମାନେ ନୀତି ନିର୍ଦ୍ଧାରଣ ଓ ଶାସନରେ ଭାଗନେଲେ, ପୁରୁଷଙ୍କ ଦୃଷ୍ଟିଭଙ୍ଗୀ ଫଳରେ ଅତ୍ୟଧିକ ଏକତରଫା ହୋଇଯାଇଥିବା ବିକାଶ କୌଶଳରେ ବିବେକ ଓ ସାମର୍ଥ୍ୟ ପ୍ରତିଷ୍ଠାପିତ ହୁଅନ୍ତା । ଏବେ ମହିଳାମାନେ ନିଜର ବିକାଶ-ଅଧିକାର ପାଇଁ ଆନ୍ଦୋଳନ ଆରମ୍ଭ କରିବାର ଦୃଶ୍ୟ ଆଶାଜନକ । ବାସ୍ତବିକ, ଆମ ନ୍ୟାୟାଳୟ ଏବଂ ରାଷ୍ଟ୍ରୀୟ ମାନବାଧିକାର ଆୟୋଗ ବିକାଶ ଅଧିକାରକୁ ସ୍ୱୀକାର କରିବାରେ ଐତିହାସିକ ମହତ୍ତ୍ୱ ଅଛି । ତେଣୁ ବିକାଶରେ ବିଷମତାର ଅର୍ଥ ମାନବାଧିକାରର ବିକୃତି ଓ ଅସ୍ୱୀକାର । ବିକାଶରେ ବିଷମତାକୁ ଦୂର କଲେ ଓ ଅସମତୁଲତାକୁ ସଜାଡ଼ିଲେ, ଆମ ଦୁଃସ୍ଥ ଜନତାକୁ ପୂର୍ଣ୍ଣ ବିକାଶ ଦିଗରେ ଆଗେଇ ନେଇହେବ ।

ସମତୁଲ ବିକାଶର ମୂଳରେ ଅଛି, ଗାନ୍ଧିଜୀଙ୍କ ପ୍ରଣୀତ ଗଠନମୂଳକ କାର୍ଯ୍ୟକ୍ରମରେ ଥିବା ଆର୍ଥିକ ସମାନତା । ଗାନ୍ଧିଜୀ କହିଥିଲେ, 'ଆର୍ଥିକ ସମାନତାହିଁ ଅହିଂସକ ସ୍ୱାଧୀନତାର ଅସଲ ଚାବି' । 'ଏହାର ଅର୍ଥ',ସେ କହିଥିଲେ, 'ରାଷ୍ଟ୍ରୀୟ ସମ୍ପତ୍ତିର ଅଧିକାଂଶ ଭାଗର ଅକ୍ତିଆରରେ ଥିବା ଧନୀଙ୍କୁ ତଳେଇଦେବା ଓ ତେଣେ କୋଟି କୋଟି ବୁଭୁକ୍ଷୁଙ୍କୁ ଟିକିଏ ଉପରକୁ ଉଠାଇବା ।' ଯେ କୌଣସି ସମାଜ ସମାନ, ସମତୁଲ ବିକାଶର ମାର୍ଗ ସ୍ୱୀକାର କରିବାର ଏହାହିଁ ସର୍ବୋତ୍ତମ ଉପାୟ । ଆମେ ଏ ମାର୍ଗ ସ୍ୱୀକାର ନକରିବା ଫଳରେ ଅସମାନତା ଓ ବିଷମତାର ପ୍ରଚଣ୍ଡ ବୋଝ ତଳେ ଚାପି ହୋଇଯାଇଛେ ।

ଗଠନମୂଳକ କାର୍ଯ୍ୟକ୍ରମର ଆଉ କେତେକ ବିଷୟ ଯଥା, ମୌଳିକ ଶିକ୍ଷା, ଗ୍ରାମ ପରିମଳତା, ପ୍ରୌଢ଼ ଶିକ୍ଷା, ସ୍ୱାସ୍ଥ୍ୟରକ୍ଷା ଓ ସ୍ୱାସ୍ଥ୍ୟ ଶିକ୍ଷାକୁ ଏବେ ବିକାଶଶାସ୍ତ୍ରରେ ମାନବିକ ବିକାଶର ଅପରିହାର୍ଯ୍ୟ ଅଙ୍ଗ ବୋଲି କୁହାଯାଉଛି । ଗାନ୍ଧିଜୀଙ୍କ ସ୍ୱରାଜ୍ୟର ବ୍ୟାଖ୍ୟାରେ ମୁକ୍ତିର ଅର୍ଥ ଥିଲା ବିଦେଶୀ ଶାସନରୁ ମୁକ୍ତି, ରୋଗ, ନିରକ୍ଷରତା, ଅଭାବ ଓ ବିଷମତାରୁ

ମୁକ୍ତି । ସ୍ୱରାଜ୍ୟ ତାଙ୍କ ହିସାବରେ ସାମାଜିକ, ରାଜନୀତିକ, ଆର୍ଥିକ ଓ ସାଂସ୍କୃତିକ ବିକାଶ ସମେତ ଏକ ବ୍ୟାପକ ଧାରଣା ଥିଲା । ଭୌତିକ ଓ ସାମାଜିକ ସ୍ତରରେ ବିଷମତା ସମତୁଲ ବିକାଶର ମୂଳରେ କୁଠାରାଘାତ କରେ । ତେଣୁ ଗାନ୍ଧିଜୀଙ୍କ ଗଠନମୂଳକ କାର୍ଯ୍ୟକ୍ରମକୁ ମୁଁ ସମତୁଲ ଓ ସୁସ୍ଥ ବିକାଶର ଖସଡ଼ା ବୋଲି କହିବି । ଏଭଳି ଖସଡ଼ାରେ ବିଷମତାର ସ୍ଥାନ ନାହିଁ । ବହିଷ୍କୃତ ସମାଜଗୋଷ୍ଠୀକୁ ବିକାଶ ପ୍ରକ୍ରିୟାରେ ଅନ୍ତର୍ଭୁକ୍ତ କଲେ ଅସମାନତା ଓ ବିଷମତା ପାଇଁ ବାଟ ରହେ ନାହିଁ । ଏକ ସୁସ୍ଥ, ସୁସଂସ୍କୃତସମ୍ପନ୍ନ ସ୍ଥିତି ଲାଗି ମାନବ ସମାଜର ପ୍ରଚେଷ୍ଟାର ଇତିହାସରେ ଏଭଳି ଖସଡ଼ା ପୂର୍ବରୁ କେବେ ସ୍ଥାନ ପାଇଛି କି ବୋଲି ମୋର ସନ୍ଦେହ । ଆମେ ଗାନ୍ଧୀଙ୍କ ପରିକଳ୍ପିତ ଗଠନମୂଳକ ମାର୍ଗରେ ଗଲୁନାହିଁ, କେଡ଼େ ପରିତାପର କଥା ।

ସେମିତି ଦେଖିଲେ, ସ୍ୱାଧୀନତା ପରେ ଭାରତ ଯେତେବେଳେ ବିକାଶର ପନ୍ଥା ଧରିଲା, ସେତେବେଳେ ଆମ ନେତାମାନଙ୍କ ବିଚାରରେ ଆଞ୍ଚଳିକ ବିକାଶରେ ବିଷମତା ବିଷୟର ଗନ୍ଧ ବି ନ ଥିଲା । ଦେଶର ବିକାଶପାଇଁ କେଉଁ ବାଟ ଅବଲମ୍ବନ କରାଯିବ ତାହାର ମୌଳିକ ଖସଡ଼ା ଜବାହରଲାଲ ନେହେରୁ ପ୍ରସ୍ତୁତ କରିଥିଲେ । ସେଥିରୁ ଏ ଅଭାବ ସ୍ପଷ୍ଟ ହୁଏ । ଦେଶର ଗରିବ ଓ ଅନୁନ୍ନତ ଅଞ୍ଚଳର ସମତୁଲ ବିକାଶ କଥା ସେ ଏଥିରେ ସୂଚାଇଥିଲେ ମଧ୍ୟ ତାହା କରିବା ବାବଦରେ ଦୋଦୋପାଞ୍ଚ ହେଲେ । ସେ ଲେଖିଲେ, ଭାରତର ସର୍ବବ୍ୟାପି ଦାରିଦ୍ର୍ୟ ସାଙ୍ଗକୁ କେତେକ ବିସ୍ତୀର୍ଣ୍ଣ ଅଞ୍ଚଳରେ ଭୟଙ୍କର ଦାରିଦ୍ର୍ୟ ରହିଛି । ଏ ଦୁଇଟି ଦିଗ ଭିତରୁ ବାଛିବାର କଠିନ ପ୍ରଶ୍ନ ଆମ ଆଗରେ ଅଛି : ଆଗ କେତେକ ବଛା ବଛା ସୁବିଧାଜନକ ଅଞ୍ଚଳରେ ଉତ୍ପାଦନ ଉପରେ ଲକ୍ଷ୍ୟ କେନ୍ଦ୍ରିତ କରିବା ଓ ଅନ୍ତତଃ ବର୍ତ୍ତମାନ ପାଇଁ ଦାରିଦ୍ର୍ୟପୀଡ଼ିତ ଅଞ୍ଚଳ କଥା ଭୁଲିଯିବା, ନାଁ ତା ସାଥିରେ ଅପ୍ରଗତ ଅଞ୍ଚଳର ବିକାଶ ଆଡ଼କୁ ଦୃଷ୍ଟିଦେବା । ଏ ଦୁଇ ଧାରା ଭିତରେ ସମତୁଲତା ରଖି ଏକ ସମନ୍ୱିତ ରାଷ୍ଟ୍ରୀୟ ଯୋଜନା ଗଢ଼ିବାକୁ ହେବ ।

## ଯୋଜନା ଓ ବିଷମତା

ମାତ୍ର ଯେତେବେଳେ ପ୍ରଥମ ପଞ୍ଚବାର୍ଷିକ ଯୋଜନା ତିଆରି ହେଲା, ତହିଁରେ ଏଭଳି କୌଣସି ସମତୁଲତା ରଖାଗଲା ନାହିଁ । ମୁଁ ସବୁ ପଞ୍ଚବାର୍ଷିକ ଯୋଜନା ବହି ପଢ଼ିଛି । ମତେ ଆଶ୍ଚର୍ଯ୍ୟ ଲାଗିଲା ଯେ, ଦ୍ୱିତୀୟ ଯୋଜନାରୁ ଏ ବିଷୟରେ ଉପସ୍ଥାପିତ ହୋଇଛି । ଦ୍ୱିତୀୟ ଯୋଜନାରେ ଆଞ୍ଚଳିକ ବିଷମତାର କଥା ଉଠାଗଲା ଓ କୁହାଗଲା ଯେ ଅତି ଅନଗ୍ରସର ଅଞ୍ଚଳରେ ଅଧିକ ପୁଞ୍ଜି ବିନିଯୋଗ କରି ଏକ ବିଭିନ୍ନାଙ୍ଗୀ ଆର୍ଥିକ ସଂରଚନା ଗଢ଼ାଯିବ । ଆଉ ମଧ୍ୟ କୁହାଗଲା ଯେ, ଆଞ୍ଚଳିକ ବିଷମତା ପାଇଁ ବରାବର ଅନୁସନ୍ଧାନ କରାଯିବ ଓ ବିଷମତାସୂଚକ ମାପକାଠି ତିଆରି କରାଯିବ । ୟା ପରର ଯୋଜନାମାନଙ୍କରେ କ୍ରମାଗତ ଭାବରେ ବିଷମତା କମାଇବା ଉପରେ ଲକ୍ଷ୍ୟ ରଖାଗଲା । ସେଥିପାଇଁ ଜଳ-ବିଦ୍ୟୁତ ଯୋଜନା, ଆଦିବାସୀ ଓ ପାହାଡ଼ିଆ ଅଞ୍ଚଳ ବିକାଶ ଯୋଜନା, ସ୍ୱଳ୍ପ-ବୃଷ୍ଟି ଅଞ୍ଚଳରେ ଜମି

ସୁଧାରିବା ଯୋଜନା, ପଡିଆ ଜମିର ଉନ୍ନତି ଯୋଜନା ସଂସ୍ଥା ଇତ୍ୟାଦିର ବ୍ୟବସ୍ଥା ହେଲା । ବିଭିନ୍ନ ଅଞ୍ଚଳର ସଂଯୋଗ ଦ୍ୱାରା ଜିନିଷପତ୍ରର ନିଆଅଣା ଓ ବାଣିଜ୍ୟ ବ୍ୟବସାୟର ବୃଦ୍ଧି ଲାଗି ରାସ୍ତାଘାଟର ବିକାଶ ଉପରେ ଲକ୍ଷ୍ୟ ରଖାଗଲା । ଏପରିକି ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ମଧ ଧାନ, ଡ଼ାଲି ଜାତୀୟ ଶସ୍ୟ ଓ ତୈଳବୀଜର ଉତ୍ପାଦନ ବୃଦ୍ଧି ଭାରତର ପୂର୍ବାଞ୍ଚଳର ଦ୍ରୁତ ପ୍ରଗତି ଘଟାଇ ଆଞ୍ଚଳିକ ବିଷମତା କମ୍ କରିବା କଥା କୁହାଗଲା । ଏ ଲକ୍ଷ୍ୟ ପୂରଣ ପାଇଁ ଆହୁରି ଅନେକ ଦାରିଦ୍ର୍ୟ ଦୂରୀକରଣ ଯୋଜନା ତିଆରି ହେଲା ।

ମାତ୍ର ବାସ୍ତବତା ଅତି ବିକଟ । ବିକାଶର ବିଭିନ୍ନ ପ୍ରକାର ଦେଖାଯାଏ । ପଞ୍ଜାବ, ମହାରାଷ୍ଟ୍ର, ପଶ୍ଚିମବଙ୍ଗ ଓ ଦକ୍ଷିଣର କେତେକ ରାଜ୍ୟରେ ବିକାଶର ଚିହ୍ନ ଅପେକ୍ଷାକୃତ ଟିକିଏ ଭଲ, ମାତ୍ର ପୂର୍ବପଟର ରାଜ୍ୟ, ବିଶେଷତଃ ଓଡ଼ିଶା ଓ ବିହାର, ତାଲିକାର ସବା ତଳେ । ଏହାର ଏକ ପ୍ରକୃଷ୍ଟ ଉଦାହରଣ ହେଲା ଉତ୍ତରପ୍ରଦେଶ, ଯେଉଁଠୁ ଆମର ଅଧିକାଂଶ ପ୍ରଧାନମନ୍ତ୍ରୀ ଆସିଛନ୍ତି ମାତ୍ର ଯାହା ଆର୍ଥିକ ଓ ସାମାଜିକ ପ୍ରଗତିରେ ଅତି ପଛରେ ପଡିଛି । ଉତ୍ତର-ପୂର୍ବ ଅଞ୍ଚଳର ଅଧିକାଂଶ ରାଜ୍ୟର ଆର୍ଥିକ ପ୍ରଗତି ଅନ୍ୟ ରାଜ୍ୟମାନଙ୍କ ତୁଳନାରେ କିଛି ନୁହେଁ । ନବେ ଦଶକରେ ରାଷ୍ଟ୍ରୀୟ ଉତ୍ପନ୍ନର ବୃଦ୍ଧିହାର ଶତକଡ଼ା ୬ ହୋଇଥିଲେ ହେଁ କାମଧନ୍ଦା ଓ ଚାକିରୀର ସମ୍ଭାବନା ସଂକୁଚିତ ହୋଇଯାଇଛି । ସ୍ୱାଧୀନତା ପ୍ରାପ୍ତି ପରେ ଆମେ ଯୋଜନାବଦ୍ଧ ବିକାଶର ବାଟ ଧଇଲେ ଆମ ଲୋକଙ୍କ ସୁଖସମୃଦ୍ଧି ପାଇଁ । ପ୍ରଥମ ପଞ୍ଚବାର୍ଷିକ ଯୋଜନାର ପ୍ରଥମ ଅଧ୍ୟାୟରେ ଲେଖାହେଲା, 'ବିକାଶ ଗୋଟିଏ ଦୃଷ୍ଟିରୁ କର୍ମସଂସ୍ଥାନର ଅନ୍ୟ ନାମ ମାତ୍ର' । ହେଲେ, ବଡ ବିଚିତ୍ର କଥା ଯେ, ବିକାଶ ଓ ଅଭିବୃଦ୍ଧି ଅଧିକ କାମର ସମ୍ଭାବନା ସୃଷ୍ଟି କରୁନାହିଁ, ବରଂ ଏକ ବିପଦ୍‌ଜନକ କର୍ମଶୂନ୍ୟ ଅଭିବୃଦ୍ଧି ଦେଖାଦେଇଛି । ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣର ସ୍ପଷ୍ଟ ସଙ୍କେତ ଭାବରେ ଏଇ କର୍ମହୀନ ଅଭିବୃଦ୍ଧି ଆମ ଭାଗକୁ ପଡିଲାଣି । ନୀଳକଣ୍ଠ ରଥେ, ଯିଏ ଦାଣ୍ଡେକରଙ୍କ ସଙ୍ଗରେ ମିଶି ସତୁରୀ ଦଶକରେ ଦାରିଦ୍ର୍ୟ ଉପରେ ପ୍ରଥମ ଅନୁସନ୍ଧାନ କରିଥିଲେ ନବେ ଦଶକରେ ଆମ ଦେଶର ଅଭାବ ଓ ଦାରିଦ୍ର୍ୟର ବେଦନାଦାୟକ ବାସ୍ତବ କଥା ବେଶୀ ଜାଣନ୍ତି ।

ସଂଯୁକ୍ତ ରାଷ୍ଟ୍ର ସଂଘ ବିକାଶ ସଂସ୍ଥା (UNDP) ତାଙ୍କର ଏକ ଗ୍ରନ୍ଥ, 'ଭାରତ : ମାନବ ବିକାଶର ମାର୍ଗ' (India : the Road to Human Development)ରେ ସ୍ପଷ୍ଟ ଭାବରେ ଦେଖାଇଛନ୍ତି ଯେ, ନବେ ଦଶକରେ ରାଷ୍ଟ୍ରୀୟ ଆୟରେ ବାର୍ଷିକ ହାରାହାରି ଶତକଡ଼ା ୬ ରୁ ୭ ହାରରେ ବୃଦ୍ଧି ସତ୍ତ୍ୱେ ଦାରିଦ୍ର୍ୟ ବଢିଛି । ଏଥିରେ ପୁଣି ଦର୍ଶାଯାଇଛି ଯେ ୮୦ ଦଶକରେ ରାଷ୍ଟ୍ରୀୟ ଉତ୍ପନ୍ନର ବାର୍ଷିକ ମାତ୍ର ଶତକଡ଼ା ୩ ହାରରେ ବୃଦ୍ଧି ସତ୍ତ୍ୱେ ଓ ଦୁର୍ନୀତି, ବାଟମାରଣା, ଅପଚୟ ସତ୍ତ୍ୱେ ଦେଶରେ ଦାରିଦ୍ର୍ୟର ଅନୁପାତ କମିଥିଲା । ଏବେ ଯେ ଖାଲି ଆୟ ହିସାବରେ ଦାରିଦ୍ର୍ୟ ବଢ଼ିଛି ସେତିକି ନୁହେଁ, ଶିକ୍ଷାର ଅଭାବ, କୁପୋଷଣ, ରୋଗ, ନିରକ୍ଷରତା, ପରିବେଶ ପ୍ରଦୂଷଣ ଏସବୁ ହିସାବରେ ମଧ ମାନବିକ ଦାରିଦ୍ର୍ୟ ବୃଦ୍ଧିପାଇଛି । ବିଶ୍ୱ ବ୍ୟାଙ୍କର ୨୦୦୦-୨୦୦୧ରେ ବିଶ୍ୱ ବିକାଶ ରିପୋର୍ଟ ଦାରିଦ୍ର୍ୟ ଉପରେ

କେନ୍ଦ୍ରିତ । ଏଥିରେ ଦର୍ଶାଯାଇଛି ଯେ, ୧୯୮୭ ରୁ ୧୯୯୮ ଭିତରେ ଦୈନିକ ଏକ ଡଲାରରୁ କମ୍ ଆୟରେ - ତାଙ୍କ ହିସାବରେ ଏମାନେ ଦରିଦ୍ର - ବଞ୍ଚୁଥିବା ଲୋକଙ୍କ ସଂଖ୍ୟା କମିବା ପରିବର୍ତ୍ତେ ବଢ଼ିଛି । ରାଷ୍ଟ୍ରୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ଅସମାନତା କେତେ ଗୁଣ ବଢ଼ିଛି । ଏଥିରୁ ଦେଖାଯାଉଛି ଯେ ଜାଗତିକୀକରଣ ଫଳରେ ଆମର ଅଭାବ ଅସୁବିଧା ବଢ଼ି ଆମ ଆର୍ଥିକ ସ୍ୱୟଂପୂର୍ଣ୍ଣତା ବାଧାପ୍ରାପ୍ତ ହୋଇଛି । ଆମ ସ୍ଥିତିର ମୂଳଦୁଆରେ ଏହା କୁଠାରାଘାତ ଭଳି । ତା' ଉପରକୁ ମୁକ୍ତ ବଜାର ଫଳରେ ଆମ ଲୋକଙ୍କ ସ୍ୱାସ୍ଥ୍ୟକୁ ବିପଦ ଘନେଇଛି । ସ୍ୱାସ୍ଥ୍ୟ ବାବଦରେ କମ୍ ଖର୍ଚ୍ଚ ଓ ମାନବ ବିକାଶର କେତେକ ମୂଳ କ୍ଷେତ୍ରରୁ ସରକାର ଆଡେଇ ଯିବା ଫଳରେ ଆମ ଚିକିତ୍ସା ଏବେ ଖୋଲା ବଜାର ଉପରେ ନିର୍ଭର କରୁଛି । ଫଳରେ ଏହା ଭୟଙ୍କର ମହର୍ଘ ହୋଇପଡ଼ିଛି । ଔଷଧ ତିଆରି କ୍ଷେତ୍ରରେ ବସ୍ତୁ ସମନ୍ଧୀୟ ପେଟେଣ୍ଟ ଫଳରେ ଜୀବନ ବଞ୍ଚେଇବା ଔଷଧ ଆମ ଲୋକଙ୍କ କିଣିବା ଶକ୍ତି ବାହାରର ହୋଇଯିବ । ଏଇ ଭାବରେ ଜାଗତିକୀକରଣ ଆମ ଜନତାର ସାମାଜିକ ଓ ଆର୍ଥିକ ସୁରକ୍ଷାକୁ ଦୁର୍ବଳ କରିଦେଲାଣି ।

ଘରୋଇକରଣ ଫଳରେ ପ୍ରଗତ ରାଜ୍ୟମାନଙ୍କରେ ପୁଞ୍ଜି ବିନିଯୋଗ ଅଧିକ ହେଉଛି, ଅପ୍ରଗତ ରାଜ୍ୟରେ କମ୍ । ତେଣୁ ଆଞ୍ଚଳିକ ବିଷମତା ବୃଦ୍ଧି ପାଉଛି । ପ୍ରଗତ ରାଜ୍ୟରେ ବ୍ୟାଙ୍କ୍ ଜମା ଗରିବ ରାଜ୍ୟଙ୍କ ଅପେକ୍ଷା ଦ୍ରୁତ ଗତିରେ ବଢୁଛି । ସ୍ଥୂଳ ଭାବରେ ଏହାସବୁ କ୍ରମବର୍ଦ୍ଧିଷ୍ଣୁ ଅସମାନତାର ଚିହ୍ନ : ଜିଲା ଓ ଗ୍ରାମସ୍ତରର ବିକାଶ ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିବା ସ୍ୱାଭାବିକ ।

ମାନବ ବିକାଶ ମୋଟ ବିକାଶର ଏକ ବିଶିଷ୍ଟ ଦିଗ । ମାନବ ବିକାଶ ଆଡକୁ ଦୃଷ୍ଟି ନଦେଲେ ମୋଟ ବିକାଶ ପ୍ରତିକୂଳ ଗତି ଧରିବ । ମନେରଖିବା ଉଚିତ ଯେ ଜବାହରଲାଲ ନେହେରୁଙ୍କ ଅଧକ୍ଷତାରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସ୍ଥାପନ କରିଥିବା ରାଷ୍ଟ୍ରୀୟ ଯୋଜନା ସମିତି ଯୋଜନାର ସ୍ଥୂଳ ବ୍ୟାଖ୍ୟା କରି ସେଥିରେ କେବଳ ଆର୍ଥିକ ନୁହେଁ, ମାନବିକ ଓ ସାଂସ୍କୃତିକ ବିକାଶ ମଧ୍ୟ ଅନ୍ତର୍ଭୁକ୍ତ କରିଥିଲେ । ମୋ' ମତରେ ସ୍ୱାଧୀନତା ପୂର୍ବ ଭାରତରେ ବିକାଶର ଏଭଳି ସମ୍ପୂର୍ଣ୍ଣ ବ୍ୟାଖ୍ୟା ଏକ ନାବୀନ୍ୟପୂର୍ଣ୍ଣ ବୈଶିଷ୍ଟ୍ୟ ଥିଲା । ଆପଣମାନଙ୍କ ସୁବିଧା ପାଇଁ ମୁଁ ସେ ସମ୍ପୂର୍ଣ୍ଣ ବ୍ୟାଖ୍ୟାକୁ ଏଠାରେ ଉଦ୍ଧୃତ କରୁଛି । ସେଥିରେ କୁହାଗଲା, ''ଗଣତାନ୍ତ୍ରିକ ବ୍ୟବସ୍ଥାରେ ଯୋଜନାର ଅର୍ଥ ହେଲା, ଦେଶର ପ୍ରତିନିଧିଙ୍କ ସଂସ୍ଥା ସ୍ଥିର କରିଥିବା ସାମାଜିକ ଲକ୍ଷ୍ୟ ଅନୁସାରେ ନିରପେକ୍ଷ ବିଶେଷଜ୍ଞଙ୍କ ଦ୍ୱାରା କରାଯାଇଥିବା ପୋଷଣ-ବ୍ୟୟ ଉତ୍ପାଦନ, ପୁଞ୍ଜି ଲଗାଣ, ବାଣିଜ୍ୟ ଓ ଆୟ - ବଣ୍ଟନରେ ତାନ୍ତ୍ରିକ ସମନ୍ୱୟ ରକ୍ଷା । ଏଭଳି ଯୋଜନା କେବଳ ଆର୍ଥିକ ଓ ଲୋକଙ୍କ ଜୀବନ ମାନ ବୃଦ୍ଧି ଦୃଷ୍ଟିରୁ କରାଯିବାର ନୁହେଁ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ମୂଲ୍ୟ ଏବଂ ଜୀବନର ମାନବିକ ଦିଗ ମଧ୍ୟ ଏଥିର ଅନ୍ତର୍ଭୁକ୍ତ ।''

ଜବାହରଲାଲ ନେହେରୁ ତାଙ୍କ ମୌଳିକ ଖସଡ଼ାରେ ଲେଖିଥିଲେ ''ଶେଷରେ ବ୍ୟକ୍ତିର ମାନ ଯେ ଅସଲ କଥା ଏହା ସ୍ପଷ୍ଟ । ବ୍ୟକ୍ତି ହିଁ ସାମାଜିକ ସମ୍ପତ୍ତି ତଥା ସାଂସ୍କୃତିକ

ପ୍ରଗତି ନିର୍ମାଣ କରେ । ତେଣୁ ସେ ମାନବ ବ୍ୟକ୍ତି ନିର୍ମାଣ କରିବା ଲାଗି ଶିକ୍ଷା ଓ ସ୍ୱାସ୍ଥ୍ୟ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ । ଏଥିରେ ବି ଆମକୁ ସମ୍ବଳର ଅଭାବ ଭୋଗିବାକୁ ପଡିବ, ମାତ୍ର ମନେ ରଖିବା ଉଚିତ ଯେ, ଆମ ଆର୍ଥିକ ତଥା ସାଂସ୍କୃତିକ ଓ ଆଧ୍ୟାତ୍ମିକ ପ୍ରଗତିର ମୂଳରେ ଅଛି ଉପଯୁକ୍ତ ଶିକ୍ଷା ଓ ଭଲ ସ୍ୱାସ୍ଥ୍ୟ ।''

## ଜଗତୀକରଣ ଓ ବିଷମତା

ଆମ ଦେଶର ମନୁଷ୍ୟବଳ ବିକାଶର ଅନୁଶୀଳନ କଲେ ଦେଖାଯାଏ, କେରଳ, ତାମିଲନାଡୁ, କର୍ଣ୍ଣାଟକ, ଗୋଆ, ହିମାଚଳ ପ୍ରଦେଶ, ମେଘାଳୟ, ମିଜୋରାମ୍ ଭଳି ରାଜ୍ୟ ଏ ଦିଗରେ ଭଲ ପ୍ରଗତି କରିଥିଲାବେଳେ ମହାରାଷ୍ଟ୍ର, ପଞ୍ଜାବ, ଗୁଜରାଟ ଭଳି ପ୍ରଗତ ରାଜ୍ୟ ଓ ଯାହାକୁ କହୁଛନ୍ତି 'ବିମାରୁ' ରାଜ୍ୟ, ଅର୍ଥାତ ବିହାର, ମଧ୍ୟପ୍ରଦେଶ, ରାଜସ୍ଥାନ, ଉତ୍ତରପ୍ରଦେଶ ବହୁତ ପଛରେ ପଡିଛନ୍ତି । କେରଳ ଦେଖାଇଦେଇଛି ଯେ ସ୍ୱଳ୍ପ ଆର୍ଥିକ ପ୍ରଗତି ସତ୍ତ୍ୱେ ପ୍ରଗତରାଷ୍ଟ୍ରଙ୍କ ସମକକ୍ଷ ହେଲାଭଳି ମାନବିକ ପ୍ରଗତି କରିହୁଏ । ସ୍ୱାଧୀନତାର ଆରମ୍ଭ କାଳରେ ଭାରତରେ ମନୁଷ୍ୟର ହାରାହାରି ଜୀବନକାଳ ୨୭ ବର୍ଷ ଥିଲା । ୧୯୭୨ ମସିହା ବେଳକୁ ଏହା ଦ୍ୱିଗୁଣିତ ହେଲା । ଜଣେ ବିକାଶତତ୍ତ୍ୱଜ୍ଞ ରବର୍ଟ ମ୍ୟାକ୍‌ନାମାରା ଏହାକୁ ଇତିହାସରେ ନ ଭୂତୋ ବୋଲି ବର୍ଣ୍ଣନା କରିଥିଲେ । ବର୍ତ୍ତମାନ ଆମ ହାରାହାରି ଜୀବନକାଳ ୬୦ ବର୍ଷରୁ ଊର୍ଦ୍ଧ୍ୱ । ରାଷ୍ଟ୍ରୀୟ ସ୍ତରରେ ସାକ୍ଷରତାର ହାର ଶତକଡ଼ା ୬୫ । ଏଥିରେ ଅବଶ୍ୟ ରାଜ୍ୟ ରାଜ୍ୟ ଭିତରେ ବହୁତ ଫରକ । ପୂର୍ବାସ୍ପୃଶ୍ୟ ଓ ଆଦିବାସୀଙ୍କ ସାକ୍ଷରତାର ପରିମାଣ ବହୁତ କମ୍ । କିନ୍ତୁ ମୋର ଚିନ୍ତାର ବିଷୟ ଯେ ଜାଗତିକୀକରଣ ଓ ଘରୋଇକରଣ ଫଳରେ ଏ ପର୍ଯ୍ୟନ୍ତ ହୋଇଥିବା ମାନବ ବିକାଶ ପ୍ରତିହତ ହୋଇପାରେ । କାରଣ ଆଞ୍ଚଳିକ ବୈଷମ୍ୟ ବଢିଲେ ମାନବ ବିକାଶ ଉପରେ ତାହାର ପ୍ରତିକୂଳ ପରିଣାମ ହେବ । ତହିଁରେ ଏବେ ଥିବା ବିଷମତା ଆହୁରି ବଢିବ । ଆମ ଅଭାବପୀଡିତ, ଦରିଦ୍ର ଜନସାଧାରଣଙ୍କ ଗଣତନ୍ତ୍ର ଉପରର ବିଶ୍ୱାସ ତା'ର ନିରାକରଣର ଏକମାତ୍ର ଉପାୟ । ବାସ୍ତବିକ୍, ଗଣତନ୍ତ୍ରରେ ତାଙ୍କର ବିଶ୍ୱାସ ଉଚ୍ଚଭ୍ରୂ - ଅଭିଜନଙ୍କଠାରୁ ଅଧିକ । ତେଣୁ ସେମାନେ ତାଙ୍କ ଅଧିକାର ପାଇଁ ପ୍ରାଣପଣେ ଲଢ଼ିବେ ଓ ନିଜର ବିକାଶ ସାଧିବେ ।

ମାନବ ବିକାଶ କଥା କହିଲାବେଳେ ମୁଁ ପୁଣି ସ୍ତ୍ରୀବର୍ଗ ଆଡକୁ ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରାଏ । ବିକାଶର କେନ୍ଦ୍ରସ୍ଥାନରେ ସ୍ତ୍ରୀବର୍ଗ । ସେମାନଙ୍କ ବିନା ପ୍ରକୃତ ବିକାଶ ସମ୍ଭବ ନୁହେଁ । ଆମ ସମାଜରେ ମହିଳାଙ୍କ ମହତ୍ତ୍ୱ ବିଷୟରେ ଗାନ୍ଧିଜୀ କହିଥିବା କଥା ମୁଁ ଆଗରୁ କହିଛି । ମୁଁ ଏବେ କହିବାକୁ ଚାହେଁ ଯେ, ପ୍ରଗତି ହେଲେ ମହିଳା ପ୍ରଗତି ମନକୁମନ ସାଙ୍ଗେ ସାଙ୍ଗେ ହୁଏ ନାହିଁ । ଏବେ ଆମେ ସମସ୍ତେ ଜାଣୁଛେ ଯେ ଆମର ସବୁ ପ୍ରଗତ ରାଜ୍ୟରେ ସ୍ତ୍ରୀଭ୍ରୂଣ ହତ୍ୟାର ପ୍ରମାଣ ସବୁଠାରୁ ବେଶୀ । ସବୁଜ ବିପ୍ଲବର ରାଜ୍ୟ ତଥା ଯେଉଁ ରାଜ୍ୟରେ ଧାର୍ମିକ ମୌଳବାଦର ପ୍ରଭାବ ଅଧିକ, ସେଠାରେ ସ୍ତ୍ରୀଭ୍ରୂଣ ହତ୍ୟାର ହାର ଅଧିକ ବୋଲି ଅମର୍ତ୍ତ୍ୟ ସେନ୍ ତାଙ୍କ ଏକ ଲେଖାରେ ଦର୍ଶାଇ ବିଷୟଟାକୁ ପ୍ରକାଶକୁ ଆଣିଛନ୍ତି ।

ତେଣୁ ମନେ ରଖିବାକୁ ହେବ ଯେ ଧାର୍ମିକ ମୌଳବାଦ ଲୈଙ୍ଗୀକ ସମାନତାର ବିରୋଧୀ ଓ ତେଣୁ ବିକାଶର ପରିପନ୍ଥୀ । ସ୍ତ୍ରୀର ଅଧିକାର ବି ମାନବ ଅଧିକାର, ତେଣୁ ସ୍ତ୍ରୀବର୍ଗର ବିକାଶ ମଧ୍ୟ ଦେଶର ବିକାଶ । ସ୍ତ୍ରୀବର୍ଗକୁ ଆଡେଇ ରଖି ଧାର୍ମିକ ମୌଳବାଦ ବିକାଶକୁ ନ୍ୟୁନ କରୁଛି ଓ ଫଳରେ ବିଷମତା ସୃଷ୍ଟି କରୁଛି । କେତେକ ଧାର୍ମିକ ଅନୁଷ୍ଠାନ ସ୍ତ୍ରୀଭ୍ରୂଣ ହତ୍ୟା ବନ୍ଦ କରିବା ପାଇଁ ଦେଇଥିବା ନିର୍ଦ୍ଦେଶ ସ୍ୱାଗତାର୍ହ । ଏଭଳି ଉଦ୍ୟମକୁ ପ୍ରୋତ୍ସାହନ ଦେବା ଉଚିତ । ମୋର ମନେପଡୁଛି, ଥରେ ରାମ ମନୋହର ଲୋହିଆ ତାଙ୍କର କେତେକ ସାଙ୍ଗଙ୍କ ସହିତ କଫି ପିଇ ବସିଥିଲେ । ତାଙ୍କ ଭିତରୁ ଜଣେ ସେଇ କଫି ଟେବୁଲରୁ ଏକ ବିପ୍ଳବର ସୂତ୍ରପାତର ପ୍ରସ୍ତାବ ଦେଲେ । ଲୋହିଆ ରାଗି ଅଗ୍ନିଶର୍ମା । କହିଲେ, ମାଇପି ଓ ପଛୁଆ ଜାତିଙ୍କୁ ଛାଡ଼ି ତମେ ଅନ୍ୟ କଥା କଳ୍ପନା କିପରି କରିପାରୁଛ ? ଆମ ରାଷ୍ଟ୍ରନେତାମାନଙ୍କ ଏହି ଦୃଷ୍ଟି ହିଁ ଆମ ଦେଶକୁ ବାଟ ଦେଖାଇଛି । ମାତ୍ର ଦୁର୍ଭାଗ୍ୟର କଥା ଯେ, ମାଇପେ ଏବେ ବି ଦୁସ୍ଥ ପରିସ୍ଥିତିରେ ଧଡପଡ ହେଉଛନ୍ତି । ରାମ ମନୋହର ଲୋହିଆ ଥରେ କହିଥିଲେ ଯେ ମାଇପିଙ୍କୁ ଖାସ୍ ଅଧିକାର ହିଁ ତାଙ୍କୁ ପରମ୍ପରା ଓ ଅସମାନତାର ବୋଝ ତଳୁ ଉଠାଇପାରିବ । ମତେ ଲାଗୁଛି, ମହିଳାଙ୍କୁ ସ୍ୱତନ୍ତ୍ର ଅଧିକାର ଦେବାକଥା ପ୍ରଥମ ସୂଚାଇଥିବା ସ୍ୱାଧୀନ ଭାରତର ନେତାମାନଙ୍କ ଭିତରୁ ସିଏ ଜଣେ ଥିଲେ । ମାଇପିଙ୍କ ଲାଗି ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କରେ ଏକ-ତୃତୀୟାଂଶ ନିର୍ବାଚିତ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ଲୋହିଅଙ୍କ ଦୂରଦୃଷ୍ଟିର ସାଫଲ୍ୟ କହିବାକୁ ହେବ । ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ଏକ ନିୟୁତ ମହିଳାଙ୍କ ନିର୍ବାଚନ ଓ ତହିଁରେ ସେମାନଙ୍କ କାର୍ଯ୍ୟ ବିକାଶ ପ୍ରକ୍ରିୟାରେ ପରିବର୍ତ୍ତନ ଆଣିଛି । ଏ ଦିଗରେ ମହିଳାଙ୍କ ଦୃଷ୍ଟିଭଙ୍ଗୀ ବିକାଶ କାମକୁ ଏକ ନୂଆ ଦୃଷ୍ଟି ଦେଇଛି । 'ବୁଭୁକ୍ଷୁ ଯୋଜନା'ର ସଭାପତି ଶ୍ରୀମତୀ ଜୋଅନ୍ ହୋମ୍ସ୍ ଏହାକୁ 'ଏ ଯୁଗର ବନ ସାମାଜିକ ପ୍ରୟୋଗ' ବୋଲି ବର୍ଣ୍ଣନା କରିଛନ୍ତି । ଆମ ପାର୍ଲିଆମେଣ୍ଟରେ ମହିଳାଙ୍କ ଲାଗି ଏକ-ତୃତୀୟାଂଶ ସ୍ଥାନ ସଂରକ୍ଷଣ ମଧ୍ୟ ଇତିହାସରେ ସମତୁଲ ବିକାଶପଥର ଏକ ଯୁଗାନ୍ତକାରୀ ଘଟଣା ବୋଲି ଲିପିବଦ୍ଧ ହେବ ।

## ଓଡ଼ିଶାର ସ୍ଥିତି

ଏଇ ଅବସରରେ ମୁଁ ଓଡ଼ିଶା କଥା ଉଠାଏ । ଖୋସଲା ଆୟୋଗର ରିପୋର୍ଟରେ ଓଡ଼ିଶାକୁ ଆଧୁନିକ ଭାରତର ସିଣ୍ଡରୋଲା ବୋଲି ଅଭିହିତ କରାଯାଇଛି । ଦୁଃଖ ପ୍ରକାଶ କରାଯାଇଛି ଯେ, ପ୍ରାକୃତିକ ସମ୍ବଳର ପ୍ରାଚୁର୍ଯ୍ୟ ସତ୍ତ୍ୱେ ଏହା ଯେତେଦୂର ପ୍ରଗତ ହେବାର କଥା ହୋଇପାରି ନାହିଁ । ଗାନ୍ଧିଜୀ ଥରେ ଲେଖିଥିଲେ ଯେ, ଅଧିକାଂଶ ଭାରତୀୟଙ୍କ ପାଇଁ ଓଡ଼ିଶା ଏକ ଭୌଗୋଳିକ ସ୍ଥିତି ମାତ୍ର । ଆମ ରାଜ୍ୟର ଅବିକଶିତ ପଛୁଆପଣ ହେଲା ଗାନ୍ଧିଜୀଙ୍କ ଏ ଧାରଣାର କାରଣ । ଫଳରେ ରାଷ୍ଟ୍ରୀୟ ସ୍ତରରେ ଆମେ ଆଖିଦୃଶିଆ ବି ନୁହେଁ । ଗାନ୍ଧିଜୀ ଓଡ଼ିଶାକୁ ପ୍ରଥମଥର ଆସିଲାବେଳେ ବୁଲିଚାଲିଲା ପରେ କହିଥିଲେ ଯେ ଓଡ଼ିଶାର ଦାରିଦ୍ର୍ୟର ହାର ଭାରତରେ ସବୁଠୁ ବେଶୀ । ତା' ବିହାରକୁ ମଧ୍ୟ ଟପିଯାଇଛି ।

ଓଡ଼ିଶାରେ ବାଳମୃତ୍ୟୁର ହାର ଭାରତରେ ସର୍ବାଧିକ । ଏଭଳି ପରିସ୍ଥିତିରେ ଖାଲି ଖୋଲା ବଜାର ଉପରେ ନିର୍ଭର କଲେ ଅଭାବ ଓ ବିଷମତା ବଢ଼ିବ ସିନା, କମିବ ନାହିଁ । 'କବକୋ' ଅଞ୍ଚଳର ଅବସ୍ଥାରୁ ପ୍ରତୀୟମାନ ରାଜ୍ୟ ଭିତରର ବିଷମତା ବଢ଼ିବ ସିନା, କମିବ ନାହିଁ । 'କବକୋ' ଅଞ୍ଚଳର ଅବସ୍ଥାରୁ ପ୍ରତୀୟମାନ ରାଜ୍ୟ ଭିତରର ବିଷମତା ହୃଦୟ ବିଦାରକ । ସେଠାରେ ଆଦିବାସୀ ଅଞ୍ଚଳରେ ପିଲାବିକ୍ରୀ, ଆମ୍ବଟାକୁଆ ଖିଆ ଓ ଉପାସଭୋକରେ ମୃତ୍ୟୁ ଅନ୍ତତଃ ବଞ୍ଚିବାର ସମ୍ବଳର ଅଭାବ ଓ ଏ ବାବଦ ଆଞ୍ଚଳିକ ବିଷମତାର ସୂଚକ । ଉପକୂଳ ଅଞ୍ଚଳ ଓ ପଶ୍ଚିମ ଓଡ଼ିଶା ଭିତରେ ଆର୍ଥିକ ଓ ସାମାଜିକ ବିକାଶର ଫରକ କଥା ସମସ୍ତଙ୍କୁ ଜଣା । ଏକ ସ୍ୱତନ୍ତ୍ର କୋଶଳ ରାଜ୍ୟ ଗଠନର ଦାବି ଏଭଳି ବିଷମ ବିକାଶର ଫଳ । ଆମ ରାଜ୍ୟରେ ପୂର୍ବାସ୍ପୃଶ୍ୟ, ଆଦିବାସୀ ଓ ଅନ୍ୟ ପଛୁଆ ଜାତିଙ୍କ ଆର୍ଥିକ ଓ ସାମାଜିକ ପରିସ୍ଥିତିର ଅତି ତଳୁଆ ସୂଚକ ସବୁ ଆଞ୍ଚଳିକ ବିଷମତାର ଚିହ୍ନ । ରାଷ୍ଟ୍ରୀୟ ସ୍ତରରେ ଛତିଶଗଡ଼, ଝାଡଖଣ୍ଡ ଓ ଉତ୍ତରାଞ୍ଚଳ ରାଜ୍ୟର ନିର୍ମାଣ ମୂଳରେ ଅଛି ଏହି ଆଞ୍ଚଳିକ ସମତୁଲ ବିକାଶର ଦାବି । ବିକାଶରେ ଆଞ୍ଚଳିକ ବିଷମତା ଫଳରେ ଏକ ସ୍ୱତନ୍ତ୍ର ତେଲେଙ୍ଗାନା ରାଜ୍ୟର ଦାବି ଉଠିଛି । ଆମ ଦେଶରେ ଓ ରାଜ୍ୟରେ ବିଷମତା, ଅସମତା ଓ ନିଃସ୍ୱତାର ଅଭାବ ନାହିଁ ।

ଇତିହାସରୁ ଦେଖାଯାଏ ଯେ ଆଞ୍ଚଳିକ ବିଷମତା ଫଳରେ ସ୍ୱତନ୍ତ୍ର ରାଜ୍ୟ ଗଠନର ଦାବି ହୁଏ । ଆଞ୍ଚଳିକ ବିଷମତାର ମୂଳରେ ଅଛି ପ୍ରକୃତ ବିକେନ୍ଦ୍ରୀକରଣର ଅଭାବ ଓ ସ୍ଥାନୀୟ ସ୍ତରରେ ଲୋକଙ୍କ ଅଧିକାରକୁ କ୍ଷୁର୍ଣ୍ଣ କରୁଥିବା ବ୍ୟବସ୍ଥା । ମହାରାଷ୍ଟ୍ରରେ ଏକ ସ୍ୱତନ୍ତ୍ର ବିଦର୍ଭ ରାଜ୍ୟ ଗଠନର ଦାବି ଆମ ଦେଶରେ ବିଷମ ଆଞ୍ଚଳିକ ବିକାଶର ଆଉ ଏକ ଉଦାହରଣ । ଏ ସମ୍ବନ୍ଧରେ ମୁଁ ଆଗରୁ ଛତିଶଗଡ଼, ଝାଡ଼ଖଣ୍ଡ ଓ ତେଲେଙ୍ଗାନା ବିଷୟ ଉଲ୍ଲେଖ କରିଛି । ଉତ୍ତର କର୍ଣ୍ଣାଟକରେ ମଧ୍ୟ ଲୋକେ ସ୍ୱତନ୍ତ୍ର ରାଜ୍ୟ ଦାବି କରୁଛନ୍ତି । ବିକାଶରେ ବିଷମତାରୁ ଉଦ୍ଭବୁଥିବା ଏ ଅସନ୍ତୋଷ ରାଜନୀତିକ ନେତା, ଯୋଜନାକାରୀ ତଥା ଜନସାଧାରଣଙ୍କର ଚିନ୍ତାର ବିଷୟ ହୋଇଛି । ଅସଲ କଥା ହେଲା, ଲୋକଙ୍କ ହାତରେ ଯଦି ଯଥେଷ୍ଟ ଅଧିକାର ଓ ଆର୍ଥିକ ସମ୍ବଳ ଦିଆ ନ ଯାଏ ତେବେ ସେମାନେ ନିଜ ଇଚ୍ଛା ମୁତାବକ ନିଜ ଭାଗ୍ୟ ନିଜେ ଗଢ଼ି ପାରିବେ ନାହିଁ । ବିକେନ୍ଦ୍ରୀକରଣ ଏ ଯୁଗର ଗତି ବୋଲି କୁହାଯାଉଛି । ମାତ୍ର ଯାହା ଦେଖାଯାଉଛି ବିକେନ୍ଦ୍ରୀକରଣ ପାଇଁ ସାମ୍ବିଧାନିକ ବ୍ୟବସ୍ଥା ସତ୍ତ୍ୱେ କେନ୍ଦ୍ରୀକରଣ ପ୍ରକ୍ରିୟା ବଳବତ୍ତର ରହିଛି । ଠିକଣା ବେଳରେ ପଞ୍ଚାୟତିରାଜ ଅନୁଷ୍ଠାନକୁ ନିର୍ବାଚନ କରାଇବାରେ କୁଣ୍ଠିତତା ଏବଂ ସ୍ଥାନୀୟ ସ୍ୱରାଜ୍ୟ ସଂସ୍ଥାକୁ କର୍ମକୁଶଳ କରାଇବା ଯୋଜନାକୁ ଚଲାକିରେ ନିକାମୀ କରିବାର ପ୍ରଚେଷ୍ଟାରୁ ଆଞ୍ଚଳିକ ବିଷମତା ସମସ୍ୟା ଆଡକୁ ଦୃଷ୍ଟି ଦେବାପାଇଁ ରାଜନୀତିକ ଇଚ୍ଛାଶକ୍ତିର ଅଭାବ ସ୍ପଷ୍ଟ ଦେଖାଯାଉଛି । ବିକାଶରେ ଭାଗୀଦାର ହେବାପାଇଁ ସାଧାରଣ ଜନତାର ପ୍ରବଳ ଉତ୍ସାହ ଦିଶୁଛି । ଲୋକଙ୍କୁ ନିର୍ବାଚନରେ ଭାଗନେବାରୁ ରୋକିବା ପାଇଁ ହୋଇଥିବା ପ୍ରବଳ ହିଂସାଚାର ଓ ବଳପ୍ରୟୋଗ ସତ୍ତ୍ୱେ

ବିହାରରେ ଦ୍ୱିଦଶକ ପରେ ହୋଇଥିବା ପଞ୍ଚାୟତ ନିର୍ବାଚନରେ ଭାଗ ନେବାପାଇଁ ଗରିବ ମାଇପେ ଓ ମିଣିପଙ୍କର ଅଭୁତପୂର୍ବ ଉତ୍ସାହ ଦେଖିବାକୁ ମିଳିଲା । ଆମ ଲୋକେ ଯେ ନାଗରିକ ଭାବରେ ତାଙ୍କ ଅଧିକାର ବଜାୟ ରଖିବା ଲାଗି ଆହ୍ୱାନକୁ ମୁହାଁଇବାକୁ ପ୍ରସ୍ତୁତ, ଏହା ତାହାର ନିଦର୍ଶନ । ମାତ୍ର ଆମ ରାଜକୀୟ ନେତୃତ୍ୱ ଲୋକଙ୍କର ଏ ମୌଳିକ ଆକାଂକ୍ଷା ପୂର୍ଣ୍ଣ କରିବାକୁ ଅସମର୍ଥ ଦିଶୁଛନ୍ତି । ଏ ସମ୍ପର୍କରେ ଜଣେ ବିଶିଷ୍ଟ ଇଂରେଜ ବୁଦ୍ଧିଜୀବୀଙ୍କ ବ୍ୟଙ୍ଗୋକ୍ତି ମୋର ମନେପଡୁଛି । ସେ କହିଲେ, ରାଜକୀୟ ନେତାଙ୍କ ମତରେ ଗଣତନ୍ତ୍ରର ଅର୍ଥ ଲୋକଙ୍କୁ ଖାଲି ଭୁଲୋଉଛି ମାତ୍ର । ଆମେ ଲୋକଙ୍କୁ ଏମିତି ଭୁଲାଇ କେତେକାଳ ତିଷ୍ଠି ପାରିବୁ ? ମୁଁ ଏବେ ଗୋଟିଏ ଲେଖାରେ ପଢ଼ିଥିଲି ଯେ ସ୍ଥାନୀୟ ସ୍ତରରେ ବିକାଶ ହିଁ ଆମ ଲୋକଙ୍କ ଦାରିଦ୍ର୍ୟ ଉଚ୍ଛାଟନ ଓ ସମତୁଲ ବିକାଶର ପ୍ରକୃଷ୍ଟ ମାର୍ଗ । ଗାନ୍ଧିଜୀଙ୍କ ଦୃଷ୍ଟିରେ ଥିଲା ସ୍ଥାନୀୟ ସମ୍ବଳର ବ୍ୟବହାର କରି ଗାଁର ବିକାଶ । ମୁଁ ଆଗରୁ ସ୍ୱତନ୍ତ୍ର କୋଶଳ ରାଜ୍ୟ କଥା କହିଛି । ଆମ ରାଜ୍ୟର ଏ ଅଞ୍ଚଳ ବିକଶିତ ରହିବାର କାରଣ ଏଠାରେ ମାନବ ବିକାଶ ଓ ପ୍ରାକୃତିକ ସମ୍ପଦ ବିକାଶର ଅଭାବ । ପ୍ରାକୃତିକ ସମ୍ବଳ ଥାଇ ମଧ ବିକାଶ ନ ହେବାର କାରଣ ଆମେ ତାହାର ଉପଯୁକ୍ତ ବିନିଯୋଗ ଆଡକୁ ଧାନ ଦେଇନାହୁଁ । ଦେଖନ୍ତୁ ଆନ୍ନା ହଜାରେ କିପରି ସ୍ଥାନୀୟ ସ୍ତରରେ ପାଣିର ସଦ୍‌ବ୍ୟବହାର କରି ସ୍ୱଳ୍ପବୃଷ୍ଟି ଅଞ୍ଚଳକୁ ହରିତ କରି ପକାଇଛନ୍ତି । କଳାହାଣ୍ଡି, ବଲାଙ୍ଗୀର ଓ କୋରାପୁଟରେ ସେହିଭଳି କାମ କରିହୁଅନ୍ତା । ସେଠି ଜଙ୍ଗଲ ସମ୍ପତ୍ତି ଅଛି ଓ ଆଦିବାସୀଙ୍କର ପାଣିର ଉପଯୁକ୍ତ ବ୍ୟବହାର ପାରମ୍ପରିକ ଜ୍ଞାନ ଅଛି । ଏବେ ବର୍ଷାପାଣିର ଉପଯୁକ୍ତ ବ୍ୟବହାର କଥାର ସବୁଆଡ଼େ ଚର୍ଚ୍ଚା ହେଉଛି । ଏ ତନ୍ତ୍ରର ବ୍ୟବହାର କରି ଗାଁ ଗହଳରେ ପାଣିର ବ୍ୟବସ୍ଥା ପାଇଁ ଏବେ ଏକ ରାଷ୍ଟ୍ରୀୟ ଆନ୍ଦୋଳନ ଆରମ୍ଭ ହୋଇଛି । ଆମର ଅତ୍ୟଧିକ କେନ୍ଦ୍ରୀକରଣ ମନୋଭାବ ଫଳରେ ବିଷମ ଆଞ୍ଚଳିକ ବିକାଶ ସୃଷ୍ଟି ହୋଇଛି । ଏହାର ପରିମାର୍ଜନ କରିବାକୁ ହେଲେ ଆମକୁ ଲୋକଙ୍କ ପାଖକୁ ଯାଇ, ତାଙ୍କୁ ଯଥେଷ୍ଟ କ୍ଷମତା ଓ ଆର୍ଥିକ ସମ୍ବଳ ଦେଇ ସେମାନଙ୍କୁ ବିକାଶର ପ୍ରଧାନକର୍ତ୍ତା କରିବାକୁ ପଡେ ।

ମୁଁ ଗୋଟିଏ ଲେଖାରେ ପଢ଼ିଲି ଯେ, ଇଂଲଣ୍ଡର ବହୁ-ସଂସ୍କୃତି ବିଷୟକ ଲର୍ଡ ଭିକୁ ପରେଖ ଆୟୋଗ ତାଙ୍କ ରିପୋର୍ଟରେ ବିଭିନ୍ନ ବାଂଶିକ ଗୋଷ୍ଠୀଙ୍କ ଭିତରେ ସମତୁଲ ବିକାଶ ଲାଗି ଏକ ସମାନତା ଆୟୋଗ ଗଠନର ସୁପାରିଶ କରିଛନ୍ତି । ଭାରତରେ ମଧ ଏପରି ଏକ ଆୟୋଗ ଗଠନ କଲେ କ୍ରମବର୍ଦ୍ଧିଷ୍ଣୁ ଆଞ୍ଚଳିକ ବିଷମତାକୁ ଠିକ୍ ଭାବରେ ବୁଝି ତା'ର ନିରାକରଣର ଉପଯୁକ୍ତ ବ୍ୟବସ୍ଥା କରାଯାଇପାରନ୍ତା ।

ଶେଷରେ ମୁଁ କହିବାକୁ ଚାହେଁ ଯେ, ଘରୋଇ କ୍ଷେତ୍ର ବର୍ତ୍ତମାନ ଦେଶର ବିକାଶରେ ମହତ୍ତ୍ୱପୂର୍ଣ୍ଣ ଭାଗ ନେବ ବୋଲି କୁହାଯାଇଛି । ଏ ଦିଗରେ ମୁଁ ପୁଣି ଗାନ୍ଧିଙ୍କ କଥାକୁ ଫେରି ତାଙ୍କ ନ୍ୟାସ-ନୀତିର ଉଲ୍ଲେଖ କରିବାକୁ ଚାହେଁ । ତାଙ୍କର ଏ ନୀତି ଅନୁଯାୟୀ ଧନିକ ତାଙ୍କ

ସମ୍ପତ୍ତିକୁ ସମାଜ ତରଫରୁ ଏହି ନ୍ୟାସୀମାନେ ତାକୁ ସାମାଜିକ ସମ୍ପତ୍ତି ଭାବି ସମାଜ ତରଫରୁ ତାହାର ତତ୍ତ୍ୱାବଧାରକ ଭାବରେ ଦୁଃସ୍ଥ ଓ ଅଭାବଗ୍ରସ୍ତଙ୍କ ପାଇଁ ତାହା ବ୍ୟବହାର କରିବେ । ଅଗଷ୍ଟ ୨୦୦୧ର ଟାଇମସ୍ ଅଫ୍ ଇଣ୍ଡିଆରେ ପ୍ରକାଶ ପାଇଥିଲା ଯେ ନରୱେର ଉପ-ବୈଦେଶିକ ମନ୍ତ୍ରୀ ୟାନ୍ ବୋହଲର ସାକ୍ଷାତକାରରେ କହିଲେ, ଆମ ଦେଶରେ ଆମେ ଏକମତ ଯେ ଧନୀ ନିଶ୍ଚୟ ଗରିବଙ୍କୁ ଦେବେ । ମହାତ୍ମାଗାନ୍ଧୀଙ୍କର ଏହାହିଁ କହିବା କଥା ଥିଲା । ସମ୍ବଳର ପୁନର୍ବଣ୍ଟନ ହେବାକୁ ପଡ଼ିବ । ନରୱେରେ ଏ କାମ ଟିକସ୍ ମାଧ୍ୟମରେ ହୁଏ । କର ବସାଇ ଆମେ ଧନୀଠାରୁ ନେଇ ଗରିବକୁ ପଇସା ଦେଉ । ଆମର ଏକ ନ୍ୟାୟୋଚିତ ସମାଜ । ଆମ ଦେଶର ଧନୀ ଦରିଦ୍ର ଭିତରେ ପାର୍ଥକ୍ୟ ଅତି ଅଳ୍ପ । ଭାରତରେ ଧନୀ ନିଜକୁ ପଚାରନ୍ତୁ, ବିଷମତା ଓ ଦାରିଦ୍ର୍ୟ ଦୂର ଭିତରେ ପାର୍ଥକ୍ୟ ଅତି ଅଳ୍ପ । ବିଷମତା ଓ ଦାରିଦ୍ର୍ୟ ଦୂର କରିବା ପାଇଁ ସେ ଗରିବଙ୍କ ପାଇଁ କେତେ କରିପାରିବେ । ଯଦି ନରୱେର ଲୋକେ ଗାନ୍ଧୀଙ୍କଠାରୁ ଶିଖିପାରିଲେ, ଆମେ ଭାରତୀୟ କିଆଁ ନ ପାରିବା ? ଏହା ଏକ ମର୍ମସ୍ପର୍ଶୀ ପ୍ରଶ୍ନ ।

## ସୁଶାସନ ଓ ବିକେନ୍ଦ୍ରୀକରଣ

ବିଷମତା ଦୂରୀକରଣ ସହିତ ସମ୍ପୃକ୍ତ ଆଉ ଗୋଟିଏ କଥା ହେଲା, ଭଲ ଶାସନ । ସୁଶାସନ ବିନା ବିକାଶ ଅସମ୍ଭବ । ୧୯୩୦ ଦଶକରେ ରାଷ୍ଟ୍ରୀୟ ଯୋଜନା ସମିତି କରିଥିବା ଯୋଜନାର ବ୍ୟାଖ୍ୟା କଥା ମୁଁ ଆଗରୁ କହିଛି । ତହିଁରେ କୁହାଗଲା ଯେ ଭୌତିକ ଓ ଆର୍ଥିକ ବିକାଶ ସାଙ୍ଗକୁ ଭାରତରେ ଯୋଜନାର ଲକ୍ଷ୍ୟ ମୂଲ୍ୟ ଓ ଆଧ୍ୟାତ୍ମିକ ଦୃଷ୍ଟିର ପୁନଃସ୍ଥାପନା ହେବା ଉଚିତ । ଆମ ମୂଲ୍ୟ ଓ ଆଧ୍ୟାତ୍ମିକ ଦୃଷ୍ଟିର ସୁରକ୍ଷା ଆମ ବିକାଶ ସହିତ ଅଙ୍ଗାଙ୍ଗୀ ଜଡିତ । ଖାଲି ରାଷ୍ଟ୍ରୀୟ ଉତ୍ପନ୍ନ, ରପ୍ତାନୀ, ଆମଦାନୀ ଓ ପୁଞ୍ଜିଲଗାଣ ଉପରେ ଲକ୍ଷ୍ୟ ଯଥେଷ୍ଟ ନୁହେଁ । ବାସ୍ତବିକ, ତଥାକଥିତ ଉଦାର ଓ ଜାଗତିକ ବଜାରରେ ସବୁ ଜୋର ମଣିଷଙ୍କ ଅପେକ୍ଷା ଲାଭ ଉପରେ, ମୂଲ୍ୟ ସବୁ ପଛରେ ପଡିଲେ । ଏବେ କେତେକାଳ ହେଲା ମୂଲ୍ୟମାନଙ୍କର ହ୍ରାସ ହୋଇଛି ଓ ଆମେ ସାଧାରଣ ଜୀବନରେ ସଙ୍ଗୀନ ପରିସ୍ଥିତିର ସମ୍ମୁଖୀନ ହୋଇଛେ । ଫଳରେ ଶାସନର ଗୁଣାତ୍ମକମାନ ହ୍ରାସ ଘଟିଛି ଏବଂ ଦୁର୍ନୀତି ଓ ହିଂସାଚାର ଏବେ ଶାସନ ଓ ରାଜକୀୟ ଜୀବନକୁ କଳୁଷିତ କରୁଛି । ଫଳରେ ବିକାଶର ମୂଲ୍ୟହ୍ରାସ ଘଟିଛି । ମୁଁ ଲୋକସଭା ବାଚସ୍ପତି ଥିଲାବେଳେ ସେତେବେଳେ ବିରୋଧୀଦଳର ନେତା ଥିବା ରାଜୀବ ଗାନ୍ଧୀ ମତେ କହିଥିଲେ ଯେ, ବିକାଶରେ ଖର୍ଚ୍ଚ ହେଉଥିବା ଟଙ୍କାକରୁ ମାତ୍ର ୧୫ ପଇସା ଲୋକଙ୍କ ହାତରେ ପଡୁଛି । ଏ କଥା ବାସ୍ତବିକ ଧକ୍କାଦାୟକ ଥିଲା । ମହାତ୍ମା ଗାନ୍ଧୀ ଥରେ କହିଥିଲେ, ଯେଉଁଦିନ କଂଗ୍ରେସରୁ ଦୁର୍ନୀତି ଲୋପ ପାଇଯିବ, ଆମେ ତା ପରଦିନ ସ୍ୱରାଜ୍ୟ ପାଇଯିବା । ଗାନ୍ଧି ଯଦି ଆଜି ଥାଆନ୍ତେ, କଂଗ୍ରେସ ଭିତରେ ଓ ବାହାରେ ସର୍ବବ୍ୟାପି ଦୁର୍ନୀତି ଦେଖି ତାକୁ ଧକ୍କା ବସିଥାନ୍ତା ଓ ସେ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଇଥାନ୍ତେ । କେଜାଣି ଅବା ସେ ଦୁର୍ନୀତି ବିରୋଧରେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ

ଆରମ୍ଭ କରିଥାନ୍ତେ - ଦୁର୍ନୀତିକୁ ଲୋପକରି ପ୍ରକୃତ ସ୍ୱରାଜ୍ୟ ପ୍ରତିଷ୍ଠିତ କରିବା ପାଇଁ, ଯେଉଁ ସ୍ୱରାଜ୍ୟ ଏବେ ବି ଅଗଣିତ ଜନତା ପାଇଁ ବହୁ ଦୂର ।

ରାଜ୍ୟମାନେ ଯେପରି ନିଜର ବିକାଶ ଯୋଜନା ନିଜେ ତିଆରି କରିପାରିବେ, ସେଥିପାଇଁ ଯୋଜନାର ବିକେନ୍ଦ୍ରୀକରଣର ଚେଷ୍ଟା ଥରକୁଥର କରାଯାଇଛି । ଯୋଜନା ପ୍ରଣୟନ କାମ ଯେମିତି ତଳ ପର୍ଯ୍ୟନ୍ତ ପହଞ୍ଚି ଶାସନର ବିଭିନ୍ନ ସ୍ତରରେ ଯୋଜନା ତିଆରି ହୋଇ ଆଞ୍ଚଳିକ ବିଷମତା ଦୂର ହୋଇପାରନ୍ତା, ସେଥିପାଇଁ ଜିଲ୍ଲା ଓ ପଞ୍ଚାୟତସ୍ତର ପର୍ଯ୍ୟନ୍ତ ବିକେନ୍ଦ୍ରୀକରଣ କଥା କୁହାଯାଉଛି । ତେଣୁ ଜିଲ୍ଲା ଯୋଜନା ସବୁ ତିଆରି କରାଗଲା ଓ ତିଆରି ଚାଲିଛି । ମାତ୍ର ତାକୁ କାର୍ଯ୍ୟକାରୀ କରିବା ପାଇଁ ରାଜକୀୟ ଇଚ୍ଛାଶକ୍ତିର ଅଭାବ ଫଳରେ ମୂଳ ଲକ୍ଷ୍ୟ ସାଧ୍ୟ ହୋଇନାହିଁ । ମୋର ମନେ ଅଛି, ୧୯୮୦ ମସିହାରେ ଆଚାର୍ଯ୍ୟ ବିନୋବା ଭାବେ ୱାର୍ଧା ଜିଲ୍ଲାକୁ ଗାନ୍ଧୀ ଜିଲ୍ଲା ବୋଲି ନାଆଁ ଦେଇ ଏକ ଯୋଜନା କରି ତାକୁ ଅନ୍ୟ ଜିଲ୍ଲା ପାଇଁ ଆଦର୍ଶ ଯୋଜନା କରିବାକୁ ଇନ୍ଦିରା ଗାନ୍ଧୀଙ୍କୁ ଅନୁରୋଧ କରିଥିଲେ । ଡଃ ଏମ୍.ଏସ୍. ସ୍ୱାମୀନାଥନ୍‌ଙ୍କ ଅଧକ୍ଷତାରେ ସେଥିପାଇଁ ଏକ ସମିତି ଗଢାଗଲା । ଡଃ ସ୍ୱାମୀନାଥନ୍ ଲେଖିଲେ ଯେ, ମହାତ୍ମା ଗାନ୍ଧୀଙ୍କ ନାଆଁରେ ଗଠିତ ଜିଲ୍ଲା ଯୋଜନାରେ 'କେହି ଦରିଦ୍ର ସୀମାରେଖା ତଳେ ରହିବେ ନାହିଁ । ସମସ୍ତଙ୍କୁ ଜୀବିକାର୍ଜନ ପାଇଁ କାମ ମିଳିବ । ପ୍ରାକୃତିକ ବିବିଧତା ପ୍ରତି ଆଦର ରହିବ । ଧର୍ମ, ଲିଙ୍ଗ, ବର୍ଣ୍ଣ, ଶ୍ରେଣୀ ଓ ରାଜକୀୟ ମତବାଦ ଇତ୍ୟାଦି ଦୃଷ୍ଟିରୁ ଅନେକବାଦିତ୍ୱ ରହିବ ।' ବିକାଶରେ ଆଞ୍ଚଳିକ ବିଷମତା ଦୂର କରିବା ଦୃଷ୍ଟିରୁ ଏହା ଏକ ଚମତ୍କାର କଳ୍ପନା ଥିଲା । ମାତ୍ର ତା ଆଦୌ କାର୍ଯ୍ୟକାରୀ ହେଲାନାହିଁ । କିଛି ମାସତଳେ ସେ ହିନ୍ଦୁ ଖବରକାଗଜରେ ଏ ବିଷୟରେ ଏକ ବିସ୍ତୃତ ଲେଖା ଲେଖିଥିଲେ । ଏହାର ଉଲ୍ଲେଖ କରିବାର ଉଦ୍ଦେଶ୍ୟ, ଦେଶର ପୁନଃନିର୍ମାଣ ଲାଗି ସୁଶାସନ ପ୍ରବର୍ତ୍ତନ ପାଇଁ ରାଜକୀୟ ଇଚ୍ଛାଶକ୍ତିର କିପରି ଅଭାବ ତାହା ଦେଖାଇଦେବା । ସେଇଥିପାଇଁ ମୁଁ କହୁଛି ଯେ, ଦେଶର ସର୍ବବ୍ୟାପୀ ବିକାଶଲାଗି ଉତ୍ତମ ଶାସନ ଏକ ମୌଳିକ ଆବଶ୍ୟକତା ।

ଆମ ସମୟରେ ବିକାଶ ବିଷୟରେ ଜାଗତିକ ମହତ୍ତ୍ୱପ୍ରାପ୍ତ ହୋଇଥିବା ଓ ସଭ୍ୟତାର ସଂରକ୍ଷଣ ଲାଗି ଅପରିହାର୍ଯ୍ୟ ମନେ ହେଉଥିବା ବିଷୟ ହେଲା ବହନଯୋଗ୍ୟ ବା ଧାରଣକ୍ଷମ ବିକାଶ । ପର୍ଯ୍ୟାବରଣ ସହିତ ଖାପ ନ ଖାଇଲେ କୌଣସି ବିକାଶ ତିଷ୍ଠି ରହିପାରିବ ନାହିଁ । ବାସ୍ତବରେ ଯେଉଁ ବିକାଶ ପ୍ରକ୍ରିୟା ପର୍ଯ୍ୟାବରଣକୁ ଯେତେ ସମ୍ଭାଳି ରଖିପାରେ, ତାହା ସେତେ କମ୍ ଆଞ୍ଚଳିକ ବିଷମତା ସୃଷ୍ଟି କରିବ । ନିକଟରେ ଆମ ଭିତରୁ ତିରୋଧାନ ପାଇଥିବା ବିଶିଷ୍ଟ ପର୍ଯ୍ୟାବରଣବିତ୍ ଅନିଲ ଅଗ୍ରୱାଲ ପ୍ରସ୍ତାବ ଦେଇଥିଲେ ଯେ, ଆମେ ମୋଟ ରାଷ୍ଟ୍ରୀୟ ଉତ୍ପନ୍ନ ମାପିବା ପରିବର୍ତ୍ତେ ମୋଟ ପ୍ରାକୃତିକ ଉତ୍ପନ୍ନ ମାପିବା ଉଚିତ ହେବ । ପର୍ଯ୍ୟାବରଣର କ୍ଷତି ହେଲେ ତାହା ଗରିବ, ନିଃସ୍ୱ ଓ ମାଇପିଙ୍କ ଉପରେ ପ୍ରତିକୂଳ ପ୍ରଭାବ ପକାଏ । ମୁଁ ଆଗରୁ ସ୍ତ୍ରୀବର୍ଗ କଥା କହିଛି । ପୃଥିବୀର ସବୁଠାରୁ ଚଳିତକାନ୍ତ ହୋଇଥିବା ବର୍ଗ

ବୋଲି ତାଙ୍କୁ ବୁଝାଯାଏ । ପାଣି, ଜାଳେଣୀ, ଛଣ ବା ଖାଦ୍ୟ ଉତ୍ପାଦନ ହେଉ, ମାଇପେହିଁ ତାହାର ବ୍ୟବସ୍ଥା କରିବା ଓ ଆଣିବାର ମୁଖ୍ୟ । ତେଣୁ ଧାରଣକ୍ଷମ ବିକାଶ ଲାଗି ଗରିବ ଓ ମାଇପିଙ୍କ ସହ କାର୍ଯ୍ୟ ସର୍ବତୋପରି ପ୍ରୟୋଜନ । ସବୁଜ ବିପ୍ଳବ ଫଳରେ ଅଧିକ ଖାଦ୍ୟଶସ୍ୟର ଉତ୍ପାଦନ ହେଲା । ଶ୍ୱେତକ୍ରାନ୍ତି ଫଳରେ ଦୁଗ୍ଧ ଉତ୍ପାଦନରେ ବୃଦ୍ଧି ହେଲା । ଏସବୁରେ ମାଇପିଙ୍କ ଅବଦାନ ପ୍ରଚଣ୍ଡ । ମାତ୍ର ସବୁଜ ବିପ୍ଳବକୁ ଆମକୁ ଚିରସବୁଜ ବିପ୍ଳବରେ ପରିଣତ କରିବାକୁ ହେବ । ଡଃ ସ୍ୱାମୀନାଥନ୍ କହିଛନ୍ତି ଯେ, ସବୁଜ ବିପ୍ଳବକୁ ଚିରସବୁଜ କରିବାକୁ ହେଲେ ବିକାଶର ପ୍ରକ୍ରିୟାକୁ ଗରିବ-ପଟିଆ, ମାଇପି-ପଟିଆ ଓ ପ୍ରକୃତି-ପଟିଆ କରିବାକୁ ପଡିବ । ସେମିତି କହିଲେ, ଆଞ୍ଚଳିକ ବିଷମତା ଦୂର କରିବା ଲାଗି ଯେ କୌଣସି ବିକାଶ ବ୍ୟବସ୍ଥା । ଆମ ନେତୃବୃନ୍ଦ ଓ ଯୋଜନାକାରୀ ଅଭାବଗ୍ରସ୍ତ ଗରିବଙ୍କ କଥାକୁ ଲକ୍ଷ୍ୟ ରଖି ବିକାଶ ଯୋଜନା ଯେପରି ସେମାନଙ୍କୁ କେନ୍ଦ୍ରକରି ତିଆରି ହେବ ତାହାର ବ୍ୟବସ୍ଥା କରନ୍ତୁ ।

ଅସଲ କାର୍ଯ୍ୟକାରୀ କ୍ଷମତାର ବିକେନ୍ଦ୍ରୀକରଣ ଦ୍ୱାରା ଲୋକଙ୍କ ହାତକୁ କ୍ଷମତା ଅର୍ପଣ କଲେ ବିକାଶ ଲୋକଙ୍କ ପାଖରେ ପହଞ୍ଚିବ । ସରକାରିଆ ଆୟୋଗ ମଧ୍ୟ ଏଇ ବାଟ ବତାଇଥିଲେ । ସେକଥା ନ କରି ଆମେ ପ୍ରଚଣ୍ଡ କ୍ଷତି ସହିଛେ । ଜାଗତିକୀକରଣ କାଳରେ ଅଳ୍ପ ଲୋକଙ୍କ ହାତରେ କ୍ଷମତା ଠୁଳ ହେବା ଓ ଲୋକଙ୍କ ହାତକୁ କ୍ଷମତା ନଯିବାଟା ଲୋକ ବିକାଶର ଲାଭାର୍ଥୀ ହେବାର ଯେ ଆମର ରାଷ୍ଟ୍ରୀୟ ଉଦ୍ଦେଶ୍ୟ ଏହା ତା'ର ପରିପନ୍ଥୀ । ଜାଗତିକୀକରଣ ଏବର ଭଳି ଏକ ଆର୍ଜେଣ୍ଟିନା କଥା ଦେଖନ୍ତୁ । ଖାଲି ବଜାର ବ୍ୟବସ୍ଥାର ସଂସ୍କାର, ଘରୋଇକରଣ ଜାଗତିକୀକରଣ ଦ୍ୱାରା ଆମ ସମସ୍ୟାର ସମାଧାନ ହୋଇପାରିବ ନାହିଁ । ଆର୍ଜେଣ୍ଟିନାର ଜନସାଧାରଣ ମଫସଲ ଅଞ୍ଚଳରେ ଅଧିକ ପୁଞ୍ଜି ବିନିଯୋଗ ଓ ଦାରିଦ୍ର୍ୟ ନିରାକରଣ ଯୋଜନା ଦାବି କରିଛନ୍ତି । ଉପଯୁକ୍ତ ବଜାର ବ୍ୟବସ୍ଥା ଲୋକଙ୍କ ଦୈନ୍ୟ ଦୂର କରିପାରିବ ନାହିଁ । ଉଦାରୀକରଣର ଆଦ୍ୟ ପ୍ରବର୍ତ୍ତକ ଡଃ ମନମୋହନ ସିଂହ ବି ଏବେ କହିଲେଣି, ବହୁଳଭାବରେ ଘରୋଇକରଣ ଭାରତୀୟ ପରିସ୍ଥିତିରେ ସମ୍ଭବ ନୁହେଁ । ଆର୍ଜେଣ୍ଟିନାର ସଙ୍କଟରୁ ଆମକୁ ଶିଖିବାକୁ ହେବ । ହେନେରି କିସିଞ୍ଜର ଏବେ କହିଛନ୍ତି, 'ଯେମିତି ଉନବିଂଶ ଶତାବ୍ଦୀର ଲଗାମଛଡ଼ା ମୁକ୍ତ ପୁଞ୍ଜିବାଦ ମାର୍କ୍ସବାଦକୁ ଜନ୍ମଦେଲା, ସେମିତି ଲଗାମଛଡ଼ା ଜାଗତିକୀକରଣ ଫଳରେ ମୁକ୍ତ ଆର୍ଥିକ ବଜାରରେ ସଂକଟନା ବିରୋଧରେ ବି ପୃଥିବୀବ୍ୟାପି ସଂଗ୍ରାମ ଆରମ୍ଭ ହୋଇଯିବ ।' ତେଣୁ ଆମ ନେତାମାନେ ଜାଗତିକୀକରଣ ପାଇଁ ତାଙ୍କ ଅତିଶୟ ଆଗ୍ରହ ଦ୍ୱାରା ଗରିବଙ୍କୁ ଆଖିଆଡ କରିପାରିବେ ନାହିଁ ବା ଅପ୍ରଗତ ଅଞ୍ଚଳର ବିକାଶକୁ କ୍ଷୁର୍ଣ୍ଣ କରିପାରିବେ ନାହିଁ । ରାଷ୍ଟ୍ରପତି ଶ୍ରୀ ନାରାୟଣନ୍ ୨୦୦୦ ମସିହାର ସାଧାରଣତନ୍ତ୍ର ଦିବସ ପୂର୍ବ ସନ୍ଧ୍ୟାରେ ତାଙ୍କ ଐତିହାସିକ ଭାଷଣରେ କହିଥିଲେ, 'ଉଦାରୀକରଣ, ଘରୋଇକରଣ ଓ ଜାଗତିକୀକରଣର ତ୍ରିବାହୀ ଦ୍ରୁତମାର୍ଗକୁ ଭାରତର ଅଧିକାରଶୂନ୍ୟ ଜନତା ନିରାପଦରେ ପାରି ହେବାପାଇଁ ବାଟ କରିଦେବାକୁ ହେବ ଯାହାଦ୍ୱାରା ସେ ମଧ୍ୟ ସମାନ ପ୍ରତିଷ୍ଠା ଓ ସୁଯୋଗ ଆଡକୁ

ଆଗେଇ ପାରିବ ।' ଗଣତନ୍ତ୍ରରେ ଶେଷକୁ ଜନତାହିଁ ମୁଖ୍ୟ । ତାଙ୍କର ଅବହେଳନା କଲେ ସେମାନେ ବି ଅବହେଳନା କଲାବାଲାଙ୍କୁ ପଦେ ଶିଖେଇବାକୁ ଛାଡ଼ିବେ ନାହିଁ । ପୃଥିବୀ ସାରା ଏଇଆ ଦିଶୁଛି । ଗାନ୍ଧୀ କହିଥିଲେ, ସେ କୋଟି କୋଟି ମୂକଜନତାର ବଳରେ ପ୍ରବଳ ବ୍ରିଟିଶ ସାମ୍ରାଜ୍ୟକୁ ଭୂଇଁରେ ଲୋଟାଇବେ । ସେ ତାହାହିଁ କଲେ । ଏବେ କୋଟି କୋଟି ମୂକଜନତା ପଚାରୁଛି : ନେତାମାନେ ଓ ସ୍ୱଚ୍ଛଳ ଲୋକେ, ଆମପାଇଁ କ'ଣ କରୁଛ ? ଚିର ପ୍ରପୀଡିତ ମିଣିପେ ଓ ମାଇପେ ଏବେ ତାଙ୍କ ଧୈର୍ଯ୍ୟ ହରାଇଲେଣି । ତାଙ୍କ ଭଲ ପାଇଁ ଆମେ ପରିସ୍ଥିତି ସୁଧାରିବା ଦରକାର । ମୁଁ ତୃତୀୟ ପଞ୍ଚବାର୍ଷିକ ଯୋଜନାରୁ ଉଦ୍ଧାର କରି ବିକାଶକୁ ଏକ ସମ୍ପୃକ୍ତ ପ୍ରକ୍ରିୟାର ଭାଗ ବୋଲି ବୁଝିବା ଆବଶ୍ୟକ । ରାଷ୍ଟ୍ରର ମୋଟ ବୃଦ୍ଧିହାର ବିଭିନ୍ନ ଅଞ୍ଚଳର ବୃଦ୍ଧିହାରରେ ପ୍ରତିଫଳିତ ହେବ । ଆଉ ଆଞ୍ଚଳିକ ସମଦର ଅଭିବୃଦ୍ଧି ରାଷ୍ଟ୍ରର ସମବିକାଶରେ ସାହାଯ୍ୟ କରିବ । ରାଷ୍ଟ୍ରୀୟ ଓ ଆଞ୍ଚଳିକ ବିକାଶ ଗୋଟିଏ ଲକ୍ଷ୍ୟର ଦୁଇଟି ପାର୍ଶ୍ୱ ମାତ୍ର । ଏହାଦ୍ୱାରା ଆମେ ଯେ ଖାଲି ଏକ ବିଭିନ୍ନତାପୂର୍ଣ୍ଣ ଆର୍ଥିକ ସମାଜ ଗଢ଼ିବା ତା' ନୁହେଁ, ଆମେ ଏକ ସମନ୍ୱିତ ରାଷ୍ଟ୍ର ଗଢ଼ିବା ଯାହାର ମୂଳଦୁଆ ହେବ ଏକ ଦୃଢ଼ ଓ ନ୍ୟାଯ୍ୟ ଆର୍ଥିକ ପତ୍ତନ ।

*(ସୌଜନ୍ୟ : 'ସମାଜ' ୧୬ ଫେବୃୟାରୀ ୨୦୦୨)*

□□□



# ଗୋଟିଏ ଚିଠିରେ ଭାରତବର୍ଷ ୧୦୦ ବର୍ଷ ତଳକୁ ଚାଲିଗଲା : ରବି ରାୟ

(ପ୍ରଜାତନ୍ତ୍ର ସାକ୍ଷାତକାର, ପ୍ରକାଶିତ : ୧୬.୯.୨୦୦୧)

ପ୍ରଶ୍ନ : ବିଜୁ ପଟ୍ଟନାୟକଙ୍କ ପରେ ଯଦି ଅଣ-କଂଗ୍ରେସ ସରକାର ଗଠିତ ହୁଏ, ତାହା ଆପଣଙ୍କ ନେତୃତ୍ୱରେ ହେବ ବୋଲି ଅନେକେ ଆଶା କରିଥିଲେ । ମାତ୍ର ତାହା ସମ୍ଭବ ହେଲାନି କେଉଁଥି ପାଇଁ ?

ଉତ୍ତର : ଯେଉଁମାନେ ମତେ ଅନ୍ତରଙ୍ଗ ଭାବେ ଜାଣନ୍ତି ବୋଧହୁଏ ସେମାନେ ଏ ଆଶା କରି ନଥିବେ, କାହିଁକି ନା ଜୀବନରେ ମୁଁ କେବେ ଓଡ଼ିଶା ବିଧାନସଭା ନିର୍ବାଚନରେ ଲଢ଼ି ନାହିଁ ।

*ସ୍ୱାଧୀନତା ପରବର୍ତ୍ତୀ ସମୟରେ ରାଜନୀତିର ଅନ୍ୟତମ ତୁଙ୍ଗ ପୁରୁଷ ରବି ରାୟ । ସମାଜବାଦୀ ରାଜନୈତିକ ସଂସ୍କୃତି ସହ ଘନିଷ୍ଠ ଭାବେ ସମ୍ପୃକ୍ତ ଶ୍ରୀ ରାୟ ୧୯୬୭ ମସିହାର ଚତୁର୍ଥ ଲୋକସଭା ସ ୧୯୮୯ ମସିହାର ନବମ ଲୋକସଭା ଓ ୧୯୭୪ ମସିହାରେ ରାଜ୍ୟସଭାକୁ ସଂସଦ ରୂପେ ନିର୍ବାଚିତ ହୋଇଥିଲେ । କେନ୍ଦ୍ରରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ଓ ଲୋକସଭାର ବାଚସ୍ପତି ରୂପେ ଦାୟିତ୍ୱ ନିର୍ବାହ କରିଥିଲେ ସେ । ବିଶେଷ କରି ବାଚସ୍ପତି ଭୂମିକାରେ ପ୍ରଦର୍ଶନ କରିଥିଲେ ପରୀକ୍ଷାରହୀନ ସାହସିକତା । ଦଳବଦଳ କ୍ଷେତ୍ରରେ ସଦସ୍ୟପଦ ରଦ୍ଦ ଓ ଲାଞ୍ଚ କାରବାରରେ ସୁପ୍ରିମକୋର୍ଟର ଜନୈକ ବିଚାରପତିଙ୍କୁ ପଦବୀରୁ ହଟାଇବା କ୍ଷେତ୍ରରେ ନିୟାମକ ଭୂମିକା ଗ୍ରହଣ କରିଥିଲେ ସେ । ଡକ୍ଟର ରାମମନୋହର ଲୋହିଆଙ୍କ ଠାରୁ ଆରମ୍ଭ କରି ଜୟପ୍ରକାଶ ନାରାୟଣଙ୍କ ପର୍ଯ୍ୟନ୍ତ ସମ୍ପ୍ରସାରିତ କ୍ରାନ୍ତିଧାରାର ସେ ଜଣେ ଅଗ୍ରଣୀ ପୁରୁଷ । କ୍ଷମତା ନୁହେଁ ସମତା ହିଁ ତାଙ୍କର ଅଙ୍ଗୀକାରବଦ୍ଧ ଜୀବନର ଆଦର୍ଶ । ତାଙ୍କ ସହିତ ସାକ୍ଷାତ କରିଥିଲେ ଗୋବିନ୍ଦ ଚନ୍ଦ୍ର ଚାନ୍ଦ ।*

ଏପରିକି ମନୋନୟନ ପତ୍ର ମଧ୍ୟ ଦାଖଲ କରିନାହିଁ । ବିଧାନସଭା ନିର୍ବାଚନ ନ ଲଢ଼ି ଏକ ସରକାରର ନେତୃତ୍ୱ ନେବା କ'ଣ ସମ୍ଭବ ? ମୁଖ୍ୟମନ୍ତ୍ରୀ ହେବାକୁ ମୋର ଲାଳସା ନଥିଲା, ଥିଲେ ନସର ପସର ହୋଇ ନେତାଙ୍କୁ କହିଥା'ନ୍ତି ମୋତେ ବିଧାନସଭାକୁ ପଠାଅ । ମୁଖ୍ୟମନ୍ତ୍ରୀ ହେଲେ ରାଜ୍ୟର ଯେ ସେବା କରିହେବ ତାହା ମଧ୍ୟ ନୁହେଁ । ପାର୍ଲାମେଣ୍ଟରେ ବିରୋଧୀ ଦଳରେ ଥାଇ ବା ମନ୍ତ୍ରୀ ଥାଇ ଓଡ଼ିଶା ପାଇଁ ଯାହା କରିବା କଥା ଚେଷ୍ଟା କରିଛି । ଦ୍ୱିତୀୟରେ ମୁଁ ବିଜୁ ପଟ୍ଟନାୟକଙ୍କର ସହକର୍ମୀ ଥିଲି, ଉତ୍ତରାଧିକାରୀ ନଥିଲି ?

ପ୍ରଶ୍ନ : ଓଡ଼ିଶା ବିଧାନସଭା ନିର୍ବାଚନରେ ନ ଲଢ଼ିବା ପଛରେ କିଛି କାରଣ ...

ଉତ୍ତର : ମୁଁ ଆଜି ଏକଥା ଖୋଲି କରି କହିବାକୁ ଚାହେଁ ଯେ, ମୁଁ ପ୍ରଥମେ ନିର୍ବାଚନରେ ଭାଗନେଲି ୧୯୬୭ ମସିହାରେ, ତାହା ମଧ୍ୟ ଲୋକସଭା ପାଇଁ । ୧୯୫୨ ମସିହାରେ

ସୋସାଲିଷ୍ଟ ପାର୍ଟିର ନେତୃମଣ୍ଡଳୀ ବିଧାନସଭା ନିର୍ବାଚନରେ ଲଢ଼ିବା ପାଇଁ ମୋତେ ଯେତେବେଳେ କହନ୍ତି, ମୁଁ ସେତେବେଳେ ସ୍ପଷ୍ଟ କରିଦେଉଥିଲି ଯେ ମୁଁ ବିଧାନସଭା ନିର୍ବାଚନ ଲଢ଼ିବି ନାହିଁ । ଏଥିରେ ମୋର ସ୍ପୃହା ନଥିଲା । ଛାତ୍ରାବସ୍ଥାରୁ ଏକ ମୌଳିକ ଚିନ୍ତା ଥିଲା ଯେ ରାଜନୀତି କେବଳ ନିର୍ବାଚନ ଲଢ଼ିବା ପାଇଁ ନୁହେଁ । କିନ୍ତୁ ଆଜି ଯିଏ ନିର୍ବାଚନ ନ ଲଢ଼ିବ, ସେ ରାଜନୀତି କରୁ ନାହିଁ ବୋଲି ଭାବିବାକୁ ପଡ଼ିବ - ଇଏ ଗୋଟିଏ ଅସମନ୍ୱିତ ଚିନ୍ତାଧାରା । ନିର୍ବାଚନ ତ ଲଢ଼ିବେ, ଭାରତବର୍ଷ ସାରା ୫୪୫ ଲୋକସଭା ଓ ରାଜ୍ୟଗୁଡ଼ିକର ବିଧାନସଭା ପାଇଁ, ମୋତେ ଲାଗୁଛି ୧୦/୧୫ ହଜାର ଲୋକ । ତେବେ ଅବଶିଷ୍ଟ କ'ଣ କରିବେ ?

ପ୍ରଶ୍ନ : ହେଲେ ୧୯୬୭ରେ ତ ଲୋକସଭା ପାଇଁ ନିର୍ବାଚନ ଲଢ଼ିଲେ ?

ଉତ୍ତର : ତିନିଜଣ ହେଉଛନ୍ତି ମୋର ଆଦର୍ଶର ଉତ୍ସ - ମହାତ୍ମାଗାନ୍ଧି, ଡକ୍ଟର ରାମମନୋହର ଲୋହିଆ ଓ ଜୟପ୍ରକାଶ ନାରାୟଣ । ଛାତ୍ରାବସ୍ଥାରୁ ଏମାନଙ୍କ ପଦାଙ୍କ ଅନୁସରଣ କରି ଆସିଥିଲି । ସେଥିରେ ନିର୍ବାଚନ ଲଢ଼ିବା ଦୁଇଟା ମୁଖ୍ୟ ଆଦର୍ଶର ଅଙ୍ଗ ସ୍ୱରୂପ ଥିଲା । ବୁଭୁକ୍ଷା ବିରୁଦ୍ଧରେ, ଅନ୍ୟାୟ ବିରୁଦ୍ଧରେ, ଅହିଂସା ମାଧ୍ୟମରେ ଲଢ଼ିବା ପାଇଁ ମାନବ ସମାଜକୁ ଗାନ୍ଧୀ ଶିଖାଇଥିଲେ । ସେ ଲଢ଼ିବାର ହତିଆର ଥିଲା ସତ୍ୟାଗ୍ରହ । ମୁଁ ଯେଉଁ ରାଜନୀତି ୧୯୪୮ ସାଲରେ ଆରମ୍ଭ କରିଥିଲି, ସେ ରାଜନୀତିରେ ତିନୋଟି କାର୍ଯ୍ୟକ୍ରମ ଥିଲା । ପ୍ରଥମଟି ଜେଲ୍‌ଯାତ୍ରା ଓ ଅନ୍ୟାୟ ବିରୁଦ୍ଧରେ ଲଢ଼ିବା, ମୁକ୍ତି ପାଇଁ ଲଢ଼ିବା । ଦ୍ୱିତୀୟଟି ରଚନାତ୍ମକ କାର୍ଯ୍ୟ ପାଇଁ ପ୍ରତୀକ ଥିଲା କୋଦାଳ, ଠିକ୍ ଗାନ୍ଧିଜୀଙ୍କ ଅରଟ ଭଳି । ଲୋହିଆ ଆଳଙ୍କାରିକ ଭାବେ ରଚନାତ୍ମକ କାର୍ଯ୍ୟ ପାଇଁ ଏ କୋଦାଳକୁ ଗ୍ରହଣ କରିଥିଲେ । ତୃତୀୟଟି ଭୋଟ । ପୂର୍ବ ଦୁଇଟି କାର୍ଯ୍ୟ ପରେ ହିଁ ଭୋଟ । ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ସାଧାରଣ ସଂପାଦକ ଥିବାରୁ ଓ ଏହି ରଚନାତ୍ମକ କାର୍ଯ୍ୟରେ ଗୁରୁତ୍ୱ ଦେଉଥିବାରୁ ମୁଁ ୧୯୬୭ ପର୍ଯ୍ୟନ୍ତ ଭୋଟରେ ଲଢ଼ିଥିଲି । ସେତେବେଳେ ଦଳର ସାଧାରଣ ସମ୍ପାଦକ ରୂପେ ମୁଁ ହାଇଦ୍ରାବାଦରେ ଅବସ୍ଥାନ କରୁଥିଲି ।

୧୯୬୨ ଯୁଦ୍ଧରେ ଚୀନ୍ ଭାରତକୁ ହରାଇଦେଲା । ଅରୁଣାଚଳ ପ୍ରଦେଶର ବୋମ୍‌ଡିଲାରେ ଆମ ସେନାକୁ ହରାଇ ଚୀନ ପଳାଇଲା । ଡକ୍ଟର ଲୋହିଆ କଂଗ୍ରେସ ସରକାରକୁ ଜାତୀୟ ଲଜ୍ଜାର ସରକାର ବୋଲି କହିଲେ । ସେତେବେଳେ ଏହା ମୋଟା ଚମଡ଼ାବାଲା ରାଜନୈତିକ ଲୋକଙ୍କୁ ସିନା ବାଧୁନଥିଲା, ମାତ୍ର ଆମକୁ ବାଧୁଥିଲା ଏବଂ ଡକ୍ଟର ଲୋହିଆ ପାର୍ଲାମେଣ୍ଟ ପାଇଁ ମୋତେ ଲଢ଼ିବାକୁ କହିଥିଲେ । ଦ୍ୱିତୀୟ କଥାଟି ଥିଲା ପାର୍ଲାମେଣ୍ଟ ଗଠିତ ହେବାର ୧୭ ବର୍ଷ ପରେ ୧୯୬୩ ମସିହାରେ ଡକ୍ଟର ଲୋହିଆ ପାର୍ଲାମେଣ୍ଟକୁ ଗଲାପରେ ହିଁ ଜବାହାରଲାଲ ନେହେରୁ ସରକାରଙ୍କ ବିରୋଧରେ ପ୍ରଥମଥର ପାଇଁ ଅନାସ୍ଥା ପ୍ରସ୍ତାବ ଆସିଥିଲା । ଆଚାର୍ଯ୍ୟ କୃପାଳିନୀ ଓ ଡକ୍ଟର ଲୋହିଆ ଏହି ଅନାସ୍ଥା ପ୍ରସ୍ତାବ ଆଣିଥିଲେ । ପାର୍ଲାମେଣ୍ଟକୁ ପ୍ରାୟ ୫୦ ଜଣ ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ମେମ୍ବର ନିର୍ବାଚିତ ହୋଇଯିବା ଡକ୍ଟର ଲୋହିଆ ଚାହୁଁଥିଲେ । ୧୯୬୭ ନିର୍ବାଚନରେ

ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ସର୍ବାଧିକ ସ୍ୱୀକୃତି ପାଇ ୨୨ଟି ଆସନରେ ଜିତିଥିଲା ଓ ଏହି ନିର୍ବାଚନରେ ମୁଁ ଜିତିଥିଲି । ଏହିଠାରେ କହିବାକୁ ଚାହେଁ ଯେ, ରାଜନୀତିରୁ ଏବେ ଗଠନାତ୍ମକ କାର୍ଯ୍ୟ ଦୂରେଇ ଯାଉଥିବାରୁ ଦେଶର ଅଧୋଗତି ହିଁ ଘଟୁଛି ।

ପ୍ରଶ୍ନ : ଅନେକେ ବିଚାରନ୍ତି ବିଜୁବାବୁଙ୍କ ପାଇଁ ଆପଣଙ୍କ ରାଜନୈତିକ ଜୀବନ ଅଧିକ ସମୃଦ୍ଧ । କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ, ବାଚସ୍ପତି ଆଦି ହେବା ଏଥିଯୋଗୁ ସମ୍ଭବପର ହେଲା । ତାଙ୍କ ଠାରୁ ଓହରି ଆସିବା ପରେ ଆପଣ କିଛି ହୋଇପାରିଲେ ନାହିଁ । ଏ ନେଇ ଆପଣଙ୍କ ମତ ?

ଉତ୍ତର ଦେଖନ୍ତୁ, ୧୯୪୮ ମସିହାରେ ସୋସାଲିଷ୍ଟ କର୍ମୀଭାବେ ମୋ ରାଜନୈତିକ ଜୀବନର ଆରମ୍ଭ । ୧୯୪୮ - ୪୯ରେ ରେଭେନସା କଲେଜ ଛାତ୍ର ସଂସଦର ସଭାପତି ଭାବେ ମୁଁ ନିର୍ବାଚିତ ହୋଇଥିଲି କଂଗ୍ରେସ ଏବଂ କମ୍ୟୁନିଷ୍ଟଙ୍କୁ ହରାଇ । ୧୯୭୧ ମସିହା ପର୍ଯ୍ୟନ୍ତ ବିଜୁ ପଟ୍ଟନାୟକଙ୍କ ସହ ମୋର ପରିଚୟ ହିଁ ନଥିଲା । ପରିଚୟ ହେବାର ହିଁ ସମ୍ଭାବନା ନଥିଲା । ସେ ତାଙ୍କର କ'ଣ ରାଜନୀତି କରୁଥିଲେ, ମୁଁ ମୋର ରାଜନୀତି କରୁଥିଲି । ସେ କଂଗ୍ରେସରୁ ଆସି ଉତ୍କଳ କଂଗ୍ରେସ ଗଠନ କଲେ । ଉତ୍କଳ କଂଗ୍ରେସ ଚଳିଲା ନାହିଁ । ଇନ୍ଦିରାଗାନ୍ଧୀଙ୍କ ସହ ରାଜନୈତିକ ଶତ୍ରୁତା ସୃଷ୍ଟି ହେଲା । ସେତେବେଳେ ଓଡ଼ିଶାରେ ଅଣ-କଂଗ୍ରେସ ରାଜନୀତି ଆରମ୍ଭ ହେଲା । ଡକ୍ଟର ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ ଆଦିଙ୍କୁ ନେଇ ପ୍ରଗତିଦଳ ଗଢ଼ାଗଲା । ଏହି ପୃଷ୍ଠଭୂମିରେ ତାଙ୍କ ସହ ମୋର ପରିଚୟ ହୋଇଥିଲା । ଏହି ପ୍ରଗତି ଦଳ ଗଠନରେ ତାଙ୍କ ସହ ମୋର ସମ୍ପର୍କ । ତାଙ୍କ ସହ ଏକାଠି ରାଜନୈତିକ ଦଳରେ ଥିଲେ ମଧ୍ୟ ବହୁ କଥାରେ ତାଙ୍କ ସହ ମୋର ମତଭେଦ ଘଟିଛି ମାତ୍ର ମନଭେଦ ଘଟିନାହିଁ । ୧୯୮୯ ମସିହାରେ ଲୋକସଭାର ବାଚସ୍ପତି ହେବା ପରେ ମୁଁ ଦଳୀୟ ରାଜନୀତିରୁ କାୟମନୋବାକ୍ୟରେ ଊର୍ଦ୍ଧ୍ୱରେ ରହିଲି । ତାଙ୍କ ସହ ପ୍ରାୟ ଆଉ ଦେଖାସାକ୍ଷାତ ହୋଇନି । ସେ ଦୃଷ୍ଟିରୁ ଯେଉଁମାନେ ଏପରି ଭାବୁଥିବେ ତାହାର କୌଣସି ଭିତ୍ତି ନାହିଁ ।

ପ୍ରଶ୍ନ :୧୯୭୭ରେ ପ୍ରଥମ ଥର ପାଇଁ ଭାରତରେ ଗଠିତ ଅଣ-କଂଗ୍ରେସ ସରକାର ଦେଶ ପାଇଁ ବଡ ଧରଣର ପରିବର୍ତ୍ତନ ଆଣିବ ବୋଲି କ'ଣ ଆପଣ ଆଶା କରିଥିଲେ ?

ଉତ୍ତର : ୧୯୭୭ ମସିହାରେ କେନ୍ଦ୍ରରେ ଗଠିତ ଜନତା ପାର୍ଟି ସରକାର ଯେ ସମାଜ ପରିବର୍ତ୍ତନର ବାହକ ହେବ ନାହିଁ - ଏ ନେଇ ମୁଁ ସ୍ଥିର ନିଶ୍ଚିତ ଥିଲି ।

ପ୍ରଶ୍ନ : ଜୟପ୍ରକାଶଜୀଙ୍କ ଆଦର୍ଶରେ ତ ଏହା ଗଠିତ ହୋଇଥିଲା ?

ଉତ୍ତର ଜୟ ପ୍ରକାଶ ନାରାୟଣ କେବେ ଜନତା ପାର୍ଟିର ସଭ୍ୟ ନଥିଲେ । ସେ ଯେତେବେଳେ ଜନତା ପାର୍ଟି ଗଢ଼ିଲେ, ସେତେବେଳେ ତାଙ୍କୁ ଜେଲ୍‌ରୁ କେନ୍ଦ୍ର ସରକାରଙ୍କ ଦ୍ୱାରା ପରିଚାଳିତ ଚାନ୍ଦିଗଡ଼ ହସ୍‌ପିଟାଲକୁ ଚିକିତ୍ସା ପାଇଁ ନିଆଯାଇଥିଲା ଓ ସେଠାରେ ତାଙ୍କୁ ହତ୍ୟା କରିବା ଚକ୍ରାନ୍ତ ହୋଇଥିଲା । ସେ ସେଠୁ ରୋଗୀ ହୋଇ ଆସିଲେ । ସେ ଜେଲ୍‌ରୁ ଆସିଲା ପରେ ଜନତା ପାର୍ଟି ଗଢ଼ାଗଲା । ସେ ନିଶ୍ଚିତଭାବେ ପ୍ରେରଣାର ଉତ୍ସ ଥିଲେ । ଜନତା

ପାର୍ଟି ଗଠନରେ ତାଙ୍କ ହାତ ଥିଲା, କିନ୍ତୁ ଜନତା ପାର୍ଟି ତାଙ୍କ ଆଦର୍ଶରେ ବିଶ୍ୱାସ କରି କେବେ କାର୍ଯ୍ୟ କରିନାହିଁ ବୋଲି ଜୟପ୍ରକାଶ ମୃତ୍ୟୁ ପୂର୍ବରୁ ପ୍ରକାଶ କରିଥିଲେ ।

ପ୍ରଶ୍ନ : ଯେଉଁ ସ୍ୱପ୍ନ ଦେଖି ଆପଣ ରାଜନୈତିକ ଜୀବନ ଆରମ୍ଭ କରିଥିଲେ ତାହା କ'ଣ ସାକାର ହୋଇଛି ?

ଉତ୍ତର : ଏ ବୟସରେ ମୋର ଏଇ ଅନୁଭୂତି ଯେ, ଦେଶରେ ରାଜନୀତିଜ୍ଞମାନେ ଏ ସ୍ତରରେ ପହଞ୍ଚିଗଲେଣି ଯେ, କୋଟି କୋଟି ଟଙ୍କା ନ ହେଲେ ରାଜନୀତି ହେବନାହିଁ । ଆଉ କେତେଜଣଙ୍କ ପାଇଁ ମାଫିଆ ଗୁଣ୍ଡା ନଥିଲେ ରାଜନୀତି ସମ୍ଭବ ନୁହେଁ । ଏପରି ହେବ ବୋଲି ମୁଁ ପୂର୍ବରୁ ଆଶଙ୍କା କରିଥିଲି । ଏ ଦୃଷ୍ଟିରୁ ଯେଉଁ ସ୍ୱପ୍ନ ମୁଁ ଯୁବାବସ୍ଥାରେ ଦେଖିଥିଲି ତାହା ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ । କେନ୍ଦ୍ର ସରକାର ଓ ରାଜ୍ୟ ସରକାର ଉଦାରୀକରଣ ନୀତି ଗ୍ରହଣ କରିବା ପରେ ପ୍ରତିବର୍ଷ ଆମେରିକା ଭଳି ବିଦେଶୀ ରାଷ୍ଟ୍ରର ଗୋଡ଼ାଣିଆ ହେବାକୁ ମଧ୍ୟ ପରାଙ୍ମୁଖ ନୁହେଁ । ଯେଉଁ ମୌଳିକ ଆଦର୍ଶ (ଗାନ୍ଧୀ, ଲୋହିଆ, ଜୟପ୍ରକାଶଙ୍କ ଆଦର୍ଶ) ନେଇ ମୁଁ ରାଜନୀତି ଆରମ୍ଭ କରିଥିଲି, ରାଜନୀତିର ଅବକ୍ଷୟ ପରିପ୍ରେକ୍ଷୀରେ ତା'ର ପ୍ରାସଙ୍ଗିକତା ଆହୁରି ହଜାର ଗୁଣ ବଢ଼ିଯାଇଛି ।

ପ୍ରଶ୍ନ : ୧୯୯୭ ମସିହାରେ ଆପଣ ନିର୍ବାଚନ ଲଢ଼ିବେ ନାହିଁ ବୋଲି ନିଷ୍ପତ୍ତି ନେବା କାରଣ ?

ଉତ୍ତର : ରାଜନୀତିର ଗୋଟିଏ ବଡ଼ କଥା ହେଲା - ରାଜନୀତିଜ୍ଞ କେତେବେଳେ କେଉଁ ପରିସ୍ଥିତିରେ ନିଜକୁ ଓହରାଇ ଆଣିବ, ସେ ପ୍ରକାର ବୁଦ୍ଧି ତା'ର ରହିବା ଦରକାର । ନିର୍ବାଚନ ନ ଲଢ଼ିଲେ ଯେ ଜୀବନ ଦୁର୍ବିସହ ହୋଇଯିବ ଏ ଧାରଣା ମୋର କେବେ ବି ନଥିଲା ।

ପ୍ରଶ୍ନ : ଜନତା ଦଳରୁ ଦୂରେଇ ସମତା ପାର୍ଟି ଗଢ଼ିଥିବାରୁ କ'ଣ ଆପଣ ଅନୁତପ୍ତ ?

ଉତ୍ତର : ଭାରତବର୍ଷରେ ସମାଜବାଦ ପ୍ରତିଷ୍ଠା ଲକ୍ଷ୍ୟ ନେଇ ସମତା ଦଳ ଗଢ଼ାଯାଇଥିଲା । ସେ ଦଳ ଗଢ଼ିବା ସଂକ୍ରାନ୍ତରେ ଆମେ ଏକାଠି ହୋଇଥିଲୁ । ଜର୍ଜ ଫର୍ଣ୍ଣାଡ଼ିଜ୍ ସେ ଆଦର୍ଶ ପ୍ରତି ବିଶ୍ୱାସଘାତକତା କଲେ । ସେ ସଭାପତି ଥାଇ ସମତା ପାର୍ଟିର ସମ୍ବିଧାନର ବିରୁଦ୍ଧାଚରଣ କଲେ । ସେ ପାର୍ଟିରେ ରହିଲେ, ମୁଁ ଦୂରେଇ ଆସିଲି । ମନ୍ତ୍ରୀ ହେବା ପରେ ସେ ବହୁରାଷ୍ଟ୍ରୀୟ କମ୍ପାନୀର ଅନୁପ୍ରବେଶକୁ ସମର୍ଥନ କଲେ, ଯେଉଁ ବହୁରାଷ୍ଟ୍ରୀୟ କମ୍ପାନୀ (କାରଗିଲ୍) ପାଇଁ ଆମେ ଦୁହେଁ (ଜର୍ଜ ଓ ମୁଁ) କାଣ୍ଡଲାରେ ଜେଲ୍ ଯାଇଥିଲୁ । ତାଙ୍କ ପାଇଁ ତ ଗଙ୍ଗା ଓଲଟି ବହିଲା । ସମତା ପାର୍ଟି ତା' ନୀତିରୁ ଓହରିଯିବା ପରେ ତାହା ସହ ଯଦି ସମ୍ବନ୍ଧ ରଖିଥା'ନ୍ତା ତେବେ ଅନୁତପ୍ତ ହୋଇଥା'ନ୍ତି । ଏଣୁ ଅନୁତାପ କାହିଁକି ?

ପ୍ର : ଉଦାରୀକରଣ ନୀତି ସମ୍ପର୍କରେ ଆପଣଙ୍କ ମତ, ତାହେଲେ .....

ଉ : ସରକାରଙ୍କର ଜନସାଧାରଣଙ୍କୁ ହନ୍ତସନ୍ତ କରିବା ନୀତି ହିଁ ଉଦାରୀକରଣ ନୀତି । ସକାଳୁ ଉଠିଲେ ପ୍ରଧାନମନ୍ତ୍ରୀ ବାଜପେୟୀଙ୍କ ଗୋଟିଏ କାମ, ତା' ହେଉଛି, ଆମେରିକା

ନେତୃତ୍ୱରେ ଯେତେ ବହୁରାଷ୍ଟ୍ରୀୟ କମ୍ପାନୀ ଭାରତ ଆସୁଛନ୍ତି, ଯେଉଁମାନେ ଭାରତକୁ ଆସି ଭାରତକୁ ତଳିତଳାନ୍ତ କରିବାକୁ ଚାହାଁନ୍ତି, ସେହି ଆମେରିକା ସରକାରର ହୁକୁମନାମାକୁ ସାମିଲ କରିବା । ବର୍ତ୍ତମାନ ଭାରତବର୍ଷରେ ଏହି ଉଦାରୀକରଣ ଦ୍ୱାରା ଆନ୍ଧ୍ର, କର୍ଣ୍ଣାଟକ ଓ ସବୁଠାରୁ ଧନୀ ପଞ୍ଜାବର ଚାଷୀ ଆତ୍ମହତ୍ୟା କଲେ । ଏଇଠି ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା କହିବାକୁ ଚାହେଁ । ଆମେରିକାର ତତ୍କାଳୀନ ରାଷ୍ଟ୍ରପତି  କ୍ଲିଣ୍ଟନ ଭାରତବର୍ଷକୁ ଆସିବା ପୂର୍ବରୁ ଆମେରିକାର ବାଣିଜ୍ୟ ବିଭାଗ ସଚିବ ଭାରତ ସରକାରଙ୍କ ପାଖକୁ ଏକ ଗୁପ୍ତ ଚିଠି ଲେଖି ୭୧୫ଟି ଜିନିଷର ତାଲିକା ପଠାଇଥିଲେ । ଏହି ୭୧୫ଟି ଚାଷଜାତ ଓ ଶିଳ୍ପଜାତ ଦ୍ରବ୍ୟକୁ ଭାରତ ବିଦେଶରୁ ଆମଦାନୀ କରିବ କି ନାହିଁ ତୁରନ୍ତ ଜଣାଇବାକୁ କୁହାଗଲା । ଏହାର ଅର୍ଥ ଥିଲା ଏହାକୁ ବିଦେଶରୁ ଆମଦାନୀ କଲେ ହିଁ କ୍ଲିଣ୍ଟନ ଭାରତରେ ପାଦ ଦେବେ । ଏଇ ଗୋଟିଏ ଚିଠିରେ ଥିବା ନିର୍ଦ୍ଦେଶ ପାଳନ କରିବା ଦ୍ୱାରା ଲକ୍ଷ ଲକ୍ଷ କୁଟୀର ଉଦ୍ୟୋଗ ଗଲା । ଏବେ ତ ଚୀନରୁ ଚାଉଳ, ଆମେରିକାରୁ ସେଓ ଓ ମାଲେସିଆରୁ ନଡ଼ିଆ ଆସିଲା । ଗୋଟିଏ ଚିଠିରେ ଭାରତବର୍ଷ ୧୦୦ ବର୍ଷ ତଳକୁ ଚାଲିଗଲା । ୧୯୯୨ ମସିହାରେ ଶହୀଦ ଭବନରେ ସଭା କରି ଏନେଇ ସତର୍କ କରି କହିଥିଲି, ଆମ ବିହନ ଆମର ହୋଇ ରହିବ ନାହିଁ । କଂଗ୍ରେସ ଏହାକୁ ଆରମ୍ଭ କଲା, ବାଜପେୟୀ ସରକାର ଏଥିରେ ପୂରାଦମ୍‌ରେ ଲାଗିଛନ୍ତି । ଦେଶ ଆର୍ଥିକ ଦୃଷ୍ଟିରୁ ଗୋଲାମ ହୋଇଗଲାଣି ।

ପ୍ରଶ୍ନ :  ଓଡ଼ିଶା ପାଇଁ ଆପଣ ଜଣେ ଅତିଥି ହୋଇଗଲେଣି । ଜାତୀୟ ସ୍ତରରେ ରହି କ'ଣ ଆପଣ ଓଡ଼ିଶା ଜନସାଧାରଣଙ୍କ ସହ ଯୋଡ଼ି ହୋଇ ରହିପାରିବେ ?

ଉତ୍ତର : ଓଡ଼ିଶା, କୌଣସି ରାଜନୈତିକ ଦଳର ନେତାଙ୍କ ମାନସିକ ମାନଚିତ୍ରରେ ଓଡ଼ିଶା ନାହିଁ । ତାହା ହୋଇଥିଲେ ମାଲକାନଗିରିରେ ଯେଉଁ ୩ ଜଣ ଆଦିବାସୀ ଗୁଳିକାଣ୍ଡର ଶିକାର ହେଲେ, ତାହାର ସେମାନେ ବିରୋଧ କରିପାରିଥା'ନ୍ତେ, ସେମାନେ ସେଠାକୁ ଯାଇ ନାହାନ୍ତି, ମୁଁ ଯାଇଛି । ତେଣୁ ମୁଁ ନମ୍ରତାର ସହ କହିବି ଯେ ଯେଉଁମାନେ କ୍ଷମତାରେ ଅଛନ୍ତି, ସେମାନେ ଜନସାଧାରଣଙ୍କ ସହ ଅଛନ୍ତି ବୋଲି ଯେଉଁମାନେ ବିଚାର କରୁଛନ୍ତି, ସେମାନେ ସତ୍ୟ ପ୍ରତି ଆଖିମିଟିକା ମାରୁଛନ୍ତି । ରାଜନୀତି କେବେ ରାଜ୍ୟର ନୁହେଁ, ତାହା ଜାତୀୟ । ମୁଁ ଜାତୀୟ ରାଜନୀତିରେ ରହିଛି ବିନା ଦଳରେ । ସାଧାରଣ ଜନତା ଏବେ ତ କୌଣସି ରାଜନୈତିକ ଦଳର ମାନସିକତାରେ ନାହାଁନ୍ତି । ସାଧାରଣ ଜନତାକୁ ସାଥୀରେ ନେଇ ଚାଲିବା ପାଇଁ ମୁଁ ଚେଷ୍ଟା ଚଳାଇଛି ।

ପ୍ରଶ୍ନ :  ତୃତୀୟ ମୋର୍ଚ୍ଚା ସମ୍ପର୍କରେ ଆପଣ କେତେ ଦୂର  ଆଶାବାଦୀ ?

ଉତ୍ତର : ବିଜେପି ଓ କଂଗ୍ରେସକୁ ବାଦଦେଇ ତୃତୀୟ ଶକ୍ତି ପାଇଁ ବିରାଟ ସ୍ଥାନ ରହିଛି । ସେ ସ୍ଥାନ ଖାଲି । ସେଥିପାଇଁ ଯେଉଁ ଚେଷ୍ଟା ଚାଲିଛି, ଉତ୍ତର ପ୍ରଦେଶର ଆଗାମୀ ବିଧାନସଭା ନିର୍ବାଚନ ପରେ ଏହାର ରୂପରେଖ ପରିଷ୍କାର ହେବ । ବର୍ତ୍ତମାନ କହିହେବନି । ତୃତୀୟ ଶକ୍ତି ପାଇଁ ଥିବା ବିରାଟ ଶୂନ୍ୟସ୍ଥାନ କିଏ ପୂରଣ କରିବାକୁ ସମର୍ଥ ହେବ, ତାହାହିଁ ଏବେ ଏକ

ଚାଲେଞ୍ଜ । ଏ ନେଇ ମୁଁ ନା ଆଶାବାଦୀ ନା ନିରାଶାବାଦୀ । ମୁଁ ଏଥିରେ କୌଣସି ଭୂମିକା ନେଇ ନାହିଁ । ତେବେ ବିଚାର କ୍ଷେତ୍ରରେ ଅର୍ଥାତ୍ ଯେଉଁ ଉଦାରୀକରଣର ଲେଲିହାନ ଜ୍ୱାଳା ଦେଖାଦେଇଛି, ସେହି ପରିପ୍ରେକ୍ଷୀରେ କଂଗ୍ରେସ ଓ ଭାରତୀୟ ଜନତା ପାର୍ଟିକୁ ବିରୋଧ କରି ଯେଉଁ ଶକ୍ତି ଛିଡ଼ା କରିବା ଦରକାର, ତାହା ପାଇଁ ତ୍ୟାଗ ସ୍ୱୀକାର କରିବା ନିମନ୍ତେ ସେମାନେ ପ୍ରସ୍ତୁତ କି ?

ପ୍ରଶ୍ନ : କେମିତି ଚାଲିଛି ଆଜିର ଓଡ଼ିଶା ସରକାର ?

ଉତ୍ତର : କେନ୍ଦ୍ର ସରକାରର ତ ଇଏ ଏକ ଅଙ୍ଗ । ମୋ' ଜାଣିବାରେ ସ୍ୱାଧୀନତା ଲାଭର ୫୪ ବର୍ଷ ମଧ୍ୟରେ ଭାରତ ବର୍ଷର କୌଣସି ପ୍ରଦେଶରେ ଏମିତି ମୁଖ୍ୟମନ୍ତ୍ରୀ ହୋଇ ନାହାଁନ୍ତି ଯିଏ କି ସେ ରାଜ୍ୟର ମାତୃଭାଷା ଜାଣିନଥିବେ । ଓଡ଼ିଶାର ଭାଷା ଜାଣି ନଥିବା ଓଡ଼ିଶାର ମୁଖ୍ୟମନ୍ତ୍ରୀ - ସେ କ'ଣ କରୁଛନ୍ତି, ଭବିଷ୍ୟତରେ କ'ଣ କରିବେ, ତାହା ଅଗ୍ରେ ଧାବତି ଧାବତି ।

ପ୍ରଶ୍ନ : ଏବର ଲୋକଶକ୍ତି ଅଭିଯାନ ସମ୍ପର୍କରେ ...

ଉତ୍ତର : ଭାରତବର୍ଷର ତିନୋଟି ବଡ ଶତ୍ରୁକୁ ମୁଁ ଚିହ୍ନଟ କରିଛି । ତାହା ହେଲା ଉଚ୍ଚସ୍ତରୀୟ ଭ୍ରଷ୍ଟାଚାର, ଅତ୍ୟଧିକ କେନ୍ଦ୍ରୀୟକରଣ ଓ ଭୋଗବାଦ । ୧୯୯୭ ମସିହାରେ ଦିଲ୍ଲୀ ବିଶ୍ୱ ବିଦ୍ୟାଳୟ ଓ ଜବାହାରଲାଲ ନେହେରୁ ବିଶ୍ୱ ବିଦ୍ୟାଳୟର ଯୁବ ଅଧ୍ୟାପକ ଓ ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନରେ ଭାଗ ନେଇଥିବା ଚିନ୍ତାଶୀଳ ଯୁବକ ଏହା ବିରୁଦ୍ଧରେ ଲଢ଼ିବାକୁ ଲକ୍ଷ୍ୟ ରଖିଲେ । ତାଙ୍କ ସାମ୍ନାରେ ମୁଁ ନିଜର ବକ୍ତବ୍ୟ ରଖିଲି 'ଆମେ ବାଟ ହୁଡ଼ିଗଲୁ କେଉଁଠି ? ଏକ ବିକଳ୍ପର ଅନ୍ୱେଷଣରେ' ମୁଁ, ସୁପ୍ରିମ୍‌କୋର୍ଟର ପୂର୍ବତନ ବିଚାରପତି ତଥା ତତ୍କାଳୀନ ପ୍ରେସ୍ କାଉନ୍‌ସିଲ୍ ଅଫ୍ ଇଣ୍ଡିଆର ଅଧ୍ୟକ୍ଷ ପି.ବି. ସାୱନ୍ତ ଓ ବରିଷ୍ଠ ସାମ୍ବାଦିକ ପ୍ରଭାସ ଯୋଶୀ ନିଜର ବିଚାର ଦେଇଥିଲୁ । ସେହି ଯୁବକମାନଙ୍କର ଉଦ୍ୟମର ଫଳ ଲୋକଶକ୍ତି ଅଭିଯାନ । ବରିଷ୍ଠ ସାମ୍ବାଦିକ କୁଲଦୀପ୍ ନାୟାରଙ୍କ ସହ ମୁଁ, ଶ୍ରୀ ସାୱନ୍ତ ଓ ଶ୍ରୀ ଯୋଶୀ ଏହାର ପୃଷ୍ଠପୋଷକ । ଯୁବକମାନେ ହିଁ ଏହାର କର୍ମକର୍ତ୍ତା । ଲୋକଶକ୍ତି ଅଭିଯାନ ଏବେ ତା'ର ଦାୟିତ୍ୱ ନିର୍ବାହ କରିଚାଲିଛି । ଏଇ ତ କାଶୀପୁର ଅନାହାର ମୃତ୍ୟୁ ଘଟଣାର ଉଦ୍‌ଘାଟନ ଲୋକଶକ୍ତି ଅଭିଯାନର ଓଡ଼ିଶା ଶାଖା ସଭାପତି ପ୍ରଫୁଲ୍ଲ ସାମନ୍ତରା କଲେ । ଏହା ରାଜନୈତିକ ଦଳ ନୁହେଁ । ଲୋକଙ୍କ ପାଖରେ ପହଞ୍ଚିବା ଏହାର ଲକ୍ଷ୍ୟ । ବିନା ଟଙ୍କା, ବିନା ଗୁଣ୍ଡା ଓ ବିନା ହିଂସାରେ ଜନ ଶକ୍ତିକୁ ସଙ୍ଗଠିତ କରିବା ଏହାର ଲକ୍ଷ୍ୟ ।

★ ସାକ୍ଷାତକାର ଉପସ୍ଥାପନ କରିଥିଲେ : ଗୋବିନ୍ଦ ଚନ୍ଦ୍ର ଦାସ

***

# ଲୋକସଭାରେ ଓଡ଼ିଶାର 'ଉଦିତ ରବି'

(ସମାଜ ସାକ୍ଷାତକାର, ପ୍ରକାଶିତ ୭.୧୦.୨୦୦୧)

ନବମ ଲୋକସଭା ନିର୍ବାଚନ ଭାରତର ସଂସଦୀୟ ଗଣତନ୍ତ୍ରରେ ଏକ ନୂତନ ଅଧ୍ୟାୟର ସୂତ୍ରପାତ କଲା । କୌଣସି ଗୋଟିଏ ବି ରାଜନୈତିକ ଦଳ ସଂଖ୍ୟାଗରିଷ୍ଠ ମତ ହାସଲ କରିପାରିଲା ନାହିଁ ଏବଂ ଏହାର ପରିଣତି ସ୍ୱରୂପ ଦେଶର ସଂସଦୀୟ ଇତିହାସରେ ପ୍ରଥମଥର ପାଇଁ ଏକ ତ୍ରିଶଂକୁ ବା ଝୁଲା ସଂସଦ ସୃଷ୍ଟି ହେଲା । ଏହି ଅଭୂତପୂର୍ବ ରାଜନୈତିକ ଅନିଶ୍ଚିତତା ମଧ୍ୟରେ ଲୋକସଭାର ସଦସ୍ୟମାନେ ଦଳମତର ଊର୍ଦ୍ଧ୍ୱରେ ସର୍ବସମ୍ମତିକ୍ରମେ ଶ୍ରୀ ରବିରାୟଙ୍କୁ ଲୋକସଭାର ବାଚସ୍ପତିଭାବେ ନିର୍ବାଚିତ କଲେ । ସରଳ, ନିଷ୍କପଟ, ଦକ୍ଷ ଓ ବିଚକ୍ଷଣ ପ୍ରତିଭାସମ୍ପନ୍ନ ଶ୍ରୀ ରାୟ ଅତ୍ୟନ୍ତ ନିରପେକ୍ଷ ଏବଂ ବିବେକାନୁମୋଦିତ ନିଷ୍ପତ୍ତି ଗ୍ରହଣକରି ଅଧ୍ୟକ୍ଷପଦର ଗାରିମା ବୃଦ୍ଧି କଲେ ।

୧୯୨୬ ମସିହା ନଭେମ୍ବର ୨୬ ତାରିଖରେ ପୁରୀଜିଲ୍ଲାର ଭାନଗଡ଼ ଗ୍ରାମରେ ରବି ରାୟଙ୍କର ଜନ୍ମ ହୋଇଥିଲା । ରେଭେନ୍ସା ମହାବିଦ୍ୟାଳୟରୁ ଇତିହାସରେ ସ୍ନାତକଶିକ୍ଷା ଲାଭ କରିବାପରେ ମଧୁସୂଦନ ଆଇନ କଲେଜରୁ ସେ ଆଇନରେ ଶିକ୍ଷାଲାଭ କରିଥିଲେ । ୧୯୪୮ - ୪୯ ମସିହାରେ ରେଭେନ୍ସା କଲେଜ ଛାତ୍ରସଂସଦର ସଭାପତି ଓ ତହିଁ ପରବର୍ଷ ମଧୁସୂଦନ ଆଇନକଲେଜ ଛାତ୍ର ସଂସଦର ପ୍ରଥମ ସଭାପତିଭାବେ ସେ ନିର୍ବାଚିତ ହେବା ତାଙ୍କ ରାଜନୈତିକ ଜୀବନର ପ୍ରଥମ ପାହାଚ ସଦୃଶ ଥିଲା ।

କଲେଜ ଶିକ୍ଷା ସମାପ୍ତିପରେ ୧୯୪୭ ମସିହା ପ୍ରାରମ୍ଭରେ ଶ୍ରୀ ରବିରାୟ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରିଥିଲେ । ରେଭେନ୍ସା କଲେଜ କୋଠା ଉପରେ ଜାତୀୟ ପତାକା ଉଡ଼ାଇବା ପାଇଁ ଉଦ୍ୟମ କଲାବେଳେ ବ୍ରିଟିଶ ସରକାର ତାଙ୍କୁ ଗିରଫ କରିଥିଲା ।

ଛାତ୍ରାବସ୍ଥାରୁ ସମାଜବାଦ ଆନ୍ଦୋଳନରେ ପ୍ରବଳ ବିଶ୍ୱାସୀ ରବି ରାୟ ୧୯୪୮ ମସିହାରେ ସମାଜବାଦୀ ଦଳର ସଦସ୍ୟତା ଗ୍ରହଣ କରିଥିଲେ । ସ୍ୱାଭାବିକ ନେତୃତ୍ୱଗୁଣ ଏବଂ ସମାଜବାଦପ୍ରତି ତାଙ୍କର ଗଭୀର ଅଙ୍ଗୀକାରଯୋଗୁଁ ସେ ସଦାସର୍ବଦା ସମାଜବାଦୀ ଆନ୍ଦୋଳନର ଆଗଧାଡ଼ିରେ ରହିଆସିଛନ୍ତି । ୧୯୫୬ ମସିହାରେ ଡଃ ରାମମନୋହର ଲୋହିଆଙ୍କ ନେତୃତ୍ୱରେ ଶ୍ରୀ ରାୟ ଓଡ଼ିଶାରେ ସମାଜବାଦୀ ଦଳର ପ୍ରତିଷ୍ଠା କରିଥିଲେ । ସେହି ସମୟରେ ଦଳର ରାଷ୍ଟ୍ରୀୟ କାର୍ଯ୍ୟକାରିଣୀ ସଦସ୍ୟଭାବେ ତାଙ୍କୁ ଗ୍ରହଣ କରାଯାଇଥିଲା ଏବଂ ପରବର୍ତ୍ତୀ ସମୟରେ ସେ ଦଳର ମହାସଚିବ ଦାୟିତ୍ୱ ମଧ୍ୟ ତୁଲାଇଥିଲେ ।

୧୯୬୭ ମସିହାରେ ଶ୍ରୀ ରାୟ ପୁରୀ ଲୋକସଭା ଆସନରୁ ଚତୁର୍ଥ ଲୋକସଭାକୁ ନିର୍ବାଚିତ ହେଲେ । ଏହି ସମୟରେ ସେ ଲୋକସଭାରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ସଂସଦୀୟ ଦଳର ନେତା ହେବାର ସୌଭାଗ୍ୟ ଲାଭ କରିଥିଲେ । ନିଜର ସ୍ପଷ୍ଟବାଦିତା,

ନିଷ୍କପଟ ବିଚାର ଏବଂ ଗଠନମୂଳକ ଚିନ୍ତାଧାରା ପାଇଁ ସମସ୍ତଙ୍କ ନିକଟରେ ପ୍ରଶଂସିତ ଶ୍ରୀ ରାୟଙ୍କର ବାଗ୍ମିତା ସଂସଦ ଗୃହରେ ଦେଖିବାକୁ ମିଳିଲା । ଗୃହରେ ସଂକୀର୍ଣ୍ଣ ବାଦବିବାଦରୁ ଦୂରରେ ରହି ରାଷ୍ଟ୍ରୀୟ ସ୍ୱାର୍ଥ ପ୍ରସଙ୍ଗରେ ସେ ଅଂଶ ଗ୍ରହଣ କରୁଥିଲେ । ୧୯୭୪ ମସିହାରେ ସେ ଓଡ଼ିଶାରୁ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ ।

୧୯୭୭ ମସିହାରେ ଷଷ୍ଠ ଲୋକସଭା ପାଇଁ ଅନୁଷ୍ଠିତ ସାଧାରଣ ନିର୍ବାଚନ କେନ୍ଦ୍ରରେ ଏକ ନୂତନ ରାଜନୈତିକ ସମୀକରଣ ସୃଷ୍ଟି କଲା । ସ୍ୱାଧୀନତା ପରଠାରୁ କ୍ରମାଗତଭାବେ କଂଗ୍ରେସଦଳ କ୍ଷମତାରେ ରହୁଥିବା ବେଳେ ପ୍ରଥମଥର ପାଇଁ ଏକ ଅଣ-କଂଗ୍ରେସଦଳ କ୍ଷମତାସୀନ ହେଲା । ଏହି ସରକାରର ନେତୃତ୍ୱ ନେଇଥିବା ପ୍ରଧାନମନ୍ତ୍ରୀ ମୋରାର୍ଜୀ ଦେଶାଇ ଶ୍ରୀ ରାୟଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳରେ ସ୍ୱାସ୍ଥ୍ୟ ଓ ପରିବାରକଲ୍ୟାଣ ବିଭାଗର ମନ୍ତ୍ରୀଭାବେ ସାମିଲ କଲେ ।

ନବମ ଲୋକସଭା ପାଇଁ ୧୯୮୯ ମସିହାରେ ଅନୁଷ୍ଠିତ ସାଧାରଣ ନିର୍ବାଚନରେ ଶ୍ରୀ ରାୟ କେନ୍ଦ୍ରାପଡ଼ା ଆସନରୁ ଜନତାଦଳ ଟିକେଟରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ଡିସେମ୍ବର ୧୯ ତାରିଖ ତାଙ୍କ ଜୀବନର ଏକ ସ୍ମରଣୀୟ ଘଟଣା । ଏହିଦିନ ନବମ ଲୋକସଭାର ଅଧ୍ୟକ୍ଷଭାବେ ତାଙ୍କୁ ନିର୍ବାଚିତ କରାଗଲା । ଏହି ପଦର ଦାୟିତ୍ୱ ଏବଂ ନିରପେକ୍ଷତା ସମ୍ପର୍କରେ ପୂର୍ଣ୍ଣଭାବରେ ସଚେତନ ରହି ଶ୍ରୀ ରାୟ ସେହିଦିନ ଘୋଷଣା କରିଥିଲେ ଯେ, ଯେପର୍ଯ୍ୟନ୍ତ ସେ ଅଧ୍ୟକ୍ଷପଦରେ ରହିବେ ଦଳଗତ ରାଜନୀତିର ଊର୍ଦ୍ଧ୍ୱରେ ରହି କାର୍ଯ୍ୟକରିବେ ଏବଂ ସମସ୍ତଙ୍କ ପ୍ରତି ନିରପେକ୍ଷ ବିଚାର ଅବଲମ୍ବନ କରିବେ ।

ଶ୍ରୀ ରାୟ ବାଚସ୍ପତି ପଦରେ ମାତ୍ର ସାଢ଼େ ୧୫ ମାସ ରହିଥିଲେହେଁ ପ୍ରତ୍ୟେକ ଅଧିବେଶନରେ ବହୁ ଝଡ଼ଝଞ୍ଜାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ନିଜର କୁଶଳତା ଏବଂ ଦୃଢ଼ତାଦ୍ୱାରା ଶ୍ରୀ ରାୟ ସେସବୁକୁ ସଫଳତାର ସହ ସମାଧାନ କରିପାରୁଥିଲେ ।

ସଂସଦୀୟ ନିୟମକାନୁନ ମଧ୍ୟରେ କେତେକ କ୍ଲିଷ୍ଟ ପ୍ରସଙ୍ଗରେ ସେ ନିର୍ଣ୍ଣାୟକ ନିଷ୍ପତ୍ତି ନେବା ସହିତ ଅନେକ ଅଭିନବ ଏବଂ ନୂତନ ପଦ୍ଧତି ନିର୍ଦ୍ଧାରଣ କରି ସଂସଦୀୟ ଗଣତନ୍ତ୍ରପ୍ରତି ଲୋକଙ୍କ ଆଶା ଆକାଂକ୍ଷା ଜାଗରୁକ କରିବାରେ ସଫଳ ହୋଇପାରିଥିଲେ ।

ଶ୍ରୀ ରାୟଙ୍କ ବାଚସ୍ପତି କାର୍ଯ୍ୟକାଳ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏବଂ ସୁଦୂରପ୍ରସାରୀ ନିଷ୍ପତ୍ତି ହେଉଛି ଜନତାଦଳର ବିଭାଜନପରେ କେବଳ ସଦସ୍ୟଙ୍କ ଅଯୋଗ୍ୟତା ଘୋଷଣା ପ୍ରସଙ୍ଗ । ୧୯୯୦ ମସିହା ନଭେମ୍ବର ୬ ତାରିଖରେ ଜନତାଦଳରେ ବିଭାଜନ ଘଟିବା ପରେ ୫୮ ଜଣ ସଦସ୍ୟ ନିଜକୁ ଏକ ବିଭାଜିତ ଗୋଷ୍ଠୀ ବୋଲି ଦାବି କରିବା ସହିତ ଜନତା ଦଳ 'ଏସ୍' ନାମରେ ନିଜକୁ ନାମିତ କଲେ । ଏହି ସମୟରେ ମୂଳ ଦଳରୁ ବିଭାଜନ ଓ ସେମାନଙ୍କ ବହିଷ୍କାର ନେଇ ପରସ୍ପର ବିରୋଧୀ ଦାବି ବାଚସ୍ପତିଙ୍କ ଟେବୁଲକୁ ଆସିଲା । ଏହି ଜଟିଳ ପରିସ୍ଥିତିରେ ବାଚସ୍ପତି ଶ୍ରୀ ରବି ରାୟ ବିଚଳିତ ନ ହୋଇ ଅତ୍ୟନ୍ତ ବିଚକ୍ଷଣତାର ସହ ନିଷ୍ପତ୍ତି ଗ୍ରହଣ କରିଥିଲେ । ଆଇନ ବ୍ୟବସ୍ଥା ମଧ୍ୟରେ ସବୁଦିଗକୁ

ବିଚାରକରି ସେ ଯେଉଁ ନିଷ୍ପତ୍ତିଗ୍ରହଣ କଲେ ତାହା ସଂସଦୀୟ ଗଣତନ୍ତ୍ରରେ ଏକ ନଜିର ସୃଷ୍ଟିକଲା ।

ଶ୍ରୀ ରାୟଙ୍କ ବାଚସ୍ପତି କାର୍ଯ୍ୟକାଳ ମଧ୍ୟରେ ତାଙ୍କଦ୍ୱାରା ଗ୍ରହଣ କରାଯାଇଥିବା ଆଉ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ହେଉଛି, ସୁପ୍ରିମକୋର୍ଟର ଜଣେ ବିଚାରପତିଙ୍କୁ ବହିଷ୍କାର କରିବା ପାଇଁ ରାଷ୍ଟ୍ରପତିଙ୍କ ନିକଟକୁ ଏକ ପ୍ରସ୍ତାବକୁ ଅନୁମତି ପ୍ରଦାନ କରିବା । ଏହି ପ୍ରସ୍ତାବକୁ ଶ୍ରୀ ରାୟ ଅନୁମୋଦନ କରିବା ସହିତ ସଂପୃକ୍ତ ବିଚାରପତିଙ୍କୁ ବହିଷ୍କାର କରିବା ପାଇଁ ଆସିଥିବା ଅଭିଯୋଗଗୁଡ଼ିକ ଉପରେ ତଦନ୍ତ କରିବା ପାଇଁ ଏକ କମିଟି ଗଠନ କରିଥିଲେ । ଏହି ପ୍ରସ୍ତାବର ନିୟମାନୁଯାୟୀ ଅବଧି ରହିଥିବାରୁ ପରବର୍ତ୍ତୀ ଲୋକସଭା ଶେଷରେ ଏହା ଉପରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଶ୍ରୀ ରାୟ ତାଙ୍କର ଅଧ୍ୟକ୍ଷ କାର୍ଯ୍ୟକାଳ ମଧ୍ୟରେ ଗୃହ ପ୍ରକ୍ରିୟା ଏବଂ କାର୍ଯ୍ୟ ସଂଚାଳନ ସମ୍ବନ୍ଧୀୟ ନିୟମରେ କେତେକ ପରିବର୍ତ୍ତନ କରିଥିଲେ । ଲୋକହିତକର ପ୍ରସଙ୍ଗଗୁଡ଼ିକୁ ସଂସଦଗୃହରେ ଉତ୍‌ଥାପନ ପାଇଁ ଯେପରି ଅଧିକ ସୁଯୋଗ ମିଳିପାରିବ, ତାହାକୁ ଦୃଷ୍ଟିରେ ରଖି ସେ ଏହି ପଦକ୍ଷେପ ଗ୍ରହଣ କରିଥିଲେ । ଯଦିଓ ଲୋକସଭାର ପ୍ରକ୍ରିୟା ଏବଂ କାର୍ଯ୍ୟ ସଂଚାଳନ ନିୟମ ମଧ୍ୟରେ ଶୂନ୍ୟକାଳକୁ ମାନ୍ୟତା ଦିଆଯାଏ ନାହିଁ, ତଥାପି ଲୋକହିତକର ଓ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗଗୁଡ଼ିକୁ ଶୂନ୍ୟକାଳରେ ଉତ୍‌ଥାପନ କରିବା ପାଇଁ ଅନୁମତି ପ୍ରଦାନ କରିଥିଲେ ।

ଶୂନ୍ୟକାଳରେ ଗୃହ କାର୍ଯ୍ୟର ପରିଚାଳନାକୁ ନିୟମିତ କରିବା ପାଇଁ ଶ୍ରୀ ରାୟ କେତେକ ଆନୁଷ୍ଠାନିକ ବ୍ୟବସ୍ଥା ଗ୍ରହଣ କରିଥିଲେ, ଯଦ୍ୱାରା ଗୃହର ସମୟର ଯଥାର୍ଥ ଉପଯୋଗ କରାଯାଇପାରିବ । ସାଧାରଣ ଲୋକ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକ ଉପରେ ଆଲୋଚନା କରିବା ପାଇଁ ସଦସ୍ୟମାନଙ୍କୁ ଶ୍ରୀ ରାୟ ଅଧିକ ସୁଯୋଗଦେବା ଏକ ଉଲ୍ଲେଖନୀୟ ଘଟଣାଥିଲା ।

ଶ୍ରୀ ରବିରାୟଙ୍କ ସମୟରେ ଆଉ ଏକ ଇତିହାସ ସୃଷ୍ଟି ହେଲା, ଯେଉଁଦିନ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ଦ୍ୱାରା ଆଗତ ଆସ୍ଥାପ୍ରସ୍ତାବ ଗୋଟିଏ ଦିନରେ ଆଗତ ଓ ଆଲୋଚିତ ହୋଇ ଗୃହୀତ ହୋଇଥିଲା । ୧୧ ମାସପରେ ଇତିହାସର ପୁନରାବୃତ୍ତି ଘଟିଲା । ବିଶ୍ୱନାଥ ପ୍ରତାପ ସିଂ ସରକାର ଆସ୍ଥାଭୋଟରେ ପରାଜିତ ହେଲେ । ସଂସଦ ଗୃହ ମଧ୍ୟକୁ ଟେଲିଭିଜନ କ୍ୟାମେରାକୁ ଅନୁମତି ପ୍ରଦାନ କରିବା ବିଷୟ ଦୀର୍ଘଦିନଧରି ବିଚାରାଧିନ ରହିଥିଲା । ଶ୍ରୀ ରାୟଙ୍କ କାର୍ଯ୍ୟକାଳ ସମୟରେ ପ୍ରଥମଥର ପାଇଁ ଏ ଦିଗରେ ଫଳପ୍ରଦ ପଦକ୍ଷେପ ଆରମ୍ଭ କରାଗଲା । କେନ୍ଦ୍ରୀୟ ଗୃହରେ ରାଷ୍ଟ୍ରପତିଙ୍କ ଅଭିଭାଷଣକୁ ପ୍ରଥମଥର ପାଇଁ ଟେଲିଭିଜନ ଏବଂ ଆକାଶବାଣୀ ଜରିଆରେ ସିଧାସଳଖ ପ୍ରସାରିତ କରାଗଲା । ସଂସଦୀୟ କାର୍ଯ୍ୟର ସିଧା ପ୍ରସାରଣ ପାଇଁ ଶ୍ରୀ ରାୟ ଉଭୟ ଗୃହର ସଦସ୍ୟଙ୍କୁ ନେଇ ଏକ ଯୁଗ୍ମକମିଟି ଗଠନ କରିଥିଲେ ।

ଶ୍ରୀ ରାୟ ସଂସଦୀୟ ଦଳର ନେତୃତ୍ୱ ନେଇ ବିଭିନ୍ନ ଦେଶ ଭ୍ରମଣରେ ଯାଇଛନ୍ତି । ୧୯୯୦ ମସିହାରେ ସେ ୩୬ତମ ରାଜ୍ୟଗୋଷ୍ଠୀ ସଂସଦୀୟ ସମ୍ମିଳନୀରେ

ଯୋଗଦେଇଥିଲେ । ୧୯୯୧ ମସିହାରେ ସେ ରାଜ୍ୟଗୋଷ୍ଠୀ ସଂସଦୀୟ ସଂଘର ଅଧ୍ୟକ୍ଷଭାବେ ନିର୍ବାଚିତ ହେଲେ । ଦେଶର ଭବିଷ୍ୟତ ପିଢ଼ୀ ଏହାର ଜାତୀୟ ନେତାମାନଙ୍କର ବହୁମୂଲ୍ୟ ଅବଦାନ ସମ୍ପର୍କରେ ଯେପରି ଅବଗତ ହୋଇପାରିବେ, ସେଥିପାଇଁ ବୈଠକ ଓ ସେମିନାର ଇତ୍ୟାଦିର ଆୟୋଜନ କରିବା ପାଇଁ ଭାରତୀୟ ସଂସଦୀୟ ଗୋଷ୍ଠୀ ପକ୍ଷରୁ ଏହି ସମୟରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଏହାରି ଫଳସ୍ୱରୂପ ପ୍ରଥମଥର ପାଇଁ ଡଃ ରାମମନୋହର ଲୋହିଆ, ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀ, ପଣ୍ଡିତ ନୀଳକଣ୍ଠ ଦାସ, ଡଃ ରାଜେନ୍ଦ୍ର ପ୍ରସାଦ, ଡଃ. ବି.ଆର. ଆମ୍ବେଦକର ପ୍ରମୁଖ ମନିଷୀମାନଙ୍କ ଉପରେ ମନୋଗ୍ରାଫ୍ ପ୍ରକାଶ କରାଗଲା ।

ବହୁ ସରକାରୀ ଓ ବେସରକାରୀ ସଂସ୍ଥା ସହ ଓତଃପ୍ରୋତଭାବେ ଜଡ଼ିତ ଶ୍ରୀ ରାୟ ଭାରତୀୟ ପ୍ରେସ କାଉନସିଲର ଅଧ୍ୟକ୍ଷ ଆସନ ମଧ୍ୟ ଅଳଙ୍କୃତ କରିଛନ୍ତି ।

ଶ୍ରୀ ରାୟ ଲୋହିଆ ଏକାଡ଼େମୀ ତଥା ଗ୍ରାମ ବିକାଶ ଫାଉଣ୍ଡେସନର ଅଧ୍ୟକ୍ଷ ପଦରେ ରହି ବହୁ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ଆଦର୍ଶବାଦ ଏବଂ ମାନବବାଦ ପ୍ରତି ଅଙ୍ଗୀକାରବଦ୍ଧ ଶ୍ରୀ ରାୟଙ୍କ ପାଇଁ ସମାଜବାଦ କେବଳ ଏକ ବୌଦ୍ଧିକ ବିଚାର ନୁହେଁ, ବାସ୍ତବିକ ଜୀବନରେ ମଧ୍ୟ ସେ ଏହାକୁ ଅଂଶ ରୂପେ ଗ୍ରହଣ କରିନେଇଛନ୍ତି । ଶୋଷଣରୁ ମୁକ୍ତି ସମାଜବାଦ ଦ୍ୱାରା ହିଁ ସମ୍ଭବ ବୋଲି ତାଙ୍କର ଦୃଢ଼ମତ ।

ନିଜର ରାଜନୈତିକ ଜୀବନ ପ୍ରାରମ୍ଭରେ ଶ୍ରୀ ରାୟ ନିଜେ ଶ୍ରମଦାନ କରି ଗାଁରେ ରାସ୍ତା ତିଆରି କରିବାଠାରୁ ବହୁ ଗଠନମୂଳକ କାର୍ଯ୍ୟରେ ନିଜକୁ ସାମିଲ କରିଛନ୍ତି । ଓଡ଼ିଶାର ଅନେକ ସ୍ଥାନରେ ଶିକ୍ଷାଦାନକେନ୍ଦ୍ର ଏବଂ ସମାଜବାଦୀ ନିର୍ମାଣ କେନ୍ଦ୍ର ତାଙ୍କ ଉଦ୍ୟମରେ ପ୍ରତିଷ୍ଠିତ ହୋଇପାରିଛି ଭବିଷ୍ୟତରେ ଏକ ଯୁବ ଓ କୃଷକ ଆନ୍ଦୋଳନ ଗଢ଼ି ଉଠିପାରିବାର ଆଶା ରଖି । ଗାନ୍ଧିବାଦରେ ଗଭୀର ବିଶ୍ୱାସୀ ଶ୍ରୀ ରାୟଙ୍କ ସାହିତ୍ୟ ଜଗତପ୍ରତି ମଧ୍ୟ ଉଲ୍ଲେଖନୀୟ ଅବଦାନ ଥିଲା । ମାସିକ ପତ୍ରିକା 'ସମତା' ତାଙ୍କ ଦ୍ୱାରା ପ୍ରକାଶିତ ହୋଇ ବିକଳ୍ପ ବିଚାରର ପତ୍ରିକାରୂପେ ବେଶ୍ ଆଦୃତ ହୋଇପାରିଥିଲା । ସଂସଦୀୟ କୂଟନୀତି ଉପରେ ତାଙ୍କଦ୍ୱାରା ଲିଖିତ ପୁସ୍ତକ ଜାତୀୟସ୍ତରରେ ତୁମୁଳ ଆଲୋଡ଼ନ ସୃଷ୍ଟି କରିଥିଲା । ଦଶମ ଲୋକସଭା ପରେ ଶ୍ରୀ ରାୟ ନିର୍ବାଚନ ମଇଦାନରେ ଅବତୀର୍ଣ୍ଣ ହୋଇଥିଲେହେଁ ରାଜନୈତିକ କର୍ମକର୍ତ୍ତାଭାବେ ବୌଦ୍ଧିକ ମଞ୍ଚରେ ସାମିଲ ହୋଇଛନ୍ତି । ୧୯୯୭ ମସିହାରୁ ଲୋକଶକ୍ତି ଅଭିଯାନ ମାଧ୍ୟମରେ ସେ ଉଚ୍ଚସ୍ତରରେ ଦୁର୍ନୀତି, କ୍ଷମତାର ଅତ୍ୟଧିକ କେନ୍ଦ୍ରୀକରଣ ତଥା ଉପଭୋକ୍ତା ସଂସ୍କୃତି ବିରୋଧରେ ଜନଆନ୍ଦୋଳନର ନେତୃତ୍ୱ ନେଇ ଆସୁଛନ୍ତି । ଜାତୀୟ ଜୀବନରେ ସତ୍ୟ, ନିଷ୍ଠା, ପାରଦର୍ଶିତା ପ୍ରତିଷ୍ଠା କରିବା ପାଇଁ ଦେଶର ବିଭିନ୍ନ ଭାଗ ଗସ୍ତ କରୁଛନ୍ତି । ଶ୍ରୀ ରାୟଙ୍କ ପତ୍ନୀ ଜଣେ ଅବସରପ୍ରାପ୍ତ ଚିକିତ୍ସକ ଓ ବର୍ତ୍ତମାନ ନିଜକୁ ଗବେଷଣା ତଥା ଜନସେବା କାର୍ଯ୍ୟରେ ନିୟୋଜିତ କରିଛନ୍ତି ।

ବ୍ୟକ୍ତିତ୍ୱ ଦୃଷ୍ଟିରୁ ଓଡ଼ିଶା ରାଜନୀତିରେ ବିଜୁ ପଟ୍ଟନାୟକଙ୍କ ସହ ତୁଳନୀୟ ରବି ରାୟ କିନ୍ତୁ ଜନତା ଦଳ ରାଜନୀତିରେ ଅନେକ ବର୍ଷ ପର୍ଯ୍ୟନ୍ତ ଯଥାଯୋଗ୍ୟ ସ୍ଥାନ ପାଇନଥିବା ତାଙ୍କର ନିନ୍ଦୁକ ଓ ପ୍ରଶଂସକ ଉଭୟ ସ୍ୱୀକାର କରନ୍ତି । ତାଙ୍କର ସମାଜବାଦ ପୃଷ୍ଠଭୂମିରେ ନିଆରା ଚିନ୍ତାଧାରା ହୁଏତ ଏହାର ଏକ କାରଣ ହୋଇପାରେ, କିନ୍ତୁ ରବି ବାବୁ କେବେ କୌଣସି ବିଷୟରେ ସାଲିସ କରିନାହାନ୍ତି । ନିଜର ଚିନ୍ତା ଓ ଚେତନାକୁ ନେଇ ଏକ ନୂତନ ଆଲୋକର ସନ୍ଧାନରେ ଏ ପରିଣତ ବୟସରେ ବି ତାଙ୍କର ନିରନ୍ତର ଯାତ୍ରା ଚାଲିଛି । ଏହି ବହୁଜନାଦୃତ, ସରଳ, ନିଷ୍କପଟ, ପ୍ରବୀଣ ରାଜନେତା, ଜୟପ୍ରକାଶ କ୍ରାନ୍ତି ଆନ୍ଦୋଳନର ଅନ୍ୟତମ ସାରଥୀ, ଲୋକସଭାରେ ଓଡ଼ିଶାର ଉଦିତ ରବି ରୂପେ ଲୋକପ୍ରିୟ ବର୍ଷୀୟାନ୍ ନେତାଙ୍କୁ ତାଙ୍କ କଲ୍ୟାଣୀନଗରସ୍ଥିତ ବାସଭବନରେ 'ସମାଜ' ପକ୍ଷରୁ ଭେଟିଥିଲେ **ପ୍ରଦୋଷ ପଟ୍ଟନାୟକ ଓ ସତ୍ୟ ଖଡ଼୍ଗରାୟ** । ଜନନାୟକ ଜୟପ୍ରକାଶଙ୍କ ଶତବାର୍ଷିକୀ ଜନ୍ମ ସମାରୋହ ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ ପ୍ରାସଙ୍ଗିକତା ଦୃଷ୍ଟିରୁ ଏହି ସାକ୍ଷାତକାର ଉପସ୍ଥାପନା କରାଯାଉଛି ।

ସମାଜ : ଆପଣଙ୍କର ସଂସଦୀୟ ଓ ରାଜନୈତିକ ଜୀବନ ମଧ୍ୟରେ ସବୁଠାରୁ ସ୍ମରଣୀୟ ଘଟଣାଟି କ'ଣ ?

ରବି ରାୟ : ମୁଁ ତୁମକୁ ଗୋଟିଏ ଗୂଢ଼ କଥା କହୁଛି, ଶୁଣିଲେ ଆଶ୍ଚର୍ଯ୍ୟ ହେବ । ୧୯୬୬ ମସିହା ପର୍ଯ୍ୟନ୍ତ ସଂସଦରେ ଭାରତୀୟ ଭାଷାରେ କହିବାର ଅଧିକାର ନଥିଲା । ସଂସଦରେ ଇଂରାଜୀ ଭାଷା ହିଁ ପ୍ରଚଳିତ ଥିଲା । ଅନ୍ୟସବୁ ଭାଷା ଥିଲା ଗୌଣ, ଲାଞ୍ଛନାର ପାତ୍ର । ଦେଶ ସ୍ୱାଧୀନ ହେବାପରେ ନେହେରୁଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ବ୍ରିଟିଶ ହାଉସ ଅଫ୍ କମନସ୍‌ର ତତ୍କାଳୀନ ବିରୋଧୀ ଦଳର ନେତା ଅଟଲି ସାହେବ ଦିନେ ଆମର ସଂସଦ ଗୃହ ଦେଖିବାକୁ ଆସିଥିଲେ । ସେ ଗୃହର କାର୍ଯ୍ୟକାଳ ଦେଖି ବିସ୍ମିତ ହୋଇ କହିଲେ 'ଏ କଣ ବ୍ରିଟିଶ ହାଉସ୍ ଅଫ କମନ୍‌ସ ନା କ'ଣ, ସମସ୍ତେ ଇଂରାଜୀରେ କହୁଛନ୍ତି ।' କଣ୍ଠରୁ କହୁଛନ୍ତି, ମନ ଭିତରୁ କହୁନାହାନ୍ତି । ଅଟଲିଙ୍କ ଏହି ଟିପ୍‌ପଣୀ ନେହେରୁଙ୍କ କାନକୁ ଗଲା । ନେହେରୁଙ୍କ ଗୋଟିଏ ଗୁଣ ହେଉଛି ଯିଏ ଯାହା କହେ ସେ ତାକୁ ଶୁଣନ୍ତି ଓ ସଙ୍ଗେ ସଙ୍ଗେ ତା ଉପରେ ପ୍ରତିକ୍ରିୟାଶୀଳ ହୋଇପଡନ୍ତି । ସେଦିନ ଅପରାହ୍ନ ଅଧିବେଶନରେ ହିନ୍ଦୀଭାଷାରେ କହିପାରୁଥିବା ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କୁ ଡକାଗଲା ଓ ସେ ହିନ୍ଦୀଭାଷାରେ ବକ୍ତୃତା ଦେଲେ । ଲୋକସଭା ସଚିବାଳୟର ଅଫିସରମାନେ ମୋତେ ଏକଥା କହିଥିଲେ, କିନ୍ତୁ ଏହା ଗୋଟିଏ ଘଟଣାପରେ ପୂର୍ବ ସ୍ଥିତି ଚାଲିଥିଲା ।

୧୯୬୭ ମସିହାରେ ମୁଁ ଲୋକସଭାକୁ ନିର୍ବାଚିତ ହେଲି । ଇନ୍ଦିରା ଗାନ୍ଧୀ ସେତେବେଳେ ପ୍ରଧାନମନ୍ତ୍ରୀ । ଆମେ ଥିଲୁ ମାର୍କାମରା ପାର୍ଟି । ଆମେ ସମାଜବାଦୀମାନେ ଆମର ଇସ୍ତାହାରକୁ ନେଇ ପ୍ରତିଶ୍ରୁତିବଦ୍ଧ ଥିଲୁ । ସରକାରଙ୍କଠାରୁ ଯାହା କାମ ହାସଲ କରିବୁ, ଏହାସହ ଆମର ଇସ୍ତାହାରରେ ଦିଆଯାଇଥିବା ପ୍ରତିଶ୍ରୁତିଗୁଡ଼ିକ ଯେପରି ପୂରଣ ହେବ ସେଥିପାଇଁ ମଧ୍ୟ ଲଢ଼ିବୁ । ୪୮ ଲୋକସଭାରେ ଆମଦଳର ୧୨ ଜଣ ସଦସ୍ୟ ଥିଲୁ ।

ସଞ୍ଜୀବ ରେଡ୍ଡି ଲୋକସଭାର ବାଚସ୍ପତି । ଆମେ ସେତେବେଳେ ଇଂରାଜୀ ବଦଳରେ ଭାରତୀୟ ଭାଷା ସଂସଦରେ ବ୍ୟବହାର ପାଇଁ ଜନ ଆନ୍ଦୋଳନ କଲୁ । ୬୦ ହଜାର ଲୋକ ଗିରଫ ହୋଇ ଜେଲ ଗଲେ । ଏହା ସାଙ୍ଗକୁ ଅଲାଭକର ଜମିରୁ ଖଜଣା ମାଫ୍ ଓ କୃଷିଜାତ ଏବଂ ଶିଳ୍ପଜାତ ଦ୍ରବ୍ୟ ମଧ୍ୟରେ ସମାନତା ରକ୍ଷାପାଇଁ ଆନ୍ଦୋଳନ କଲୁ । ଓଡ଼ିଶାରେ ଏ ଆନ୍ଦୋଳନ ଆରମ୍ଭ କରିଥିବାରୁ ମୁଁ ୩ ମାସ ଜେଲ ଯିବାକୁ ପଡ଼ିଲା । ଇଂରେଜମାନଙ୍କୁ ସାର୍ବଜନୀନ କ୍ଷେତ୍ରରୁ ହଟାଇବା ପାଇଁ ଆମର ଏହି ଆନ୍ଦୋଳନ ଥିଲା । କୋର୍ଟ, କଚେରୀ, ସ୍କୁଲ, କଲେଜ ସବୁଠାରେ ଭାରତୀୟ ଭାଷାର ପ୍ରୟୋଗ ଆମର ଦାବିଥିଲା ।

ଏହି ସମୟରେ ଏକ ସ୍ମରଣୀୟ ଘଟଣା କହୁଛି । ସଂସଦରେ ଭାରତୀୟ ଭାଷାର ବ୍ୟବହାର ପାଇଁ ଯେହେତୁ ଆମର ଆନ୍ଦୋଳନ ହୋଇଥାଏ, ତେଣୁ ମୁଁ ଓଡ଼ିଆ ଭାଷାରେ ବକ୍ତୃତା ଦେବାପାଇଁ ମନ ସ୍ଥିର କରିଥିଲି । ମୁଁ ଓ.ଜେ.ଏଚ. ପଟେଲ ସେତେବେଳେ ପ୍ରଥମଥର ପାଇଁ ଲୋକସଭାକୁ ନିର୍ବାଚିତ ହୋଇଥାଉ । ଆମମାନଙ୍କର ଆଦର୍ଶ ବନ୍ଦନୀୟ ନେତା ଡଃ. ରାମ ମନୋହର ଲୋହିଆ କହିଲେ ତୁମେ ଦିହେଁ ହେଉଛ ଅହିନ୍ଦୀ ଭାଷୀ, ଏଣୁ ତୁମ ମାତୃଭାଷାରେ ବକ୍ତୃତା ଦିଅ । ଓଡ଼ିଆରେ କହିବି ବୋଲି ମୁଁ ଦୃଢ଼ମନା ହୋଇଥାଏ । ଏହା ମୋତେ ଅଫୁରନ୍ତ ଉତ୍ସାହ ଯୋଗାଇଲା । ପ୍ରଥମେ ଶ୍ରୀ ପଟେଲ କନ୍ନଡ଼ ଭାଷାରେ କହିଲେ, ତାପରେ ମୁଁ ଓଡ଼ିଆ ଭାଷାରେ ମୋର ବକ୍ତବ୍ୟ ରଖିଲି । ଏହାପରେ ଲୋକସଭାର ବାଚସ୍ପତି ସେଦିନ ଯେଉଁ ରୁଲିଂ ଦେଲେ ତାହା ଯୁଗାନ୍ତକାରୀ ଅଟେ । ବାଚସ୍ପତି କହିଲେ, ମୁଁ ଅତ୍ୟନ୍ତ ଦୁଃଖିତ, ଗଣତନ୍ତ୍ର ହେବାରେ ନିଜ ଦେଶୀୟ ଭାଷାରେ କହିବାର ଅଧିକାର ନାହିଁ । ଆଜିଠାରୁ ଏହି ସୁଯୋଗ ସମସ୍ତଙ୍କୁ ପ୍ରଦାନ କରାଗଲା ଏବଂ ପ୍ରତ୍ୟେକ ସଦସ୍ୟ ଦିନକ ପୂର୍ବରୁ ବାଚସ୍ପତିଙ୍କୁ ଜଣାଇ ତାଙ୍କର ମାତୃଭାଷାରେ ବକ୍ତବ୍ୟ ରଖିବେ ।

ଜାତିସଂଘରେ ମଧ୍ୟ ପୃଥିବୀର ୭ଟି ବିଖ୍ୟାତ ଭାଷାର ସାଥି ସାଥି ଅନୁବାଦ ବ୍ୟବସ୍ଥା ରହିଛି । ରୁଷ ପାର୍ଲାମେଣ୍ଟରେ ୧୩ଟି ଭାଷା ବ୍ୟବହାର କରିବାର ସୁବିଧା ରହିଥିଲା ବୋଲି ତାହା ସୋଭିଏତ ସଂଘରେ ପରିଣତ ହୋଇପାରିଥିଲା । ଆମର ଏଠି ଲୋକସଭା ଯାହାକୁ ଆମେ ଲୋକଙ୍କ ସଭା ବୋଲି କହୁ, ସେଥିରେ ଯଦି ଲୋକଭାଷା ନ ରହିବ ତେବେ ଏହାଠାରୁ ବଳି ବିଡମ୍ବନା ଆଉ କ'ଣ ହୋଇପାରେ !

ମାତୃଭାଷା ବ୍ୟବହାର ପ୍ରସଙ୍ଗରେ ଭାରତବର୍ଷରେ ଜଣେ ବିଖ୍ୟାତ ଶିକ୍ଷାବିତ୍ ବୈଜ୍ଞାନିକ ଡଃ କୋଠାରୀ ତାଙ୍କର ସୁପାରିଶରେ କହିଛନ୍ତିଯେ ପିଲାମାନଙ୍କୁ ଯଦି ମାତୃଭାଷାର ବିଦ୍ୟା ପଢ଼ାଉନାହଁ, ତାହେଲେ ତୁମେ ତାଙ୍କୁ ବିଷ ପିଆଉଛ । ଆମ ସମ୍ବିଧାନର ଅଷ୍ଟମ ପରିଚ୍ଛେଦରେ ଯେତେ ଭାଷା ଅନ୍ତର୍ଭୁକ୍ତ ହୋଇଛି ସବୁ ଜାତୀୟ ଭାଷା । ଓଡ଼ିଆ ମଧ୍ୟ ଏକ ଜାତୀୟ ଭାଷା, କିନ୍ତୁ ଆମେ ତାହା ଜାଣିପାରୁ ନାହୁଁ । ଦେଶରେ ସମ୍ବିଧାନ ଦୃଷ୍ଟିରୁ ଯେଉଁଗୁଡ଼ିକ ୧୦୦ ଭାଗ ଅସାମ୍ବିଧାନିକ ତାହା ଚାଲିଛି ।

ସମାଜ ଆପଣଙ୍କ ଜୀବନରେ ସଫଳତାର ରହସ୍ୟ ଓ କେବେ ପୁଣି ସଫଳ ନହୋଇପାରିବା ପଛରେ ରହିଥିବା ଅନ୍ତରାୟଟି କ'ଣ ?

ରବି ରାୟ : ମନୁଷ୍ୟର ମାନସିକ ସ୍ତରରେ ଦୁଇଟି ଶତ୍ରୁ । ଉଚ୍ଚାକାଂକ୍ଷା ଓ ଅକିଂଚନ ବା ହୀନମନ୍ୟତା । ମୋ ଜୀବନରେ ମୁଁ ଏହି ଦୁଇଟିକୁ ପରିହାର କରି ଆସିଛି । ମୁଁ ଜୀବନରେ କେବେ ବି ହାର ମାନିନି ।  ଆଜିକାଲିର ଅବସ୍ଥା ଦେଖି ଭଲ ଲାଗୁନି । ମୁଁ ଲୋକସଭାର ବାଚସ୍ପତି ଭାବରେ ନିଷ୍ପତ୍ତି ନେଇଥିଲି ଦଳମତ ଊର୍ଦ୍ଧ୍ୱରେ ରହି କାର୍ଯ୍ୟ କରିବି । ଇଂଲଣ୍ଡରେ ବାଚସ୍ପତିଙ୍କ ବିରୋଧରେ କେହି ନିର୍ବାଚନ ଲଢ଼ନ୍ତି ନାହିଁ । ଆମେ ଏହି ପଦ୍ଧତିକୁ ମାନିନେବା ଦରକାର । ମୋର ଏ ମତକୁ ସେତେବେଳେ ଉଣା ଅଧିକେ ଅଧିକାଂଶ ପସନ୍ଦ କରିଥିଲେ । ବିରୋଧୀଦଳର ନେତା ରାଜୀବ ଗାନ୍ଧୀ ମଧ୍ୟ ଏହାକୁ ସ୍ୱାଗତ କରିଥିଲେ । ମୋ ବିରୋଧରେ ପ୍ରାର୍ଥୀ ନ ଦେବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ଅବଶ୍ୟ ତାଙ୍କ ଦଳ ଏଥିରେ ସହମତ ହେଲାନାହିଁ ।

ଜଣେ ବାଚସ୍ପତି ଯଦି ପ୍ରଧାନମନ୍ତ୍ରୀ କିମ୍ବା ମୁଖ୍ୟମନ୍ତ୍ରୀଙ୍କୁ କିଛି ସୁବିଧା କରାଇ ଦେଉଥିବା ଫାଇଦା ପହଞ୍ଚାଇପାରିବ ଏଥିପାଇଁ ଯେ ସେ  ଅଚିରେ ମନ୍ତ୍ରୀ ହେବ ଏହାଠାରୁ ଜଘନ୍ୟ କାର୍ଯ୍ୟ ଆଉ କିଛି ନାହିଁ । ଜି.ଏସ. ଧିଲନ ଲୋକସଭାର ବାଚସ୍ପତି ଥିଲେ, ପରେ କ୍ୟାବିନେଟ ମନ୍ତ୍ରୀ ହେଲେ । ବିଧାନସଭାରେ ଏହାର ଅଧିକ ଦୃଷ୍ଟାନ୍ତ ରହିଛି । ଏସବୁକୁ ମୁଁ ସଫଳତାର ମାପକାଠି ବୋଲି ଧରେ ନାହିଁ ।

ସମାଜ : ବର୍ତ୍ତମାନର ରାଜନୈତିକ ଦଳଗୁଡ଼ିକର କାର୍ଯ୍ୟକଳାପ ସମ୍ପର୍କରେ ଆପଣଙ୍କର ମତ କ'ଣ ?

ରବି ରାୟ : ମତ ଆଉ କ'ଣ, ଆମର ରାଜନୈତିକ ଦଳଗୁଡ଼ିକୁ ଗ୍ରହଣ ଲାଗିଗଲାଣି । ସେମାନେ ବଦଳିବେ ନାହିଁ । ଜନତାଦଳ ଆଭ୍ୟନ୍ତରୀଣ କନ୍ଦଳରେ ଲିପ୍ତ ହେଲା । ସେ ଦଳ ଚାଲିଗଲା, ତାହାର ଭବିଷ୍ୟତ ନାହିଁ । ସେ ସରକାରର ପତନ ପରେ ନରସିଂହ ରାଓ ସରକାର କ୍ଷମତାସୀନ ହେଲେ । ବିଶ୍ୱବ୍ୟାଙ୍କ କଥାରେ ମନମୋହନ ସିଂହ ଏ ସରକାରର ଅର୍ଥମନ୍ତ୍ରୀ ହେଲେ । ଉଦାରୀକରଣ ନାମରେ ଏମାନେ ଭାରତବର୍ଷର ଆଭ୍ୟନ୍ତରୀଣ ସାର୍ବଭୌମତ୍ୱକୁ ବିକ୍ରି କରିଦେଲେ । ବାହ୍ୟଶକ୍ତି ଆମକୁ ନିୟନ୍ତ୍ରିତ କରିବାରେ ଲାଗିଲେ । ମନମୋହନ ସିଂହ ବିଶ୍ୱବ୍ୟାଙ୍କରେ କାର୍ଯ୍ୟ କରୁଥିଲେ ତେଣୁ ବିଶ୍ୱ ବ୍ୟାଙ୍କ ତାଙ୍କୁ ଚାହିଁଲା । ବିଦେଶର ଖବରକାଗଜଗୁଡ଼ିକରେ ଏକଥା ପ୍ରକାଶ ପାଇଲା ବୋଲି ମତେ ବନ୍ଧୁମାନେ ଲେଖି ଜଣାଇଲେ ।

ତୁମେ ଦେଖ, ଯେଉଁ ସ୍ତରରେ ରାଜନୈତିକଦଳଗୁଡ଼ିକ ପହଞ୍ଚିଲେଣି ମାସକୁ ଲକ୍ଷେ ଟଙ୍କା ଦରମା ନେବେ ।  ଦେଶ ଧ୍ୱଂସ ପାଉଥିବା ବେଳେ ମରୁଡ଼ି, ବାତ୍ୟା ଓ ହଜାର ହଜାର ଲୋକ ଖାଇବାକୁ ନ ପାଇ ମରୁଥିବା ବେଳେ ଏହା ହେବ । ସୁପ୍ରିମ କୋର୍ଟ କହିଲେ ତୁମର ୬୦ ଲକ୍ଷ ଟନ ଅନ୍ନ ସଢୁଥିବା ବେଳେ ଲୋକେ ଖାଇବାକୁ ନ ପାଇ ମରୁଛନ୍ତି । ଏହାଠାରୁ ବଳି ଲଜ୍ଜାକର ଘଟଣା ଆଉ କ'ଣ ? କଂଗ୍ରେସ ଯେଉଁ କାମଟି ଆରମ୍ଭ କଲା ତାକୁ ସମସ୍ତେ ଗ୍ରହଣ କରିଯାଉଛନ୍ତି । ମୁଁ ତ କହିବି ବ୍ରିଟିଶ ସରକାର ଦେଢ଼ଶହ ବର୍ଷ ଭିତରେ ଭାରତବର୍ଷକୁ ଯେତେ ଧ୍ୱଂସ କରିନଥିଲା ଏ ଦେଶୀ ସରକାରମାନେ ବେଶି କରୁଛନ୍ତି ।

ଏବେ ପ୍ରତିରକ୍ଷା ବିଭାଗର ଦୁର୍ନୀତିକଥା ପଦାକୁ ଆସିଲା । ଯାଙ୍କର ଜଣେ ବଡ଼ ଅଫିସର ମେଜର ଜେନେରାଲ ପାହ୍ୟାର ଅଧିକାରୀ ତାଙ୍କ ନାମ ପି.ଏସ.କେ. ଚୌଧୁରୀ, ସେ ଲାଞ୍ଚ ନେଉଥିବା ବେଳେ ତହେଲକା ଟେପରେ ଧରାପଡ଼ିଛନ୍ତି । ଏହି ମାମଲାର ତଦନ୍ତ କରୁଥିବା ଭେଙ୍କେଟଚେଲିୟା କମିଶନ ଆଗରେ ସେ ତାଙ୍କର ବୟାନରେ କହିଲେ ଯେ ଦେଶର ୯୫ ପ୍ରତିଶତ ଲୋକ ଓ ରାଜନେତା ଏହାହିଁ କରିଥାନ୍ତେ ଯାହା ସେ ଲାଞ୍ଚାୟିତ ହୋଇ କଲେ । ଦେଶର କିଭଳି ସ୍ଖଳନ ଘଟିଲାଣି ଏଥିରୁ ସ୍ପଷ୍ଟ ଅନୁମେୟ ।

ସମାଜ : ଉଦାରୀକରଣ ଅର୍ଥନୀତି ପ୍ରବର୍ତ୍ତନ ବେଳେ ଆପଣ ଲୋକସଭାର ସଦସ୍ୟ ଥିଲେ । ସରକାର କିପରି ସଂସଦର ମତ ଏହା ଉପରେ ନେଇଗଲେ ଓ ବର୍ତ୍ତମାନ ସମସ୍ତେ ଏହାକୁ ସ୍ୱୀକାର କରିବାର ରହସ୍ୟ କ'ଣ ?

ରବି ରାୟ : ତୁମେ ଆଶ୍ଚର୍ଯ୍ୟ ହେବ, ଉଦାରୀକରଣ ଉପରେ ଲୋକସଭାରେ ବିତର୍କ ହେଲା ନାହିଁ । ସମ୍ବିଧାନର ସମସ୍ତ ଗାରିମା ଓ ନିର୍ଦ୍ଦେଶକୁ ଗୋଟିଏ ସରକାର ଭ୍ରୁକ୍ଷେପ କଲେନାହିଁ । ଆଲୋଚନା ଯେହେତୁ ହେଲାନାହିଁ, ମୁଁ ଶୂନ୍ୟକାଳ ପରେ ଗୃହରେ ଏକ ଦସ୍ତାବିଜ ପେଶ୍ କରିବା ପାଇଁ ବାଚସ୍ପତିଙ୍କୁ ଅନୁମତି ମାଗିଲି । ଏହା ଥିଲା ସାଉଥ୍ ସାଉଥ୍ ରିପୋର୍ଟ ଯାହାର ଗ୍ରନ୍ଥକାର ହେଉଛନ୍ତି ଜୁଲିଅସ ନାଇରେର ଏବଂ ସମ୍ପାଦକ ମନମୋହନ ସିଂ । ଏସିଆ ଆଫ୍ରିକା ଭିତରେ ଦାରିଦ୍ର୍ୟ, ଅସମତା ଓ ପଛୁଆ ଅର୍ଥନୀତିକୁ କିପରି ଦୂର କରାଯିବ ସେଥିପାଇଁ ସେମାନେ ଯେଉଁ ପ୍ରସ୍ତାବ ଦେଇଥିଲେ, ତାହା ଏଥିରେ ସଂକଳିତ କରାଯାଇଛି । ଏହାର ପ୍ରଥମ ଅନୁଚ୍ଛେଦରେ ଲେଖା ହୋଇଛି, ଯେଉଁ ଦେଶରେ ଉଦାରୀକରଣ ନୀତି ଗ୍ରହଣ କରାଯିବ, ପ୍ରତ୍ୟେକଦେଶ ବିଶ୍ୱବ୍ୟାଙ୍କ କଥାରେ ତାଙ୍କ ଦେଶର ଆଭ୍ୟନ୍ତରୀଣ ଅର୍ଥନୀତିରେ ଆନୁଷ୍ଠାନିକ ପରିବର୍ତ୍ତନ କରିବେ । ମୁଦ୍ରାସ୍ଫିତି ବୃଦ୍ଧି କରିବାକୁ ହେବ ଓ ଅନ୍ୟାନ୍ୟ ବହୁ ସର୍ତ୍ତ ରହିଛି ଯେଉଁଥିରେ ମନମୋହନ ସିଂହ ଦସ୍ତଖତ କରିଛନ୍ତି । ଗୃହରେ ଡଃ ସିଂ ବସିଥିଲେ, କିନ୍ତୁ ଉତ୍ତର ଦେଇପାରିଲେ ନାହିଁ । ମୁଁ କହିଲି, ଉଚ୍ଚତମ ସ୍ତରରେ ଏହି ଯେଉଁ ଜବାବଭଙ୍ଗ ଏହାର ତୁଳନା ନାହିଁ । ପାର୍ଲାମେଣ୍ଟ ଆଜିଠୁ ସାର୍ବଭୌମ ନୁହେଁ ।

ପ୍ରଥମେ ବଜେଟରେ ଏ ସରକାର ବିଶ୍ୱବ୍ୟାଙ୍କର ଅଫିସ ଦିଲ୍ଲୀରେ ଖୋଲିବାକୁ ଦେଲେ । ଉଦାରୀକରଣ ଫଳରେ ଶିକ୍ଷା ଓ ସ୍ୱାସ୍ଥ୍ୟ ଉପରେ ସବୁଠୁ ବେଶୀ ପ୍ରଭାବ ପଡ଼ିଲା । ଉଦାରୀକରଣର କଦର୍ଯ୍ୟତମ ଲକ୍ଷ୍ୟ ହେଉଛି, ସାମାଜିକ କ୍ଷେତ୍ର ଉପରେ ଷଣ୍ଢଆସି ଆକ୍ରମଣ । ୧୯୯୧ ରୁ ୯୬ ମଧ୍ୟରେ ଉଦାରୀକରଣ ବିରୋଧରେ ଯେତେଥର ଗୃହରେ ଭୋଟ ହୋଇଛି ମୁଁ ଓ ଆଡ଼ଭାନୀ ସେ ବିରୋଧରେ ଭୋଟ ଦେଇଛୁ । ଏବେ ଆଶ୍ଚର୍ଯ୍ୟ ଲାଗୁଛି ବାଜପେୟୀ ସରକାର ସତେ ଯେପରି ଅପେକ୍ଷା କରି ରହିଛନ୍ତି ବିଶ୍ୱବାଣିଜ୍ୟ ସଂଘ, ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କର ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବା ପାଇଁ ।

ବିଂଶ ଶତାବ୍ଦୀ ଆରମ୍ଭରେ ସେମାନେ ଆମକୁ ସେନାଦ୍ୱାରା ହରାଇଲେ । ମୁଁ କହୁଛି ଏବେ ସେନା ଆଣିବେନି, ପେଟରେ ମାରିବେ, ଦାନାରେ ମାରିବେ, ପରମୁଖାପେକ୍ଷୀ କରିଦେବେ । ଯିଏ ସରକାରକୁ ଆସନ୍ତୁ ନା କାହିଁକି, ସମସ୍ତେ ସେହି ଗୋଟିଏ କଥା

କରୁଛନ୍ତି । ଗାଁରେ ସବୁ କହନ୍ତି ନା କିମିୟା କରିଦେଲାକି ଆଉ ! ମୁଁ କିମିୟାରେ ବିଶ୍ୱାସ କରେନି, କିନ୍ତୁ ବର୍ତ୍ତମାନର ସରକାରଙ୍କ କାର୍ଯ୍ୟକଳାପକୁ ଦେଖିଲେ ଏଭଳି ମନେ ହେଉଛି ।

୧୯୭୧ ମସିହାରେ ଆମେ ପେଟେଣ୍ଟ ଆକ୍ଟ ପ୍ରଣୟନକଲୁ । ଏହା ଫଳରେ ଆମର ଔଷଧ ଶିଳ୍ପ ଆତ୍ମନିର୍ଭରଶୀଳ ହୋଇପାରିଲା । ପରେ ଏଥି ସଂକ୍ରାନ୍ତରେ ଗୁଜରାଲ କମିଟି ଗଠନ କରାଯାଇଥିଲା । ଏହି କମିଟି ତାଙ୍କର ରିପୋର୍ଟରେ କହିଲେ ଯେ ଆମେ ୧୯୭୧ ଆଇନକୁ ପରିବର୍ତ୍ତନ କରିପାରିବୁ ନାହିଁ । ୧୯୯୫ ମସିହାରେ ବାଜପେୟୀ ଓ ଆମେମାନେ ଏହା ନକରିବା ପାଇଁ ବଦ୍ଧପରିକରଥିଲୁ, କିନ୍ତୁ ଏବେ ସେହି ବାଜପେୟୀ ସରକାରର ନେତୃତ୍ୱ ନେବାପରେ ପେଟେଣ୍ଟ ଆଇନକୁ ବଦଳାଇଦେଲେ । ଆଇନ କମିଶନର ଅଧ୍ୟକ୍ଷ ଜୀବନ ରେଡ୍ଡି ମଧ ତାଙ୍କର ମତାମତରେ କହିଥିଲେ ଯେ ୧୯୭୧ ଆଇନକୁ ପରିବର୍ତ୍ତନ କଲେ, ଦେଶର ସ୍ୱାର୍ଥହାନି ହେବ, ଜାତୀୟ ସ୍ୱାର୍ଥ ବାଧାପଡ଼ିବ, ଜାତୀୟ ସ୍ୱାସ୍ଥ୍ୟ ଯୋଜନା ଇତ୍ୟାଦି ଯାହା ଚାଲିଛି ସେଥିରେ ବିଘ୍ନ ସୃଷ୍ଟି ହେବ, ଔଷଧପତ୍ରର ଦରଦାମ ଏତେ ବଢ଼ିଯିବ ଯେ ଲୋକେ ଔଷଧ କିଣିପାରିବେ ନାହିଁ । କିନ୍ତୁ ଲୋକସଭାରେ ସରକାର ଏହା ଉପରେ ଆଲୋଚନା କଲେ ନାହିଁ ଓ ବିଲକୁ ଗୃହୀତ କରାଇନେଲେ । କେନ୍ଦ୍ର ସରକାର ମନମୁଖୀଭାବେ ଏହି ପଦକ୍ଷେପ ନେଇଥିବାରୁ ଓଡ଼ିଶା, ବିହାର ଓ ତାମିଲନାଡୁ ଏହି ତିନୋଟି ଅଣ-କଂଗ୍ରେସ ରାଜ୍ୟ ସୁପ୍ରିମକୋର୍ଟରେ ମୋକଦ୍ଦମା ଦାଏର କଲେ । ସର୍ବୋଚ୍ଚ ଅଦାଲତ ଅବଶ୍ୟ ଏ ସଂକ୍ରାନ୍ତରେ କୌଣସି ଟିପ୍ପଣୀ ଏପର୍ଯ୍ୟନ୍ତ ଦେଇନାହାନ୍ତି । ଯେଉଁ ବାଜପେୟୀ ସରକାର ସ୍ୱଦେଶୀ କଥା ଚିତ୍କାର କରୁଥିଲେ, ସେମାନେ ଏବେ ସକାଳୁ ଉଠିଲେ ବିଛଣାକୁ ଗଲା ପର୍ଯ୍ୟନ୍ତ ଗୋଟିଏ କାମ, କିପରି ବିଶ୍ୱବ୍ୟାଙ୍କ, ମୁଦ୍ରାପାଣ୍ଠି ଓ ବିଶ୍ୱବାଣିଜ୍ୟ ସଂଘର ନିର୍ଦ୍ଦେଶକୁ ପାଳନ କରିବେ । ଗୋଟିଏ କଥା ଦେଖ, ଏ ସରକାରର ଜଣେ ମନ୍ତ୍ରୀ ରହିଛନ୍ତି ଯାହାଙ୍କର କାର୍ଯ୍ୟ ହେଉଛି ପୁଞ୍ଜି ପ୍ରତ୍ୟାହାର କରିବା । ହଜାର ହଜାର କୋଟି ଟଙ୍କା ଖର୍ଚ୍ଚକରି ଦେଶର ଯେଉଁ ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକ ତିଆରି ହୋଇଥିଲା ତାହାକୁ ସ୍ୱଳ୍ପମୂଲ୍ୟରେ ଘରୋଇ ସଂସ୍ଥାକୁ ବିକ୍ରି କରିବା ପାଇଁ ଗୋଟିଏ ବିଭାଗ ହୋଇଛି । ଅରୁଣ ସୌରୀ ଏହାର ମନ୍ତ୍ରୀ । ଆମେରିକା ନିର୍ଦ୍ଦେଶରେ ଏହା କାର୍ଯ୍ୟକାରୀ ହେଉଛି ।

ସମାଜ : ଉଦାରୀକରଣର କୁପ୍ରଭାବ କ'ଣ ?

ରବି ରାୟ : ବହୁରାଷ୍ଟ୍ରୀୟ କମ୍ପାନୀମାନେ କିପରି ଦେଶୀ କମ୍ପାନୀକୁ ଗ୍ରାସ କରିଯାଉଛନ୍ତି ତାହାର ବହୁ ଉଦାହରଣ ରହିଛି । ରାଜୀବ ଗାନ୍ଧୀଙ୍କ ସମୟରେ କୋକାକୋଲା ଓ ପେପ୍‌ସୀ ଆମଦେଶକୁ ଆସିଲା । ରମେଶ ଚୌହାନ ବୋଲି ଜଣେ ଭାରତୀୟ ଶିଳ୍ପୋଦ୍ୟୋଗୀଙ୍କ ଭାରତୀୟ ପେୟ ଖୁବ ବିଖ୍ୟାତ ଥିଲା । କିନ୍ତୁ ଏହି କୋଲା ଓ ପେପ୍ସୀ କମ୍ପାନୀ ଆସିଲାପରେ ତାଙ୍କର ତିଷ୍ଠିବା ମୁସ୍କିଲ ହୋଇପଡ଼ିବା ସ୍ୱାଭାବିକ । ଯେଉଁଦିନ କଳାହାଣ୍ଡିର ଗୋଟିଏ ଗାଁରେ ମୁଁ କୋକାକୋଲାର ବିଜ୍ଞାପନ ଦେଖିଲି, ସେଦିନ ବୁଝିଲି ସବୁ ଶେଷ ହୋଇଗଲା । ଦେଶର ଖ୍ୟାତିରୂପେ ଥିବା ଯେତେ ବଡ଼ ବଡ଼ କମ୍ପାନୀ ସବୁକୁ ବିକିବାର ପାଳି ଏବେ ଆରମ୍ଭ ହୋଇଛି । ବାଲ୍‌କୋର ସମସ୍ତ ସମ୍ପତ୍ତିର ମୂଲ୍ୟ ୫ ହଜାର କୋଟି ଟଙ୍କା ହେବ । ତାହାକୁ

ଷ୍ଟେରଲାଇଟ ବୋଲି ଗୋଟିଏ କମ୍ପାନୀକୁ ୫୫୧ କୋଟି ଟଙ୍କାରେ ବିକ୍ରି କରାଗଲା । ଏନ୍‌ରନ୍ କମ୍ପାନୀ ଆସିଲା ଯେ ଏହାର ଜଣେ ମହିଳା ଅଧିକାରୀ ରେବିକା ୫ ବର୍ଷ ତଳେ କହିଥିଲେ ତାଙ୍କ ପ୍ରକଳ୍ପ ପ୍ରତିଷ୍ଠା ପୂର୍ବରୁ ଭାରତୀୟମାନଙ୍କୁ ଶିକ୍ଷିତ କରିବା ପାଇଁ ସେ ୬୦ କୋଟି ଟଙ୍କା ବ୍ୟୟ କରିଛନ୍ତି ।

ମୁଁ ଗୋଟିଏ ଗହନ କଥା କହୁଛି । ଏହାର ପ୍ରମାଣ ମଧ୍ୟ ମୋ ପାଖରେ ରହିଛି । ଆମେରିକାର ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ ଭାରତ ଗସ୍ତରେ ଆସିବା ପୂର୍ବରୁ ତାଙ୍କ ଦେଶର ବାଣିଜ୍ୟ ସଚିବ ଆମ ଦେଶର ବାଣିଜ୍ୟ ସଚିବଙ୍କ ନିକଟକୁ ଗୋଟିଏ ପତ୍ର ଲେଖିଥିଲେ । ଏହି ପତ୍ର ତାଙ୍କର ଆଦେଶଭଳି ଥିଲା । ଆମର ଯେଉଁ ଦେଶୀଜାତ ପଦାର୍ଥ ଉତ୍ପାଦନ ହେଉଛି ତାହାକୁ ବିଦେଶରୁ ଆମଦାନୀ କରିବା ଉପରେ ଆମେ କଟକଣା ଜାରି କରିଥିଲୁ । କାରଣ ସେସବୁ ଜିନିଷ ଆମର ଦରକାର ନାହିଁ । ଆମ ଦେଶରେ ଯାହା ଉତ୍ପାଦିତ ହେଉଛି, ସେଥିରେ ଆମେ ଆତ୍ମ ନିର୍ଭରଶୀଳ । କିନ୍ତୁ ଆମେରିକା ଚାହିଁଲା ଆମ ବଜାରରେ ପ୍ରବେଶ କରିବ ଓ ତାହାର ବେଉସା ପ୍ରସାରିତ କରିବ । ତେଣୁ ଏ ସବୁ ସାମଗ୍ରୀ ଉପରୁ କଟକଣା ଉଠାଇଦେବା ପାଇଁ ଆମେରିକା ଚାପ ପକାଉଥିଲା । ଅବଶ୍ୟ ଉଦାରୀକରଣ ଚୁକ୍ତିରେ ସ୍ୱାକ୍ଷର କଲାବେଳକୁ ଭାରତ ସରକାର ରାଜି ହୋଇଯାଇଥିଲେ କଟକଣାଗୁଡ଼ିକ ଉଠାଇବା ପାଇଁ, କିନ୍ତୁ ୨୦୦୧ ମସିହାରେ ଏହା କରାଯିବ ବୋଲି ପ୍ରତିଶ୍ରୁତି ଦିଆଯାଇଥିଲା । ମାତ୍ର କ୍ଲିଣ୍ଟନ ଆସୁଥିବାରୁ ତାଙ୍କ ଦେଶ ଏହା ଆଗୁଆ ହେବ ବୋଲି ଚାହିଁଲା ଏବଂ ଆମ ସରକାର ତାଙ୍କୁ ସମ୍ମାନ ଜଣାଇ ୭୧୫ଟି ସାମଗ୍ରୀ ଉପରୁ କଟକଣା ଉଠାଇଦେଲେ । ଏହାଫଳରେ ଦେଶର କେତେଲକ୍ଷ କୁଟୀର ଶିଳ୍ପ ଯେ ଧଡ଼ଧଡ଼ ହୋଇ ବନ୍ଦ ହୋଇଗଲା ସେକଥା ସରକାର କହୁନାହାନ୍ତି । ୧୯୮୦ ପର୍ଯ୍ୟନ୍ତ ଆମେ ଆମେରିକା ଉପରେ ପି.ଏଲ.-୪୮୦ ଗହମ ପାଇଁ ନିର୍ଭର କରୁଥିଲୁ । ଏବେ ଆଉ ସେ ପରିସ୍ଥିତି ନାହିଁ । ୧୯୭୭ରୁ ଆମେ ଖାଦ୍ୟ ନିରାପତ୍ତା ହାସଲ କରିପାରିଲୁ । ଗହମ ଆଉ ଆମଦାନୀ କରିବାର ଆବଶ୍ୟକତା ନାହିଁ । ୟୁରୋପ, ଆମେରିକା ପ୍ରଭୃତି ଦେଶ ତାଙ୍କର ଚାଷୀଙ୍କୁ ୪୦୦ ପ୍ରତିଶତ, ୫୦୦ ପ୍ରତିଶତ ସବସିଡ଼ି ଦେଉଛନ୍ତି, କିନ୍ତୁ ଆମକୁ ନଦେବା ପାଇଁ କହୁଛନ୍ତି । ଏହାର ପରିଣତି ହେଲା ଆନ୍ଧ୍ରରେ ଚାଷୀ ଆତ୍ମହତ୍ୟା କଲେ । ସବୁଠାରୁ ଧନୀତମ ରାଜ୍ୟ ପଞ୍ଜାବ ଚାଷୀ ମଧ୍ୟ ଆତ୍ମହତ୍ୟା କଲା । ଏବେ ପୁଣି ସରକାର ନିଷ୍ପତ୍ତି ନେଇଛନ୍ତି, ଜମିକୁ କୁଆଡ଼େ ଠିକା ପ୍ରଣାଳୀରେ ଚାଷ କରିବାକୁ ଦିଆଯିବ । କ୍ଷୁଦ୍ରଚାଷୀଙ୍କ ଅବସ୍ଥା କିଭଳି ଦୟନୀୟ ଆଡ଼କୁ ଯାଉଛି ତାହା କଳ୍ପନା କରିହେଉନାହିଁ ।

ଖଣିଜ ପଦାର୍ଥ ସଂକ୍ରାନ୍ତରେ ସମ୍ବିଧାନର ପଞ୍ଚମ ସୂଚୀରେ ଉଲ୍ଲେଖଅଛି, ଆଦିବାସୀମାନଙ୍କୁ ସେମାନଙ୍କର ଜୀବିକା ନିର୍ବାହ କରିବାର ଅଧିକାର ପ୍ରଦାନ କରିବା ପାଇଁ । କେନ୍ଦ୍ରମନ୍ତ୍ରୀ ଅରୁଣ ସୌରୀ ବିବୃତି ଦେଲେ, ପଞ୍ଚମ ସୂଚୀ ମଧ୍ୟ ବଦଳାଇଦେବେ । ମାନବ୍ୟର ରାଷ୍ଟ୍ରପତି ଶତ ଧନ୍ୟବାଦର ପ୍ରାପ୍ତ ଯେ ସମତା ରାୟ ଅନୁସାରେ ଅଣଆଦିବାସୀମାନଙ୍କ ଜମି ହସ୍ତାନ୍ତର ଉପରେ ନିଷେଧାଜ୍ଞା ପାଇଁ ମତ ପ୍ରକାଶ କରିଛନ୍ତି ।

ସୁପ୍ରିମକୋର୍ଟର ବିଚାରପତି ଜଷ୍ଟିସ ରାମସ୍ୱାମୀ ତାଙ୍କ ରାୟରେ ଆଦିବାସୀଙ୍କ ଜମି ଅଣଆଦିବାସୀଙ୍କୁ ହସ୍ତାନ୍ତର କରାଯାଇପାରିବ ନାହିଁ ବୋଲି ସ୍ପଷ୍ଟ ଭାବରେ କହିଛନ୍ତି । ଶ୍ରୀ ସୌରି କିନ୍ତୁ କହିଛନ୍ତି ଯେ ଏହି ମାମଲାରେ ସରକାର ପକ୍ଷଭୁକ୍ତ ହେବେ ।

ଉଦାରୀକରଣର କୁପ୍ରଭାବ ପଚାରୁଛ, ଶୁଣ । ବେକାରମାନଙ୍କୁ କାମ ଦେବା ସାମ୍ବିଧାନିକ ଅଧିକାର, ଏକ ମଙ୍ଗଳକର ରାଷ୍ଟ୍ରର କର୍ତ୍ତବ୍ୟ, କିନ୍ତୁ ବିଶ୍ୱବ୍ୟାଙ୍କ କହିଛି ଏହା କରିପାରିବନି । ବେକାରଙ୍କୁ କାମ ଦେବା ସରକାରଙ୍କ କର୍ତ୍ତବ୍ୟ ନୁହେଁ ବୋଲି ବିଶ୍ୱବ୍ୟାଙ୍କ ସରକାରଙ୍କୁ ପରାମର୍ଶ ଦେଇଛି ଓ ସରକାର ମଧ୍ୟ ସେହି ଆଦର୍ଶରେ କାର୍ଯ୍ୟ କରୁଛନ୍ତି ।

ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ପ୍ରଭାବ ଏପରି ପ୍ରସାରିତ ହେଲାଣି ଯେ ରାୟଗଡ଼ାରେ ଏବେ ଚୀନର ଚାଉଳ, ସାଇକେଲ ଓ ଆଟାଚି ଦେଖିବାକୁ ମିଳୁଛି । ଆମର ଘରୋଇ କ୍ଷୁଦ୍ର ଶିଳ୍ପଗୁଡ଼ିକ ଧ୍ୱଂସ ହେଉଛି । ଗୋଟିଏ ବହୁରାଷ୍ଟ୍ରୀୟ କମ୍ପାନୀ ଆସିଲେ ଶହ ଶହ କ୍ଷୁଦ୍ରଶିଳ୍ପ ଧ୍ୱଂସ ପାଉଛନ୍ତି । ଏହାର ପ୍ରତିବାଦ କରିବାପାଇଁ ଲୋକଶକ୍ତିର ଆବଶ୍ୟକତା ରହିଛି ।

ସରକାର ଓ କଂଗ୍ରେସଦଳ ଉଭୟ ମିଶି ବୀମା ଉଦ୍ୟୋଗକୁ ଘରୋଇକରଣ କଲେ । ଆମର ବୀମା ଉଦ୍ୟୋଗ ପୃଥିବୀରେ ନାଁ କରିଥିଲା । ଆମେରିକାର ବୀମା କମ୍ପାନୀମାନେ ତଳକୁ ତଳ ଯାଉଥିଲେ, କିନ୍ତୁ ଏମାନେ ଆମେରିକା କଥାରେ ପଡ଼ି ଆମର ବୀମା ଉଦ୍ୟୋଗକୁ ମଧ୍ୟ ଦେଇଦେଲେ ।

ଆଉ ଗୋଟିଏ କଥା କହିବି, ଦୁଃଖ ଲାଗୁଛି । ବିଲ୍ ଗେଟସ୍ ବୋଲି ଜଣେ ବ୍ୟକ୍ତି ଅଛନ୍ତି ଯିଏକି ଭ୍ରଷ୍ଟାଚାରକରି କୋଟିପତି ହୋଇଛନ୍ତି, ଆମେରିକାର କୋର୍ଟ ତାଙ୍କ ଉପରେ ଇଞ୍ଜକସନ ଦେଇଛି । ସେ ମହାଶୟ ଭାରତ ଆସିଲେ ଯେ ୧୦ ଜଣ ମୁଖ୍ୟମନ୍ତ୍ରୀ ତାଙ୍କୁ ଭେଟିବା ପାଇଁ ଧାଡ଼ି ଲଗାଇଲେ । ମତେ ଏହା ଦେଖି ଲାଜ ଲାଗିଲା ।

ସମାଜ ବର୍ତ୍ତମାନର ପରିସ୍ଥିତିରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ବିନା ସହାୟତାରେ ଆମର ଅର୍ଥ ବ୍ୟବସ୍ଥା ପରିଚାଳିତ ହୋଇପାରିବ ? ଆମର ବିପୁଳ ଋଣ ବୋଝ ରହିଛି ।

ରବି ରାୟ : ୯୧ ପୂର୍ବରୁ କ'ଣ ଥିଲା ? ଏବେ କ'ଣ ଓଲଟିଗଲା ? ବିଦେଶୀ ସାହାଯ୍ୟ ଆଣି ଦେଉଥିଲୁ ନ ଦେଉଥିଲୁ ସିଏତ ଚାଲିଥିଲା । ତୃତୀୟ ବିଶ୍ୱର ଦେଶମାନଙ୍କୁ ପରପଦାନତ କରିବା ତାଙ୍କର ଲକ୍ଷ୍ୟ । ମୋ ମତରେ ସୋଭିଏତ ସଂଘ ଖତମ୍ ହୋଇଯିବା ଭାରତ ପାଇଁ ଏକ ଅଭିଶାପ । ଆତ୍ମନିର୍ଭରଶୀଳ ହେବା ତ ସମାଜବାଦର ଲକ୍ଷ୍ୟ । ମାତ୍ର ୧୯୯୧ରେ ଆମେ ତାକୁ ଖତମ କଲୁ । ଏବେ ଆମେତ ନିଜକୁ ବିକ୍ରି କରିଚାଲିଛୁ । ଆତ୍ମନିର୍ଭରଶୀଳ ହେବୁ କିପରି ? ସେମାନଙ୍କ କଥା ନ ମାନିଲେ ଏବେ ଦଣ୍ଡ ଭୋଗିବାକୁ ହେବ । ଆମେରିକା ଗୋଟିଏ ସମୟରେ ଆମକୁ ସୁପର - ୩୦୧ ଆଇନର ଧମକ ଦେଉଥିଲା । ସରକାର ଏହାକୁ ଡରି ଡରି ଚାଲୁଥିଲେ । ଏବେ ସରକାର ତାଙ୍କ ସହ ଲିଖିତ ଚୁକ୍ତି କରିଛନ୍ତି । ଅଙ୍ଗୀକାର ଦେଇଛନ୍ତି । ଏ ସରକାରତ ଗଲା । ପୂର୍ବ ସରକାରର ମନ୍ତ୍ରୀ ଚିଦାମ୍ବରମ ମଧ୍ୟ ତାଙ୍କର ଆଜ୍ଞା ବାହକ ଥିଲେ ।

ସମାଜ : ଏହାର ବିକଳ୍ପ କ'ଣ ?

ରବି ରାୟ : ଏତେ ଭାଣ୍ଡାମି ଯେ ସମସ୍ତେ ତାହାକୁ କାର୍ଯ୍ୟକାରୀ କରିବେ । ନିର୍ବାଚନ ଇସ୍ତାହାର ଗୋଟିଏ, କାମ ଆଉଗୋଟିଏ ।

ସମାଜ : ଏହାର ଅନ୍ତିମ ପରିଣତି କ'ଣ ହେବ ବୋଲି ଆଶଙ୍କା କରୁଛନ୍ତି ?

ରବି ରାୟ : ଏହାର ଅନ୍ତିମ ପରିଣତି ହେଉଛି, ମୁଁ କହିବି ବେଙ୍ଗଲ ଦୁର୍ଭିକ୍ଷରେ ୩୦ ଲକ୍ଷ ଲୋକ କଲିକତାର ଗଳିକନ୍ଦିରେ ମଲେ । ଏବେ ଲୋକେ ଆତ୍ମହତ୍ୟା କରିବାକୁ ବାଧ ହେବେ । ଦୁଃଖର କଥା କେତେକ ମାତୃଭାଷା କାଗଜକୁ ଛାଡ଼ିଦେଲେ ଇଂରେଜ ଖବରକାଗଜ ଓ ଉଚ୍ଚମଧ୍ୟବିତ୍ତ ଲୋକେ ସର୍ବାନ୍ତକରଣରେ ଉଦାରୀକରଣକୁ ସ୍ୱୀକାର କରିନେଲେଣି । ଏ ପରିସ୍ଥିତିରେ ଆମେ ନିଜକୁ ଲଢ଼ିବା ପାଇଁ କିପରି ପ୍ରସ୍ତୁତ କରିବା ?

ସମାଜ : କେନ୍ଦ୍ରରେ ୧୩ଟି ଦଳକୁ ନେଇ ସରକାର ଚାଲିଛି । ତୃଣମୂଳ, ତେଲୁଗୁଦେଶମ ଭଳି ଦଳ ରହିଛନ୍ତି । କଂଗ୍ରେସ ଓ କମ୍ୟୁନିଷ୍ଟ ଦଳ ମଧ ରହିଛନ୍ତି, କିନ୍ତୁ ଉଦାରୀକରଣକୁ ସମସ୍ତେ ଗ୍ରହଣ କରିନେଲା ପରି ମନେ ହେଉଛି ।

ରବି ରାୟ : ନାଁ, କମ୍ୟୁନିଷ୍ଟ କିଛି ବିରୋଧ କରୁଛନ୍ତି, ସୋସାଲିଷ୍ଟମାନଙ୍କରତ ଆଉ ସତ୍ତା ନାହିଁ ।

ସମାଜ : ବିଦେଶୀ କମ୍ପାନୀ ଆସିଲେ ପ୍ରତିଯୋଗିତା ହେବ ଏବଂ ଗୁଣରମାନ ବୃଦ୍ଧି ପାଇବ ବୋଲି କୁହାଯାଉଛି ।

ରବି ରାୟ : ନା, ଏହା ପୁଞ୍ଜିବାଦର ପ୍ରଥମ କଥା । ଆମେ ଦେଶର ସମ୍ବିଧାନ ଓ ଡାଇରେକ୍ଟିଭ ଅଫ୍ ପ୍ରିନସିପ୍ଲସକୁ ମାନିବା କି ନାହିଁ ? ୧୯୭୧ ମସିହାର ପେଟେଣ୍ଟ ଆଇନକୁ ବଦଳାଇବାରୁ ଜୀବନରକ୍ଷାକାରୀ ଔଷଧଗୁଡ଼ିକର ମୂଲ୍ୟ ଏବେ କେତେ ବଢ଼ିଗଲା ତାହା ଅଙ୍କେ ନିଭାଉଥିବେ ।

ସମାଜ : ଆପଣଙ୍କର ବର୍ତ୍ତମାନ ଯୋଜନା କ'ଣ ?

ରବି ରାୟ : ଲୋକଶକ୍ତି ଅଭିଯାନରେ କୁଳଦୀପ ନାୟର, ଜଷ୍ଟିସ ଆୟାର ଏସମସ୍ତଙ୍କ ସହ ମିଶି କାମ ଚାଲିଛି । ଏ ଧରଣର ଆନ୍ଦୋଳନକୁ ଆଗେଇ ନେବାକୁ ହେବ । ଯୁବକ ଓ ବୁଦ୍ଧିଜୀବୀମାନଙ୍କ ନିକଟରେ ପହଞ୍ଚି ଜାଗରଣ ସୃଷ୍ଟି କରିବାକୁ ହେବ । ଭୋଟ ରାଜନୀତିରେ କିଛି ମାନେ ନାହିଁ, ଯେତେବେଳେ ଦେଶର ସାର୍ବଭୌମତ୍ୱ ନାହିଁ ଜାତୀୟ ଆନ୍ଦୋଳନବେଳେ ଭୋଟ ରାଜନୀତି କଥା ଧରି ନଥିଲୁ । ଏହାଠାରୁ ଆଉ କଣ ମହତ୍ତର କାମ ହୋଇପାରେ ? ଏଣୁ ଭୋଟ ରାଜନୀତି କଥା ଛାଡ଼ ।

ସମାଜ : ତାମାନେ ଆଉ ନିର୍ବାଚନ ଲଢ଼ିବେ ନାହିଁ ?

ରବି ରାୟ : ପଞ୍ଚାନବେ ପରେ ମୁଁ ଲଢ଼ିନାହିଁ, ସଂସଦୀୟ ଗଣତନ୍ତ୍ରରେ ମୁଁ ବିଶ୍ୱାସୀ । ରାଷ୍ଟ୍ରପତି ଶାସନର ଘୋର ବିରୋଧୀ । ଅନ୍ୟାୟ ବିରୋଧରେ ହିଂସାର ଆଶ୍ରୟ ନ ନେଇ ସତ୍ୟାଗ୍ରହ କରିବା, ସଂଗଠନ କରିବା ମୋର ଲକ୍ଷ୍ୟ । ନିର୍ବାଚନଟା ଆମ ଦୃଷ୍ଟିରେ ତୃତୀୟ । ନିର୍ବାଚନ ନ ଲଢ଼ିଲେ ଜୀବନ ଯେ ଦୁର୍ବିସହ ହୋଇଗଲା ଏହା ଆମ ବିଚାରରେ ଠିକ୍ ନୁହେଁ । ସଂସଦରେ ଲକ୍ଷେ ଟଙ୍କା ପାଇବାକୁ ଏ ରାଜନୀତି ମୁଁ କରିବାକୁ ଚାହେଁ ନାହିଁ ।

ସମାଜ : କେନ୍ଦ୍ରରେ ଏକ ତୃତୀୟ ଶକ୍ତିର ଭବିଷ୍ୟତ କ'ଣ ?

ରବି ରାୟ : ମିଳିତ ସାମ୍ମୁଖ୍ୟ ଭାଙ୍ଗିଯିବା ପରେ ଜ୍ୟୋତିବାବୁଙ୍କ ନେତୃତ୍ୱରେ ଏକ କମିଟି ଗଠନ କରିଛନ୍ତି । ଉତ୍ତରପ୍ରଦେଶ ନିର୍ବାଚନ ପରେ ତୃତୀୟ ଶକ୍ତି ଏକ ନିର୍ଦ୍ଦିଷ୍ଟ ରୂପ ନେଇପାରେ ବୋଲି ସେମାନେ ମନେ କରୁଛନ୍ତି ।

ସମାଜ : ଗୃହରେ ତାଙ୍କର କାର୍ଯ୍ୟପାଇଁ ଜଣେ ସାଂସଦ ଦୋଷୀ ନୁହଁନ୍ତି ବୋଲି ସୁପ୍ରିମକୋର୍ଟ ଯେଉଁ ରାୟ ଦେଇଛନ୍ତି, ସେ ସମ୍ପର୍କରେ ଆପଣଙ୍କ ମନ୍ତବ୍ୟ କ'ଣ ?

ରବି ରାୟ : ସୁପ୍ରିମକୋର୍ଟ ଯେଉଁ ରାୟ ଦେଇଛନ୍ତି ତାହା ବଦଳାଇବା ପାଇଁ ସରକାର ନିବେଦନ କରିବା ଉଚିତ୍ । କଲେ ଭଲ ହୁଅନ୍ତା ।

ସମାଜ : ରାଜନୀତିରେ ଦୁର୍ନୀତି ଓ ଅପରାଧୀକରଣର ନିରାକରଣ କିପରି ସମ୍ଭବ ହେବ ?

ରବି ରାୟ : ଦେଖ, ଭୋରା କମିଟି ରିପୋର୍ଟ ଜାଣିଥିବ । ଏହି ଭୋରା ମୁଁ ସ୍ୱାସ୍ଥ୍ୟମନ୍ତ୍ରୀ ଥିବାବେଳେ ସେ ମୋର ସଚିବ ଥିଲେ । ସେ ତାଙ୍କର ଯେଉଁ ରିପୋର୍ଟ ଦେଇଛନ୍ତି ସେଥିରେ ରାଜନୀତିର ଅପରାଧକରଣ, ଅପରାଧୀକରଣର ରାଜନୀତି, କୋର୍ଟମାନେ ମଧ୍ୟ ଏପ୍ରକାର କାର୍ଯ୍ୟରୁ ମୁକ୍ତ ନାହାନ୍ତି ବୋଲି ଉଲ୍ଲେଖ କରିଛନ୍ତି । କେନ୍ଦ୍ର ସରକାର ସିଭିସିଙ୍କ ବିରୋଧ ସତ୍ତ୍ୱେ କଷ୍ଟମ୍ସ ବିଭାଗର ଅଧକ୍ଷ ପଦରେ ବର୍ମା ସାହେବଙ୍କୁ ନିଯୁକ୍ତ କରିଥିଲେ । ସେ କୋଟି କୋଟି ଟଙ୍କା ଖାଇ ଏବେ ଜେଲ୍ ଯାଇଛନ୍ତି । ଉତ୍ତରପ୍ରଦେଶର ରାଜନାଥ ସିଂ ମନ୍ତ୍ରିମଣ୍ଡଳରେ ଅତିକମରେ ୨୦ ଜଣ ହତ୍ୟାକାରୀ, ଚୋର ଓ ମାଫିଆ ଅଛନ୍ତି ।

ମୁଁ ଓଡ଼ିଶା କଥା କହିବି, ୩ ଜଣ ମନ୍ତ୍ରୀ ଗଲେ ଭଲ ହେଲା । ଲୋକେ ଖୁସୀ ହେଲେ, ତେବେ ଯେଉଁମାନେ ରହିଗଲେ, ଯେଉଁମାନେ ଅଛନ୍ତି, ତାଙ୍କ ବିଷୟରେ କ'ଣ ? ସେ ସମସ୍ତେ ସଚ୍ଚୋଟ ? ତାଙ୍କ ବିରୋଧରେ ଅଭିଯୋଗ ନାହିଁ ? ବର୍ତ୍ତମାନ ସୁଦ୍ଧା ୧୯୨୩ ମସିହାର ସରକାରୀ ଗୋପନୀୟତା ଆଇନ ଆମଦେଶରେ ପ୍ରଚଳିତ ଅଛି । ଏହାର ଆଳରେ ସରକାର ଆମକୁ ସୂଚନା ଦେବେ ନାହିଁ । ରାଜନୈତିକଦଳମାନେ ସହି ସଳାସୂତୁରା ହୋଇ କାମ କରୁଛନ୍ତି । ୨୫ ବର୍ଷ ହେଲାଣି, ସଂସଦରେ ଲୋକପାଳ ବିଲ ଗୃହୀତ ହୋଇପାରୁ ନାହିଁ । ଓଡ଼ିଶାରେ ସୂଚନା ଅଧିକାର ବିଷୟରେ କେବେ ବି ଚିନ୍ତା କରିନାହାନ୍ତି । ଏଣୁ ଭ୍ରଷ୍ଟାଚାରୀଙ୍କୁ ହଟାଇବା କଥା ଅଳୀକ, ଅର୍ଥହୀନ ।

ଆଉ ଗୋଟିଏ କଥା ମନେ ପଡୁଛି । ମୁଁ ବାଚସ୍ପତି ଥିବାବେଳେ ରାଜୀବ ଗାନ୍ଧି ଦିନେ ମୋ ଚାୟରକୁ ଆସିଥିଲେ । କଥା ପ୍ରସଙ୍ଗରେ ମୁଁ କହିଲି, ଆପଣ ଗୋଟିଏ ଭଲ ବିବୃତି ଦେଇଛନ୍ତି ଯେ ଉନ୍ନୟନମୂଳକ କାର୍ଯ୍ୟବାବଦକୁ ଯାହା ଅର୍ଥ ଯାଉଛି ସେଥିରୁ ୮୫ ଭାଗ ଆତ୍ମସାତ ହେଉଛି ଓ ମାତ୍ର ୧୫ ଭାଗ ହିତାଧିକାରୀ ପାଉଛନ୍ତି । ଓଡ଼ିଶା, ବିହାର ଓ ମଧ୍ୟପ୍ରଦେଶ ସମ୍ପର୍କରେ ମୋର ଟିକିଏ ପ୍ରତ୍ୟକ୍ଷ ଧାରଣା ରହିଛି । ମୁଁ କହିବି ଏ ସବୁରାଜ୍ୟରେ ମାତ୍ର ୫ ପ୍ରତିଶତ ଅର୍ଥ ଲୋକଙ୍କ ନିକଟରେ ପହଞ୍ଚୁଛି । ରାଜୀବ ମୋ ହାତଧରି ପକାଇ କହିଲେ ଆପଣ ଠିକ୍ କହୁଛନ୍ତି ।

ଭ୍ରଷ୍ଟାଚାର ତାର ଲେଲିହାନ ଜିହ୍ୱାକୁ ଆହୁରି ମେଲାଇ ବସିଛି ଏ ଦେଶକୁ ଗ୍ରାସ କରିବା ପାଇଁ । ତେଣୁ ସେମାନେ କ'ଣ ଦୁର୍ନୀତି ଦୂର କରିବେ ! ରାଜନୈତିକ ଦଳମାନେ

ସୈନିକ ହୋଇଗଲେଣି । ସୂଚନା ଅଧିକାର ବିଲ ନ ଆଣିଲେ ଦୁର୍ନୀତି ବିରୋଧରେ ଲଢ଼େଇରୁ ସୁଫଳ ମିଳିବ ନାହିଁ ।

ସମାଜ : ବର୍ତ୍ତମାନର କେନ୍ଦ୍ର ସରକାରର ନେତୃତ୍ୱକୁ ଦୁର୍ନୀତିଗ୍ରସ୍ତ କୁହାଯିବ କି ?

ରବି ରାୟ : ସାଧୁ ସଚ୍ଚୋଟର ସଂଜ୍ଞା କ'ଣ ? ପଇସା ନ ଖାଇବା ଏକ ଭଲଗୁଣ । ସେ ଧନ୍ୟବାଦର ପାତ୍ର, କିନ୍ତୁ ଆମ ଦେଶକୁ ପରପଦାନତ କରିବା ପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା ଯିଏ କରୁଛନ୍ତି ଆମେ ତାହାଙ୍କୁ କିପରି ସାଧୁ କହିବା ? ନିର୍ବାଚନ କମିଶନ ଏବେ ଏକ ସର୍ଭେ କରିଛନ୍ତି, ଏଥିରେ ଲୋକସଭାରେ ମାଫିଆ ପୃଷ୍ଠଭୂମିଥିବା ୪୦ ଜଣ ସଦସ୍ୟ, ବିଧାନସଭାମାନଙ୍କରେ ୭୦୦ ଜଣ ସଦସ୍ୟ ରହିଛନ୍ତି ।

ସମାଜ : ସାଂସଦମାନଙ୍କ ବେତନ ଓ ଭତ୍ତା ବୃଦ୍ଧି ପାଇଁ ଯେଉଁ ଯେଉଁ ବିଲ୍ ଗୃହୀତ ହୋଇଛି ତାହା ବିରୋଧରେ ପ୍ରବଳ ଜନମତ ପ୍ରକାଶ ପାଉଛି । ରାଷ୍ଟ୍ରପତି ଚାହିଁଲେ ଏହି ବିଲ୍‌କୁ ନାମଞ୍ଜୁର କରିପାରିବେ ?

ରବି ରାୟ : ହଁ, ରାଷ୍ଟ୍ରପତି ଚାହିଁଲେ ଏହାକୁ ଫେରାଇଦେଇପାରିବେ ସେ କ୍ଷମତା ତାଙ୍କର ରହିଛି, କିନ୍ତୁ ତାହା ସେ କରିବେ ନାହିଁ । ମୁଁ ମଧ ତାଙ୍କୁ ଅନୁରୋଧ କରିବିନାହିଁ । ସଂସଦରେ ତ ଏହା ସର୍ବସମ୍ମତ ମତରେ ଗୃହୀତ ହୋଇଛି ।

ସମାଜ : ଜୟଲଳିତାଙ୍କ ନିଯୁକ୍ତି ଓ ବହିଷ୍କାର ମାମଲା ନେଇ ଆପଣଙ୍କ ମତ କ'ଣ ?

ରବି ରାୟ : ମୋର ମନ ଖୁସି ହୋଇଗଲା । ବେଳେବେଳେ ବିଚାର ବିଭାଗ ମନ ଖୁସି କରିଦିଏ । ସମ୍ବିଧାନ ସର୍ବୋପରି, ମୁଁ ଏଥିରେ ବହୁତ ଖୁସି । ଏହି ପ୍ରସଙ୍ଗରେ ଏକ ଜନସ୍ୱାର୍ଥ ମାମଲା ଉପରେ ସର୍ବୋଚ୍ଚ ନ୍ୟାୟାଳୟ ଫଇସଲା କଲେ, କେନ୍ଦ୍ର ସରକାର ନିଜ ଆଡୁ କୌଣସି ପଦକ୍ଷେପ ନେଲେ ନାହିଁ ।

ସମାଜ : କାଶୀପୁରରେ ରାଜ୍ୟ ସରକାର ଓ କେନ୍ଦ୍ର ସରକାରଙ୍କ ସ୍ୱତନ୍ତ୍ର ଯୋଜନା ମାଧ୍ୟମରେ ବିପୁଳ ଅର୍ଥ ଖର୍ଚ୍ଚ ହୋଇଛି, ସେ ଅଞ୍ଚଳରେ ଏନଜିଓମାନେ ମଧ କାର୍ଯ୍ୟ କରୁଛନ୍ତି ତଥାପି ବାସ୍ତବ ଚିତ୍ରରେ ପରିବର୍ତ୍ତନ ଘଟୁନାହିଁ କାହିଁକି ?

ରବି ରାୟ : ଆହୁରି ଖରାପ ହୋଇଯିବ, ଜମା ବଦଳିବ ନାହିଁ ଯେ ପର୍ଯ୍ୟନ୍ତ କେନ୍ଦ୍ର ରାଜ୍ୟରେ ଦଳମାନେ ଉଦାରୀକରଣ ନୀତିର ପ୍ରଥମ ସମର୍ଥକ ହୋଇ ରହିଥିବେ । କାଶୀପୁର କାଶୀପୁର ହୋଇ ଚାଲିଥିବ । । ଏନଜିଓମାନେ ସ୍ୱେଚ୍ଛାସେବୀ, ସେମାନେ କ'ଣ ବେଶି କରିପାରିବେ ! ସରକାର ଯେଉଁ ଆନ୍ତର୍ଜାତିକ ସହାୟତା ପାଉଲେ ତାହା କଣ କଲେ ? କାଶୀପୁର କଥା ଛାଡ଼, ବ୍ରହ୍ମଗିରିରେ ବଢ଼ି ଚାଲିଲା ପରେ ମୁଁ ଦେଖିଲି ଲୋକ ଗେଣ୍ଡା ବିକି ଚଳୁଛନ୍ତି । ଗେଣ୍ଡା ସରିଲା ପରେ ସେମାନଙ୍କ ଅବସ୍ଥା କ'ଣ ହେବ ? ସମସ୍ୟା କେବଳ କାଶୀପୁରର ନୁହେଁ, ଏସବୁ ଉଦାରୀକରଣର କୁଫଳ । ଆମେ ଗାନ୍ଧିଙ୍କୁ ତ୍ୟାଗକଲୁ ଯିଏ ଆମର ଖ୍ୟାତି ହୋଇଥାନ୍ତେ ଓ ଆମେ ପାଶ୍ଚାତ୍ୟମୁଖୀ ହେଲୁ । ପରିଣତି ଆଉ କିଏ ଭୋଗିବ ? ଦୁର୍ନୀତିର ଚରମ ପରିଣତି ହେଉଛି କାଶୀପୁର ।

ସମାଜ : ଆପଣ ବିଜୁବାବୁଙ୍କ ଘନିଷ୍ଠ ସହଯୋଗୀ ଥିଲେ ? ବର୍ତ୍ତମାନର ନବୀନ ସରକାରର କାର୍ଯ୍ୟଦକ୍ଷତା ସମ୍ପର୍କରେ ଆପଣଙ୍କ ମନ୍ତବ୍ୟ କ'ଣ ?

ରବି ରାୟ : ଏମିତି କିଛି କାର୍ଯ୍ୟ କରିନାହାନ୍ତି ବା ମନ୍ତବ୍ୟ ଦେଲା ଭଳି କାର୍ଯ୍ୟ ହୋଇନାହିଁ, ଆଉ ମନ୍ତବ୍ୟ କ'ଣ ଦେବି ? ପୂର୍ବ ସରକାର ତୁଳନାରେ ମଧ୍ୟ ଏହାଙ୍କର କିଛି ପରିବର୍ତ୍ତନ ହୋଇନାହିଁ । ନବୀନଙ୍କ ଦଳ ଏକ ରାଜ୍ୟସ୍ତରୀୟ ଦଳ, ବଡ଼ଦଳ ବିଜେପି ସହିତ ମେଣ୍ଟ କରିଛି । ବିଜେପିର ସବୁଥିରେ ସେ ରାଜି । ଉଦାରୀକରଣ ପାଇଁ ସେମିନାର କଲେ, ଆଲୋଚକଙ୍କୁ ବିମାନଭଡ଼ା ଦେଇ ଆଣିଲେ । ଓଡ଼ିଶାଭଳି ଦରିଦ୍ର ରାଜ୍ୟରେ ସେମାନେ ବିକାଶର ଏପରି ଚିନ୍ତା କରୁଛନ୍ତି । ବିଜେପି ସରକାରଙ୍କ ସବୁ ଅପକର୍ମ ପାଇଁ ଏମାନେ ମଧ୍ୟ ଭାଗୀଦାର ।





କଟକଠାରେ ନବକୃଷ୍ଣ ଚୌଧୁରୀ ଶତବାର୍ଷିକୀ ଉତ୍ସବରେ ପ୍ରଦୀପ ପ୍ରଜ୍ଜ୍ୱଳନ କରୁଛନ୍ତି

# ମାଟିର ରବି - ରବି ରାୟ

(ପର୍ଯ୍ୟବେକ୍ଷକ ସାକ୍ଷାତକାର, ପ୍ରକାଶିତ : ୨୫.୮.୨୦୦୧)

ସମାଜବାଦୀ ଚିନ୍ତାଧାରା ଓ ସମତାଭିତ୍ତିକ ସମାଜ ପ୍ରତିଷ୍ଠାରେ ଘୋର ବିଶ୍ୱାସୀ ଶ୍ରୀ ରବି ରାୟ ଜଣେ ସଫଳ ରାଜନୀତିଜ୍ଞ, ଆଦର୍ଶ ସାଂସଦ, ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ସଂସଦୀୟ ଦଳର ନେତା, ଦକ୍ଷ କେନ୍ଦ୍ରମନ୍ତ୍ରୀ ଓ ଲୋକସଭାର ବାଚସ୍ପତି ଭାବରେ ସଂସଦୀୟ ଗଣତନ୍ତ୍ରର ଗୌରବମୟ ପରମ୍ପରା ପାଇଁ ବହୁ ନଜିର୍ ଦେଖାଇ ଯାଇଛନ୍ତି । ରାଜନୀତିରେ ଦୁର୍ନୀତି, ଭ୍ରଷ୍ଟାଚାର, ଅପରାଧପ୍ରବଣତା ଓ ସ୍ୱାର୍ଥସର୍ବସ୍ୱ ଲୋକବିରୋଧୀ ଚିନ୍ତାଧାରାର ତୀବ୍ର ବିରୋଧୀ ଶ୍ରୀ ରାୟ ୧୯୯୬ରୁ ଭୋଟ ରାଜନୀତିକୁ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରି 'ଲୋକଶକ୍ତି ଅଭିଯାନ' ମାଧ୍ୟମରେ ଲୋକମାନଙ୍କୁ ସଂଗଠିତ କରି ଉଚ୍ଚସ୍ତରୀୟ ଭ୍ରଷ୍ଟାଚାର, ଭୋଗବାଦ ଓ ଅତ୍ୟଧିକ କେନ୍ଦ୍ରୀକରଣ ବିରୋଧରେ ସାରା ଭାରତବର୍ଷରେ ଏକ ସଂଗଠିତ ଜନଆନ୍ଦୋଳନ ପାଇଁ ଚେଷ୍ଟିତ ଅଛନ୍ତି । ଗାନ୍ଧୀ, ଲୋହିଆ ଓ ଜୟପ୍ରକାଶଙ୍କ ବିଚାରର ସମ୍ପୂର୍ଣ୍ଣ ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିବା ଏହି ସଂଗ୍ରାମୀ ଜଣକ ରାଜନେତା ଭାବେ କମ୍ ବରଂ 'ଲୋକନେତା' ଭାବେ ବେଶୀ ସମ୍ମାନର ଅଧିକାରୀ । ଏହି ମହାନ୍ ଲୋକନେତାଙ୍କ ସମ୍ପର୍କରେ ସଚ୍ଚି ପଣ୍ଡାଙ୍କ ପ୍ରତିବେଦନ ...

ପର୍ଯ୍ୟବେକ୍ଷକ : ଭାରତରେ ଲୋକତନ୍ତ୍ର ପ୍ରତିଷ୍ଠା ହେବାର ଅର୍ଦ୍ଧଶତାବ୍ଦୀ ବିତିଗଲାଣି । ଲୋକତନ୍ତ୍ର ଆରମ୍ଭ ହେବା ସମୟରେ ଆପଣ ସମାଜବାଦୀ ଛାତ୍ର ଆନ୍ଦୋଳନ ସହିତ ସଂପୃକ୍ତ ଥିଲେ ଏବଂ ପରେ ସଂସଦୀୟ ରାଜନୀତିରେ ପ୍ରମୁଖ ଭୂମିକା ଗ୍ରହଣ କରିବା ସହିତ ସଂସଦୀୟ ବ୍ୟବସ୍ଥାର ସର୍ବୋଚ୍ଚ ଆସନ ମଧ୍ୟ ଅଳଙ୍କୃତ କରିଛନ୍ତି । ତେବେ ସେ ସମୟଠାରୁ ଏ ପର୍ଯ୍ୟନ୍ତ ଆମ ଲୋକତାନ୍ତ୍ରିକ ବ୍ୟବସ୍ଥାର ମୋଟାମୋଟି ସ୍ୱରୂପ କିଭଳି ଅଛି ଏବଂ ଆଉ ଅର୍ଦ୍ଧଶତାବ୍ଦୀ ଆଗକୁ ଏହାର ଭବିଷ୍ୟତ କିଭଳି ଥିବ ବୋଲି ଆପଣ ଅନୁମାନ କରୁଛନ୍ତି ?

ରବିରାୟ : ମୋର ଯେତେଦୂର ବିଶ୍ୱାସ ଭାରତବର୍ଷରେ ଗଣତନ୍ତ୍ର ଗୌତମ ବୁଦ୍ଧଙ୍କ ସମୟରୁ ହିଁ ରହି ଆସିଛି । ବୁଦ୍ଧଙ୍କର 'ସଂଘ' ଶବ୍ଦ - ଅର୍ଥର କାର୍ଯ୍ୟକାରିତା ହିଁ ଲୋକତନ୍ତ୍ର । ତେଣୁ ବର୍ତ୍ତମାନର ଗଣତନ୍ତ୍ର ବିଦେଶରୁ ଉଧାର ଆସିଛି ବୋଲି ଯାହା କୁହାଯାଉଛି, ମୁଁ ସେଥିରେ ଏକମତ ନୁହେଁ । ହଁ ଏହା ସତଯେ, ସଂସଦୀୟ ଗଣତନ୍ତ୍ର ଇଂଲଣ୍ଡରୁ ଉଧାର ଆସିଛି । କିନ୍ତୁ ଗଣତାନ୍ତ୍ରିକ ବ୍ୟବସ୍ଥା, ଗଣତାନ୍ତ୍ରିକ ମୂଲ୍ୟବୋଧ, ଯେଉଁଠିକି ସମସ୍ତେ ଏକାଠି ବସି ଗୋଟିଏ କଥା ଠିକ୍ କରିହେବ, ବିଚାର ଆଲୋଚନା କରିବେ ଏଇଟା ଆମର ବହୁତ ପୁରାତନ । ମୋ' ମତରେ ସାରା ବିଶ୍ୱରେ ଏବେ ଯେତେପ୍ରକାର ଶାସନ ପ୍ରଣାଳୀ ବା ବ୍ୟବସ୍ଥା ଅଛି କିମ୍ବା ଥିଲା ସେଥିମଧ୍ୟରୁ ଆମର ସଂସଦୀୟ ଗଣତନ୍ତ୍ର ହିଁ ସର୍ବୋତ୍କୃଷ୍ଟ, କିନ୍ତୁ ବର୍ତ୍ତମାନ ସଂସଦୀୟ ଆଚରଣରେ ଯେଉଁ ଦ୍ରୁତ ଅବନତି ଘଟୁଛି, ତାହା ହିଁ ଚିନ୍ତାର ବିଷୟ । କୌଣସି ରାଜନୈତିକ ଦଳ ବା ରାଜନୈତିକ ବ୍ୟକ୍ତିବିଶେଷ କାୟମନୋବାକ୍ୟରେ ସଂସଦୀୟ ପରମ୍ପରାକୁ ସମ୍ମାନ

ଦେବାକୁ ନାରାଜ । ଦୁର୍ନୀତି, ଭ୍ରଷ୍ଟାଚାର ଓ ରାଜନୀତିରେ ଅପରାଧୀମାନଙ୍କର ପ୍ରବେଶ ଏହି ବ୍ୟବସ୍ଥାକୁ ଧ୍ୱଂସ ଆଡ଼କୁ ଟାଣି ନେଉଛି ।

ଯେଉଁମାନେ ବିଶେଷ କରି ଭାଜପା, ଆର.ଏସ୍.ଏସ୍. ଦଳ ଓ ସଂଗଠନମାନେ ସଂସଦୀୟ ଲୋକତନ୍ତ୍ରକୁ ବିରୋଧ କରି, ଆମେରିକୀୟ ଢାଞ୍ଚାର ରାଷ୍ଟ୍ରପତି ପ୍ରଣାଳୀ ପାଇଁ ଦାବି କରୁଛନ୍ତି, ସେମାନେ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ହତ୍ୟା କରୁଛନ୍ତି । ଲୋକଶକ୍ତିକୁ ହତ୍ୟା କରୁଛନ୍ତି । ମୁଁ ଖୁବ୍ ଖୁସି ଯେ, ସମ୍ବିଧାନ ବଦଳେଇ ରାଷ୍ଟ୍ରପତି ଶାସନ ଜାରୀ କରିବା ଉଦ୍ଦେଶ୍ୟରେ ଯେଉଁ ଭେଙ୍କଟ ଚାଲିଆ କମିଟି ଭାଜପା ବସେଇଲେ, ସେ କମିଟି ଭାଜପାର ଦାବିକୁ ଅଗ୍ରାହ୍ୟ କରିଛନ୍ତି । ବିଜେପି ଯେଉଁ ଚକ୍ରାନ୍ତ କଲା ଯେ ସାରା ଶାସନ ବ୍ୟବସ୍ଥାକୁ ବଦଳେଇବେ ଏବଂ ଆମେରିକାର ରାଷ୍ଟ୍ରପତି ପଦ୍ଧତିକୁ ଏଠିକୁ ଆମଦାନୀ କରି ଆଣିବେ, ସେ କଥା ଫସର ଫାଟିଲା ।

ତେବେ ଏହା ଆଉ ଏକ ବିଷୟ ଯେ, ଯେଉଁଭଳି ଭାବେ ଆମେ ଚିନ୍ତା କରି ସଂସଦୀୟ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ପସନ୍ଦ କଲୁ, ତାହା ଆଜି ବହୁ ଭାବରେ ଆକ୍ରମିତ ଓ ସଂକ୍ରମିତ । ରାଜନୈତିକ ଦଳ ଓ ବ୍ୟକ୍ତିମାନେ ଯେଉଁଭଳି ଭାବେ ଏହାକୁ ଦୁର୍ବଳ କରୁଛନ୍ତି, ଏହାକୁ ରୋକିବାକୁ ହେଲେ ଲୋକଶକ୍ତିକୁ ଆଗେଇ ଆସିବାକୁ ପଡ଼ିବ । ଛାତ୍ରଶକ୍ତିକୁ ଆଗେଇ ଆସିବାକୁ ପଡ଼ିବ । ଏ ଦୃଷ୍ଟିରୁ ସଂସଦୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ଉପରେ ମୁଁ ପୂରା ଆଶାବାଦୀ, ଯାହା ଆଜି ହେଉଛି ଲୋକଶକ୍ତି ଜାଗ୍ରତ ହେଲେ ଏହାର ଭବିଷ୍ୟତ ଖୁବ୍ ଉଜ୍ଜ୍ୱଳ ହୋଇପାରିବ ।

ପର୍ଯ୍ୟବେକ୍ଷକ : କିନ୍ତୁ ସଂସଦୀୟ ଗଣତନ୍ତ୍ରର ମତାଧିକାର ବା ନିର୍ବାଚନୀ ଢାଞ୍ଚା ଉପରେ ଏକଦା ମହାତ୍ମାଗାନ୍ଧୀ, 'ବହୁମତର ଶାସନ ପଶୁବଳି' ବୋଲି କହିଥିଲେ ଏବଂ ଜୟପ୍ରକାଶ ମଧ ପ୍ରଚଳିତ ବହୁମତର ଗଣତନ୍ତ୍ରକୁ ଭିନ୍ନ ଭାବେ ଅପସନ୍ଦ କରୁଥିଲେ ।

ରବି ରାୟ : ମହାତ୍ମାଗାନ୍ଧୀ ବା ଜୟପ୍ରକାଶଙ୍କ ଗୋଟିଏ ବାକ୍ୟକୁ ନେଇ କୌଣସି ସିଦ୍ଧାନ୍ତରେ ପହଞ୍ଚିବା ଠିକ୍ ହେବ ନାହିଁ । ସେ କେଉଁ ପରିସ୍ଥିତିରେ ଏବଂ କେଉଁ ପ୍ରସଙ୍ଗରେ ଏକଥା କହିଥିଲେ, ତାକୁ ତର୍ଜମା କରିବାକୁ ହେବ । ଗାନ୍ଧିଜୀଙ୍କର ଗଣତନ୍ତ୍ର ଉପରେ ମତ ସମ୍ପୂର୍ଣ୍ଣ ସ୍ପଷ୍ଟ ଥିଲା । ମହାତ୍ମାଗାନ୍ଧୀଙ୍କର ଶେଷ ଇଚ୍ଛା ଯାହାକୁ ଲାଷ୍ଟ ଟେଷ୍ଟାମେଣ୍ଟ କୁହାଯାଏ, ସେ ସେଥିରେ ଚାହୁଁଥିଲେ ଯେ ଜାତୀୟ କଂଗ୍ରେସକୁ ଭାଙ୍ଗି ଲୋକସେବକ ସଂଘ ଗଢ଼ାଯାଉ ଏବଂ ସେ ମଧ ଏହାର ସମ୍ବିଧାନ ତିଆରି କରିଥିଲେ, କିନ୍ତୁ ତାହା ହେଲା ନାହିଁ । କଂଗ୍ରେସର କ୍ଷମତା ଲାଳସା ମହାତ୍ମା ଗାନ୍ଧୀଙ୍କ ଚିନ୍ତାଧାରାକୁ ଧୂଳିସାତ୍ କଲା । ଏଥିପାଇଁ ଗାନ୍ଧିଜୀ ମଧ ଖୁବ୍ ବିବ୍ରତ ଥିଲେ । ତେଣୁ ଯଦି ଆମେ ସେହି ଲାଷ୍ଟ ଟେଷ୍ଟାମେଣ୍ଟକୁ ପଢ଼ିବା, ସେଥିରେ ଦେଖିବା ଯେ ଦେଶ କାଳପାତ୍ରକୁ ଚାହିଁ ଦେଶକୁ ଏକ ସ୍ୱଚ୍ଛ ପ୍ରଶାସନ, ସ୍ୱଚ୍ଛ ଜନଆନ୍ଦୋଳନ କିଭଳି କରାଯାଇପାରିବ, ସେହି ଢାଞ୍ଚା, ସେ ତିଆରି କରିଥିଲେ । ମହାତ୍ମାଜୀଙ୍କର ଗଣତନ୍ତ୍ର ଉପରେ ଅତୁଟ ବିଶ୍ୱାସ ଥିଲା ଏବଂ ସେ ଗଣତନ୍ତ୍ର ହେଉଛି, ଆର୍ଥିକ, ସାମାଜିକ ଗଣତନ୍ତ୍ର । ଗାନ୍ଧୀଙ୍କର

ସମସ୍ତ ସାହିତ୍ୟ ଆମ ପାଖରେ ଅଛି । ସେଗୁଡ଼ିକର ସାରମର୍ମ ହେଉଛି କିଭଳି ଲୋକଶକ୍ତି ମାଧ୍ୟମରେ ଏକ ସୁସ୍ଥ ଗଣତନ୍ତ୍ର ପ୍ରତିଷ୍ଠା ହୋଇପାରିବ । କିନ୍ତୁ ଦୁଃଖର କଥା, ଆଜି ସାରା ବିଶ୍ୱ ଗାନ୍ଧୀ ନୀତି ଆଦର୍ଶକୁ ଅନ୍ୟାୟ ବିରୋଧରେ କାର୍ଯ୍ୟ କରିବା ପାଇଁ ସର୍ବଶ୍ରେଷ୍ଠ ମାର୍ଗ ଭାବେ ଗ୍ରହଣ କରୁଥିଲାବେଳେ, ଆମେ ତାଙ୍କ ପ୍ରତି ବିଶ୍ୱାସଘାତକତା କରି ଚାଲିଛୁ । ତେଣୁ ମୋର କହିବା କଥା ହେଉଛି ଯେ, ଦେଶ କାଳପାତ୍ରକୁ ଦୃଷ୍ଟିରେ ରଖି ଗାନ୍ଧୀଙ୍କୁ ନୂଆ ଭାବରେ ପଢ଼ାଯାଉ ଏବଂ ଗାନ୍ଧୀଙ୍କ ବିଚାର ଉପରେ ନୂଆ ଭାରତ ଗଢ଼ା ଯାଉ, ତାହା ହିଁ ଗଣତନ୍ତ୍ର । ମାତ୍ର ଗାନ୍ଧୀଙ୍କଠାରୁ ଜୟପ୍ରକାଶ ଓ ଲୋହିଆଙ୍କ ବିଚାରକୁ ଅଲଗା କରିବା ଚରମ ମୂର୍ଖାମୀ ।

ପର୍ଯ୍ୟବେକ୍ଷକ : ଡଃ ଲୋହିଆଙ୍କର ଆପଣ ଜଣେ ଦୃଢ଼ ସମର୍ଥକ ଏବଂ ତାଙ୍କରି ଆଦର୍ଶରେ ଖୁବ୍ ଅନୁପ୍ରାଣିତ । ତେବେ ଗାନ୍ଧୀ, ଜୟପ୍ରକାଶ ଓ ଲୋହିଆଙ୍କ ଭିତରେ ଥିବା ସମନ୍ୱିତ ବିଚାରଧାରା ଏବଂ ନୀତିଗତ ଐକ୍ୟଟି କ'ଣ ?

ରବି ରାୟ : ଗାନ୍ଧୀଙ୍କର ବୈପ୍ଳବିକ ଚିନ୍ତାଧାରା ସହ ଲୋହିଆ ଓ ଜୟପ୍ରକାଶଙ୍କର ଅଦ୍ଭୁତ ଧରଣର ସାମଞ୍ଜସ୍ୟ ଥିଲା । ଗାନ୍ଧୀ, ଲୋହିଆ ଓ ଜୟପ୍ରକାଶ ଏ ତିନିଜଣଙ୍କର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଦୃଷ୍ଟୀଭଙ୍ଗୀ ଏକ । ଲୋହିଆ ଓ ଜୟପ୍ରକାଶ ଉଭୟେ ଗାନ୍ଧିଜୀଙ୍କର ଯେତେ ନିକଟତର ଥିଲେ, ଜାତୀୟ କଂଗ୍ରେସର ଅନ୍ୟ ନେତାମାନେ ସେତେଦୂର ତାଙ୍କ ନିକଟତର ନଥିଲେ । ଗାନ୍ଧିଜୀଙ୍କ ଡାକରାରେ ଏ ଦୁଇ ନେତା ଭାରତ ଛାଡ଼ ଆନ୍ଦୋଳନର ନେତୃତ୍ୱ ସମ୍ଭାଳିଥିଲେ । ସେଇଥିପାଇଁ ସେତେବେଳେ ମୋ ପିଢ଼ୀର ଯୁବଶକ୍ତି ଏ ଦୁହିଁଙ୍କ ଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇଥିଲା । ଉଭୟେ ରାଜନୈତିକ ସ୍ୱାଧୀନତା ପାଖରେ ଅଟକି ଯାଇନଥିଲେ । ଲକ୍ଷ୍ୟ ଥିଲା - ଗାନ୍ଧିଜୀଙ୍କ ପରିକଳ୍ପିତ ସାମାଜିକ ଓ ଆର୍ଥିକ ସ୍ୱାଧୀନତାକୁ ଦେଶର ସବୁ ଜାତି, ଧର୍ମ, ବର୍ଗର ଲୋକଙ୍କ ପାଖରେ ସମାନ ଭାବରେ ପହଞ୍ଚାଇବା । କ୍ଷମତା ବିକେନ୍ଦ୍ରୀକରଣରେ ଓ ଲୋକଶକ୍ତିର ଉଦ୍ଭବ କିଭଳି ହେବ ସେଥିପାଇଁ ଗାନ୍ଧୀଙ୍କ ପରେ ଏ ଦୁହେଁ ସଦା ଚେଷ୍ଟା କରିଛନ୍ତି । ୧୯୪୫ ଠାରୁ କଂଗ୍ରେସର କ୍ଷମତାଲୋଭ ଆରମ୍ଭ ହେବା ସମୟରେ ଏ ତିନିଜଣ ହିଁ ଅସୁଖୀ ଥିଲେ ଏବଂ ବିଶେଷ କରି ଗାନ୍ଧୀଙ୍କ ମୃତ୍ୟୁ ପରେ ଏଇମାନେ ହିଁ ପ୍ରକୃତପକ୍ଷେ ଗାନ୍ଧିଜୀଙ୍କ ପନ୍ଥାକୁ ଅନୁସରଣ କରିଥିଲେ । ମୁଁ ଏବେ ବି ଏହି ତିନିଜଣଙ୍କ ଉପରେ କୌଣସି ଗୋଟିଏ ବହିରୁ କିଛି ନ ପଢ଼ିଲେ ମୋତେ ରାତିରେ ନିଦ ହୁଏ ନାହିଁ । ମୁଁ ଏମାନଙ୍କୁ ଯେତେ ଅନୁଶୀଳନ କରୁଛି, ମୋର ଧାରଣା ସେତେ ଦୃଢ଼ୀଭୂତ ହେଉଛି ଯେ କେବଳ ଭାଷଣରେ ନୁହେଁ, କାୟ ମନୋବାକ୍ୟରେ, କର୍ମରେ ଯଦି ଏ ଦେଶର ରାଜନୈତିକ ନେତା ତଥା ଜନସାଧାରଣ ଏ ତିହ୍ନିଙ୍କୁ ମାନିନେବେ, ସେତିକିବେଳେ ହିଁ ଆମେ ପ୍ରକୃତ ସ୍ୱାଧୀନତା ପାଇପାରିବା ।

ପର୍ଯ୍ୟବେକ୍ଷକ : ନୀତି ଓ ଆଦର୍ଶକୁ ନେଇ ଅତୀତରେ ଆପଣ ବହୁ ପଦପଦବୀକୁ ଅସ୍ୱୀକାର କରିଛନ୍ତି, ଯେମିତିକି ଅତୀତରେ ବହୁ ରାଜ୍ୟର ରାଜ୍ୟପାଳ ହେବା ପାଇଁ ଆପଣଙ୍କ ନାମ ଚର୍ଚ୍ଚାକୁ ଆସିଥିଲା ଏବଂ ବିଶେଷ କରି ଆନ୍ଧ୍ରପ୍ରଦେଶ ଓ ଉତ୍ତର ପ୍ରଦେଶ ରାଜ୍ୟପାଳ ପଦବୀ

ଆପଣଙ୍କ ସ୍ୱୀକୃତି ଉପରେ ହିଁ ନିର୍ଭର କରୁଥିଲା । କିନ୍ତୁ ଆପଣ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ, ତେବେ ସାଂପ୍ରତିକ ବିଧିବ୍ୟବସ୍ଥା ଅନୁଯାୟୀ ରାଜ୍ୟପାଳ ପଦବୀର କାର୍ଯ୍ୟକାରିତାକୁ ନେଇ ଏବେ ଯେଉଁ ସନ୍ଦେହଜାତ ହୋଇଛି, ସେଥିପ୍ରତି ଏହା ଏକ ଆହ୍ୱାନ ଥିଲା କି ?

ରବି ରାୟ : (ହସି) ପ୍ରକୃତରେ ଏ ଯେଉଁ ପଦପଦବୀ କଥା ଉଠୁଛି, ଏହା ବିଷୟରେ କହିବାକୁ ଗଲେ, ଗୋଟିଏ କଥା ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ, ପଦପଦବୀର ଲାଳସା ମୋର କେବେ ନଥିଲା, ଏବେ ମଧ୍ୟ ନାହିଁ । ମୋ' ଭଳି ଜଣେ ସାଧାରଣ ବ୍ୟକ୍ତି, ସବୁବେଳେ ମୁଁ ନିଜକୁ ତର୍ଜମା କରେ, ମୁଁ ଯେଉଁ ଆଦର୍ଶରେ ବିଶ୍ୱାସ କରୁଛି, ସେ ଆଦର୍ଶକୁ ମୁଁ କେତେଦୂର କାର୍ଯ୍ୟକାରୀ କରୁଛି ! ମୁଁ ଆଦର୍ଶବାଦରେ ବିଶ୍ୱାସ କରେ । ଗଣତାନ୍ତ୍ରିକ ସମାଜବାଦରେ ବିଶ୍ୱାସ କରେ । ଏହା ବାଦ୍ ଆଉ ସବୁ କଥା ମୋ' ପାଇଁ ତୁଚ୍ଛ । ଆଉ ରହିଲା ରାଜ୍ୟପାଳ ହେବା କଥା । ଏ ବିଷୟରେ ମୁଁ ସମ୍ବିଧାନର ୩୫୬ ଧାରା କଥା କହିବି, ଯାହାବଳରେ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି କରାଯାଏ । ଗତ ୫୦ ବର୍ଷ ଧରି ଏହି ଧାରାର ଯେତେଥର ଖୋଲାଖୋଲି ଦୁରୁପଯୋଗ ଜବାହରଙ୍କ ଠାରୁ ଆରମ୍ଭ ହୋଇ ଏପର୍ଯ୍ୟନ୍ତ ଚାଲି ଆସିଛି ଏବଂ ରାଜ୍ୟପାଳମାନେ ଯେଉଁଭଳି ଭାବେ ପ୍ରଧାନମନ୍ତ୍ରୀଙ୍କ ଦରମାଖିଆ ଭୃତ୍ୟଭଳି ନିୟୋଜିତ ହୋଇଛନ୍ତି ସେ କଥା କହିଲେ ଗୋଟେ ବିରାଟ ପୋଥି ହେବ । ପ୍ରଥମେ ଏହି ପ୍ରକ୍ରିୟାର ଅୟମାରମ୍ଭ କଲେ ନେହେରୁ । ମାଡ୍ରାସରେ ଅଣ-କଂଗ୍ରେସ ସରକାରକୁ ଭାଙ୍ଗି ଏବଂ ଏହି ଧାରା ଇନ୍ଦିରା ଗାନ୍ଧୀ କଂଗ୍ରେସର ସଭାପତି ଥିଲାବେଳେ ଚାଲୁ ରହିଲା, ଯେତେବେଳେକି ବାପ ଝିଅ ଦୁଇଟି ମୁଖ୍ୟ ପଦବୀରେ । ଜଣେ କଂଗ୍ରେସ ସରକାରର ପ୍ରଧାନମନ୍ତ୍ରୀ ଏବଂ ଅନ୍ୟ ଜଣେ କଂଗ୍ରେସର ସଭାପତି । କେରଳରେ ପ୍ରଥମେ କମ୍ୟୁନିଷ୍ଟ ସରକାରଙ୍କୁ ଇନ୍ଦିରାଙ୍କ କଥାରେ ଜବାହାରଙ୍କ ନିର୍ଦ୍ଦେଶରେ ସେଠାକାର ରାଜ୍ୟପାଳ ଭାଙ୍ଗିଦେଲେ, ତେଣୁ ଏହାପରଠାରୁ ମୋଟ ୮୫ରୁ ଉର୍ଦ୍ଧ୍ୱବାର ଏହି ଧାରାର ଉଲ୍ଲଂଘନ ହେଲାଣି, କେବଳ ରାଜ୍ୟପାଳଙ୍କୁ ବ୍ୟବହାର କରି । ଏବେ ୩୫୬ ଧାରା ଖୁବ୍ ବିବାଦୀୟ ହୋଇପଡ଼ିଛି ।

ତେଣୁ ଲୋକମତକୁ, ସାମ୍ବିଧାନିକ ମୂଲ୍ୟବୋଧକୁ ଅବମାନନା କରି ଜବାହରଙ୍କ ଅମଳରୁ ଚାଲିଆସିଥିବା ଏହି ପ୍ରକ୍ରିୟାରେ ରାଜ୍ୟପାଳମାନଙ୍କ ଅଧିକାରକୁ ଯେଉଁଳି ଭାବରେ ବ୍ୟବହାର କରାଯାଇଛି, ତାକୁ ଦେଖିଲେ ଜଣାପଡିବ ଯେ, ରାଜ୍ୟର ସ୍ୱାୟତ୍ତ ଶାସନକୁ ସମ୍ବିଧାନରେ ଯେଉଁ ସ୍ଥାନ ଦିଆଯାଇଛି ତାକୁ କ୍ଷୁର୍ଣ୍ଣ କରିବା ପାଇଁ ରାଜ୍ୟପାଳମାନେ ହାତବାରିସୀ ହୋଇଆସିଛନ୍ତି । ପ୍ରଧାନମନ୍ତ୍ରୀମାନେ ସମ୍ବିଧାନ ପ୍ରତି ବିଶ୍ୱାସଘାତକତା କରି ଗଣତାନ୍ତ୍ରିକ ଶାସନ ପରିବର୍ତ୍ତେ ଗଭର୍ଣ୍ଣର ଶାସନ ଜାରି କରିଛନ୍ତି । ତେଣୁ ଏପରିସ୍ଥିତିରେ, ବ୍ୟକ୍ତିଗତ ଭାବେ ଗଭର୍ଣ୍ଣର ହେବା ମୋ' ଆଦର୍ଶ ବାହାରେ ।

ପର୍ଯ୍ୟବେକ୍ଷକ : ନବକୃଷ୍ଣ ଚୌଧୁରୀଙ୍କ ପରେ ରାଜ୍ୟପାଳ ପଦବୀ ପ୍ରତ୍ୟାଖ୍ୟାନ କରିବାରେ ଆପଣ ବୋଧହୁଏ ଦ୍ୱିତୀୟ ବ୍ୟକ୍ତି ?

ରବି ରାୟ : ଏ ହିସାବ ମୁଁ ଜାଣିନି, କିନ୍ତୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ନବବାବୁ ଯେତେବେଳେ ଅନୁଗୁଳ ଚାଲିଗଲେ, ସେହି ସମୟରେ ବନମାଳୀ ପଟ୍ଟନାୟକ କଂଗ୍ରେସର ନେତା ଥା'ନ୍ତି । ସେ ଥରେ ନବବାବୁଙ୍କୁ କହିଲେ ଯେ, ଆମେ ଜବାହାରଙ୍କୁ କହିବୁ ଆପଣ ଗଭର୍ଣ୍ଣର ହେବାକୁ ରାଜି ହୋଇଯାନ୍ତୁ । କିନ୍ତୁ ଏ କଥା ଶୁଣି ନବବାବୁ ବନମାଳୀଙ୍କୁ ଯେଉଁ ଗାଳି ଦେଲେ ଶେଷରେ ମାଳତୀ ଦେବୀ ଆସି ବନମାଳୀଙ୍କୁ ରକ୍ଷା କରିବାକୁ ପଡ଼ିଲା ଏବଂ ଏହି ଘଟଣା ପରେ ନବବାବୁଙ୍କ ପ୍ରତି ମୋର ସମ୍ମାନ ଖୁବ୍ ବଢ଼ି ଯାଇଥିଲା ।

ପର୍ଯ୍ୟବେକ୍ଷକ ଆପଣ ନବେଦଶକରୁ ଏପର୍ଯ୍ୟନ୍ତ ଉଦାରୀକରଣକୁ ବିରୋଧ କରି ଆସିଛନ୍ତି, ସେତେବେଳେ ଆପଣଙ୍କ ସହିତ ମୁକ୍ତ ବଜାର ଅର୍ଥନୀତି ଓ ଉଦାରୀକରଣକୁ ବିରୋଧ କରୁଥିବା ଦଳ ଏବଂ ବ୍ୟକ୍ତିମାନେ ଏବେ ଶାସନଗାଦିରେ ଅଛନ୍ତି । ଏବେ ଦେଶର ଭବିଷ୍ୟତ ....

ରବି ରାୟ : ଉଦାରୀକରଣ ଦ୍ୱାରା ଦେଶ ଧ୍ୱଂସ ହେବାକୁ ଯାଉଛି । ମୁଁ ଏଇଠି କହିଦେବାକୁ ଚାହେଁ ଯେ, ଉଦାରୀକରଣକୁ ଆମ ସରକାର ମାନି ନେବା ଫଳରେ ଆମେ ଆଜି ସଂପୂର୍ଣ୍ଣଭାବେ ଆମେରିକା ନେତୃତ୍ୱରେ ଚାଳିତ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ଆର୍ଥିକ ଦୃଷ୍ଟିରୁ ଗୋଲାମ ହୋଇସାରିଲେଣି । ଏ ଉଦାରୀକରଣର ଗୋଲାମୀ ଅର୍ଥନୀତି ୧୦୦ କୋଟି ଲୋକଙ୍କ ଭାତ ପତରରେ ଧୂଳି ଦେଇଦେଲାଣି । ୯୦ ଦଶକର କଂଗ୍ରେସ ଯେଉଁ ପାପ କରିଥିଲା, ବାଜପେୟୀ ସରକାର ସେ ପାପକୁ କାର୍ଯ୍ୟକାରୀ କରେଇବାର ଠିକା ନେଇଛି । ଦେଶର କୁଟୀରଶିଳ୍ପ ଓ ଚାଷ ଧ୍ୱଂସ ପାଇଗଲାଣି । ବେରୋଜଗାରୀ ହୁ-ହୁ ହୋଇ ବଢୁଛି । ଏବେ ଗୋଟିଏ ଖବରକାଗଜରେ ଓଡ଼ିଶାର ଜଣେ ଚାଷୀ ଆତ୍ମହତ୍ୟା କରିବା ଖବର ବାହାରିଛି । ଆଉ କ'ଣ ବାକି ରହିଗଲା ? କେବଳ ମାର୍କସବାଦୀଙ୍କୁ ଛାଡ଼ିଦେଲେ, ଦେଶର ଅନ୍ୟ ସବୁ ରାଜନୈତିକଦଳମାନେ ଉଦାରୀକରଣକୁ ମାନିନେଇ ଦେଶଟାକୁ ବିକ୍ରି କରିଦେବା ମତଲବରେ ଅଛନ୍ତି । ଦେଶର ଅନେକ ଶତ୍ରୁ ଅଛନ୍ତି । ତେବେ ସବୁଠାରୁ ବଡ଼ ଦୁଇଟା ଶତ୍ରୁକୁ ମୁଁ ଚିହ୍ନଟ କରିଛି । ସେ ହେଲା ସାଂପ୍ରଦାୟିକତା ଓ ଉଦାରୀକରଣ । ଦେଶର ମୁଖ୍ୟ ରାଜନୈତିକ ଦଳ କଂଗ୍ରେସ ଓ ଭାଜପା ଉଭୟେ ଏ ଦୁଇଟାକୁ କୋଳରେ ଧରିଛନ୍ତି, କିନ୍ତୁ ମୁଁ ଏ ଦେଶର ଭବିଷ୍ୟତ ସଂକ୍ରାନ୍ତରେ ଆଶାବାଦୀ । ମୁଁ ଖୁବ୍ ଆଶାବାଦୀ ଯେ, ଲୋକେ ଉଠିବେ ଏବଂ ଏଇ ରାକ୍ଷସମାନଙ୍କୁ ନିପାତ କରିବେ । ମୋର ନିଜର ମତ ହେଉଛି ଯଦି ଏ ଦେଶର ଯୁବଶକ୍ତି ଓ ଲୋକଶକ୍ତିର ଆସନ୍ତା ୫/୬ ବର୍ଷ ଭିତରେ ଅଭ୍ୟୁଦୟ ହୁଏ, ତେବେ ଏ ଦେଶର ମଙ୍ଗଳ ହେବ ।

ପର୍ଯ୍ୟବେକ୍ଷକ : ଆପଣ ଏବେ ସାମ୍ପ୍ରଦାୟିକତା କଥା କହିଲେ, ତେବେ ଗୁଜରାଟ ପ୍ରସଙ୍ଗରେ କ'ଣ କିଛି କହିବେ ?

ରବି ରାୟ : ଗୁଜରାଟ ଉପରେ ମୁଁ କ'ଣ ବା କହିବି ! ଦେଶରେ ଏକ ଫାସିଷ୍ଟ ସରକାର ଚାଲିଛି । ତେଣୁ ଏସବୁ ହେବ ୧୦୦୦ ଲୋକଙ୍କୁ ହତ୍ୟା କଲାପରେ ବି ଶହ ଶହ ଜନତାଙ୍କ

ଶବ ଉପରେ ଠିଆ ହୋଇ କହିବି, ଏହା ହେଉଛି ଗୋଟିଏ ସ୍ୱାଭାବିକ ପ୍ରତିକ୍ରିୟା । ଏ ଅଟଳ ବିହାରୀ ସରକାର ତାକୁ କ୍ଷମତାରେ ରଖିଲେ କେମିତି ? ଏହା ହେଉଛି ଏ ଦେଶର ୧୦୦ କୋଟି ଲୋକଙ୍କ ପାଇଁ ଚ୍ୟାଲେଞ୍ଜ । ଏ ଚ୍ୟାଲେଞ୍ଜକୁ ଯଦି ଆମେ ଗ୍ରହଣ କରିବା, ତାହେଲେ ଏ ଦେଶର ଭବିଷ୍ୟତ ଅଛି ।

ପର୍ଯ୍ୟବେକ୍ଷକ : ଦଙ୍ଗାବେଳେ ଆପଣ ଗୁଜରାଟ ଯାଇଛନ୍ତି ?

ରବି ରାୟ : ନା, ଯାଇଥିଲେ ହୁଏତ ହାର୍ଟଫେଲ୍ କରିଯାଇଥାନ୍ତି । ତେବେ ମୁଁ ଖୁବ୍‌ଶୀଘ୍ର ସେଠାକୁ ଯିବି ।

ପର୍ଯ୍ୟବେକ୍ଷକ : ସର୍ଦ୍ଦାର ସରୋବର ଡ୍ୟାମର ଉଚ୍ଚତାକୁ ନେଇ ସୁପ୍ରିମକୋର୍ଟଙ୍କ ରାୟ ଉପରେ ଆପଣ ସନ୍ତୁଷ୍ଟ କି ?

ରବି ରାୟ : ମୁଁ କେମିତି ସନ୍ତୁଷ୍ଟ ହେବି ? ମୋ' ଭଳିଆ ଲୋକ ଏଥିରେ ସନ୍ତୁଷ୍ଟ ହେବାର ପ୍ରଶ୍ନ ହିଁ ନାହିଁ ।

ପର୍ଯ୍ୟବେକ୍ଷକ : ତାହେଲେ ଆପଣ କହୁଛନ୍ତି ସୁପ୍ରିମକୋର୍ଟ ବି ପକ୍ଷପାତିତା କରୁଛି ?

ରବି ରାୟ : କଥାଟା ଠିକ୍ ସେଇଆ ନୁହେଁ । ବିଚାର ବା ରାୟ ଗଠିତ ବେଞ୍ଚ ଉପରେ ନିର୍ଭର କରୁଛି । ମୁଁ ସମ୍ପୂର୍ଣ୍ଣଭାବେ ସୁପ୍ରିମକୋର୍ଟଙ୍କୁ ଦାୟୀ କରୁନାହିଁ । ତେବେ ମୋର ବିଶ୍ୱାସ ଯେ ଭବିଷ୍ୟତରେ ସୁପ୍ରିମକୋର୍ଟ ସୁପ୍ରିମକୋର୍ଟ । ତେବେ ଦୁଃଖୀରଙ୍କି ଦରିଦ୍ର ଏବଂ ଅବହେଳିତ ଲୋକଙ୍କ ସାମ୍ବିଧାନିକ ଅଧିକାର ପ୍ରତି ଦୃଷ୍ଟି ଦେବେ ।

ପର୍ଯ୍ୟବେକ୍ଷକ : ଏହାର ପ୍ରଭାବ ଅନ୍ୟାନ୍ୟ ସାମାଜିକ ଆନ୍ଦୋଳନ କ୍ଷେତ୍ର ଉପରେ ପଡ଼ିବ ବୋଲି ଆପଣ ଭାବୁଛନ୍ତି କି ?

ରବି ରାୟ : ଏଥିରେ କୌଣସି ସନ୍ଦେହ ନାହିଁ । ପ୍ରଭାବ ପଡ଼ିବ ନିଶ୍ଚୟ । ଅସଲରେ କହିବାକୁ ଗଲେ, କୋଡ଼ିଏଟି ବହୁ କ୍ଷେତ୍ରରେ ଜନଆନ୍ଦୋଳନର ଦାବି ସମର୍ଥନରେ ମଧ ଫଇସଲା ଶୁଣାଇଛନ୍ତି । ତେବେ ଏସବୁ ସ୍ୱଚ୍ଛ ବେଞ୍ଚର ରାୟ ଉପରେ ନିର୍ଭର କରୁଛି । କିନ୍ତୁ ଭବିଷ୍ୟତରେ ସୁପ୍ରିମକୋର୍ଟରେ ଭଲ ବେଞ୍ଚକୁ ନେଇ ଭଲ ରାୟ ଆସିପାରିବ ବୋଲି ମୋର ଏଇଥିପାଇଁ ବିଶ୍ୱାସ ଅଛି ଯେ ପଛୁଆ ଜାତିମାନଙ୍କୁ ସଂରକ୍ଷଣ ଦେବା ପାଇଁ ଭି.ପି. ସରକାର ୧୯୯୦ରେ ଯେଉଁ ବୈପ୍ଳବିକ ସିଦ୍ଧାନ୍ତ ନେଲେ ଏବଂ ସୁପ୍ରିମକୋର୍ଟ ଯେଉଁଭଳି ଭାବରେ ଏହାକୁ କାଏମ ରଖିଲେ ସେଇଥିପାଇଁ ସୁପ୍ରିମକୋର୍ଟ ଭବିଷ୍ୟତରେ ଯେ ଦୁଃଖୀ ରଙ୍କି ଲୋକଙ୍କ ପ୍ରତି ନ୍ୟାୟ ଦେବେ, ମୋ ମନରେ ଏଥିରେ କୌଣସି ସନ୍ଦେହ ନାହିଁ । ଏ ସଂପର୍କରେ ମୁଁ ମୋର ଗୋଟେ ବ୍ୟକ୍ତିଗତ କଥା କହିବି । ସେ ହେଉଛି ଯେ, ଯେତେବେଳେ 'ନର୍ମଦା ବଞ୍ଚାଅ' ଆନ୍ଦୋଳନର ଆନ୍ଦୋଳନକାରୀ ମେଧା ପାଟ୍‌କର ଓ ଅରୁନ୍ଧତୀ ରାୟଙ୍କୁ ସୁପ୍ରିମକୋର୍ଟ ଅଦାଲତ ଅବମାନନା ମାମଲାରେ ଦାୟୀ କଲେ, ସେତେବେଳେ ସିକ୍ସର ହଲ୍‌ରେ ବହୁ ବିଶିଷ୍ଟ ଲୋକଙ୍କୁ ନେଇ ଏଇ ଫଇସଲା ସଂକ୍ରାନ୍ତରେ ଏକ ମିଟିଂ ହେଲା । ମୁଁ ସେ ମିଟିଂରେ ଥିଲି ।

ସେଠି ଆମେ କହିଥିଲୁ ଯେ, ସୁପ୍ରିମକୋର୍ଟ ଓ ହାଇକୋର୍ଟମାନଙ୍କର ଯେଉଁ ଫଇସଲା ତା'ର ବିଶ୍ଳେଷଣ କରିବାର ଅଧିକାର ଲୋକଙ୍କର ରହିଛି । ଗାଳି ଗୁଲଜ ନକରି, ସିଦ୍ଧାନ୍ତ ଦୃଷ୍ଟିରୁ ସମାଲୋଚନା କରିବାର ଅଧିକାର ଲୋକଙ୍କର ଅଛି ଏବଂ ସେ ଦୃଷ୍ଟିରୁ ସୁପ୍ରିମକୋର୍ଟ ଓ ହାଇକୋର୍ଟମାନେ ସମାଲୋଚନା ଓ ଗାଳିଗୁଲଜକୁ ଫରକ କରିବା ଦରକାର । ଆଉ ସେ ଦୃଷ୍ଟିରୁ ଯେତେବେଳେ ଅରୁନ୍ଧତୀ ଓ ମେଧାଙ୍କୁ ଦଣ୍ଡ ଦେବା କଥା ଉଠିଲା, ସେତିକିବେଳେ ମୁଁ ଏବଂ ମୋର କେତେକ ବନ୍ଧୁ ସୁପ୍ରିମକୋର୍ଟକୁ ଆବେଦନ କଲୁ ଯେ ଯଦି ସେମାନଙ୍କୁ ସୁପ୍ରିମକୋର୍ଟ ଦଣ୍ଡିତ କରିବେ, ତାହେଲେ ଆମକୁ ମଧ ଦଣ୍ଡ ଦିଅନ୍ତୁ । ତେବେ ଆମେ ସେଠି ୧୯୭୧ ମାନହାନୀ ସଂକ୍ରାନ୍ତୀୟ କଣ୍ଟେମ୍ପ'ର ବର୍ତ୍ତମାନ ଦେଶର ପରିସ୍ଥିତିକୁ ନେଇ ପରିବର୍ତ୍ତନ କରି ସଂଶୋଧନ କରିବାର ସପକ୍ଷରେ ମତ ଦେଇଥିଲୁ । ଯାହାଦ୍ୱାରା କି ସୁପ୍ରିମକୋର୍ଟଙ୍କ ଫଇସଲାରେ ତର୍କସଂଗତ ସମାଲୋଚନା କରିବାର ଅଧିକାର ଲୋକଙ୍କ ପାଇଁ ସୁରକ୍ଷିତ ହୋଇ ରହିବ ।

ପର୍ଯ୍ୟବେକ୍ଷକ : ବର୍ତ୍ତମାନ ରାଜନୈତିକ ଦଳ ବା ବ୍ୟକ୍ତିମାନଙ୍କର ସଂସଦୀୟ ଆଚରଣ କିଭଳି ସଂସ୍କୃତ ବା ଅପସଂସ୍କୃତ ଅଛି ବୋଲି ଆପଣ ଭାବୁଛନ୍ତି ?

ରବି ରାୟ : ସଂସଦୀୟ ଆଚରଣ କଥା କହିଲେ ସେ ଏକ ବିରାଟ ବିଷୟ । ସଂସଦ ବର୍ତ୍ତମାନ ଲୋକଙ୍କର ସୁଖ ଦୁଃଖର ଦର୍ପଣ ହେଉନାହିଁ । ଏହାର କାରଣ ହେଉଛି ଯେ ବର୍ତ୍ତମାନ ଦେଶର ରାଜନୈତିକ ଦଳମାନେ ତାଙ୍କର ସିଦ୍ଧାନ୍ତ ବକ୍ତବ୍ୟରେ ଯେଉଁ କଥା ଲେଖୁଛନ୍ତି ତାହା କେବଳ ଲେଖିବା ପାଇଁ ବା କହିବା ପାଇଁ ହିଁ ଲେଖୁଛନ୍ତି । କିନ୍ତୁ କାର୍ଯ୍ୟକାରୀ କରିବା-ପାଇଁ ନୁହେଁ । ଏହି ସଂସଦୀୟ ଆଚରଣ ଉପରେ ତର୍ଜମା କରିବା ପାଇଁ ଅତୀତରେ ୧୯୯୭ରେ ତତ୍କାଳୀନ ନିର୍ବାଚନ ଅଧିକାରୀ ଏକ ଇନ୍‌କ୍ୱାରୀ କମିଟି ବସାଇଥିଲେ । ସେହି ଇନ୍‌କ୍ୱାରୀ କମିଟି ତାଙ୍କ ରିପୋର୍ଟରେ ଦର୍ଶେଇଥିଲେ ଯେ, ପାର୍ଲାମେଣ୍ଟରେ ୪୦ ଜଣ ଓ ଦେଶର ବିଧାନସଭାଗୁଡ଼ିକରେ ୭୦୦ ଜଣ ଅଧିକାରୀ ପ୍ରବୃତ୍ତିର ଲୋକ ଅଛନ୍ତି । ଆଉ ଏବେ ତ ନିର୍ବାଚନ କମିଶନଙ୍କ ବକ୍ତବ୍ୟ ଉପରେ ଆମର ସମସ୍ତ ରାଜନୈତିକ ଦଳ ଯାହା କଲେ ତାହା କାହାରିକୁ ଅଛପା ନାହିଁ । କଥା ହେଉଛି, ବର୍ତ୍ତମାନ କୌଣସି ରାଜନୈତିକ ଦଳ ରାଜନୀତିରୁ ଅପରାଧୀଙ୍କୁ ପୃଥକ୍ କରିବାକୁ ଚାହୁଁନାହାନ୍ତି । ତାହେଲେ ସଂସଦୀୟ ଆଚରଣରେ ଶାଳୀନତା ଆସିବ କିପରି ?

ପର୍ଯ୍ୟବେକ୍ଷକ : ରାଜନୀତିରୁ ଅପରାଧୀକରଣକୁ ରୋକିବା ପାଇଁ 'ଲୋକପାଳ' ବିଲ୍‌କୁ ଗ୍ରହଣ ନକରିବାର ଏହା ଏକ କାରଣ କି ?

ରବି ରାୟ : କଥାଟା ୧୦୦ ପ୍ରତିଶତ ସତ୍ୟ । ୨୨ ବର୍ଷ ହେଲା ଏ ବିଲ୍‌ଟି ଶୀତଳଭଣ୍ଡାରରେ ପଡ଼ିଛି । ଏ ଦେଶର ପ୍ରଧାନମନ୍ତ୍ରୀଙ୍କୁ ଲଜ୍ଜା ନାହିଁ । ଯିଏବି କ୍ଷମତାକୁ ଆସିଲା, ସେମାନେ ଚାହୁଁନାହାନ୍ତି ଏବଂ ସାହସ ବି କରୁନାହାନ୍ତି ଏହି ବିଲ୍‌କୁ ଗ୍ରହଣ କରିବା ପାଇଁ । ପ୍ରକୃତ କଥା ହେଉଛି, ପ୍ରଧାନମନ୍ତ୍ରୀ ତାଙ୍କ କ୍ୟାବିନେଟ୍ ବିରୁଦ୍ଧରେ କେମିତି ଲୋକପାଳ ବିଲ୍ ଆଣିବେ !

ଏହି ବିଲ୍‌ଟି ପାର୍ଲାମେଣ୍ଟରେ ଥରେ ଆଲୋଚନା ହୋଇସାରିଛି । କିନ୍ତୁ ପାସ୍ ନ ହେବାପାଇଁ ସବୁ ପ୍ରଧାନମନ୍ତ୍ରୀମାନେ ଦାୟୀ । ସେମାନେ ଜନଜୀବନରୁ ଭ୍ରଷ୍ଟାଚାରକୁ କୌଣସି ପ୍ରକାର ରୋକିବାକୁ ଚାହୁଁନାହାନ୍ତି । ମୁଁ ଗୋଟେ କଥା କହୁଛି, ଗତ ୯୨ ସାଲରୁ ମୁଁ ଗୋଟେ ରିପୋର୍ଟ ଧରି ସାରା ଭାରତବର୍ଷ ବୁଲୁଛି, ତାହା ହେଉଛି ଭୋରା କମିଟି ରିପୋର୍ଟ । ସେହି ରିପୋର୍ଟର ଗୋଟେ ବାକ୍ୟ ହେଉଛି - ''ଏ ଦେଶରେ ଗୁଣ୍ଡା ମାଫିଆମାନଙ୍କର ଏକ ସମାନ୍ତରାଳ ସରକାର ଚାଲିଛି ।'' ଆମଦ୍ୱାରା ଗଠିତ ସରକାର ପ୍ରକୃତ ସରକାର ନୁହେଁ, ଏହାବାଦ୍ ଅସଲ ସରକାର ହେଉଛି କାନୁନ୍ ବାହାରର ସରକାର ଏବଂ ବର୍ତ୍ତମାନ ଏହାର ପ୍ରାସଙ୍ଗିକତା ଏତେ ବଢ଼ିଯାଇଛି ଯେ ସେଇ ସମାନ୍ତରାଳ ସରକାର ବୋଧହୁଏ ପ୍ରଚଳିତ ଅଟଳ ବିହାରୀ ସରକାର ତୁଳନାରେ ବେଶି ଦକ୍ଷ ହୋଇଗଲାଣି । କେନ୍ଦ୍ର ମନ୍ତ୍ରିମଣ୍ଡଳ ସ୍ତରରେ ରାଜ୍ୟସ୍ତରରେ ଭ୍ରଷ୍ଟାଚାର ଜ୍ୟାମିତିକ ପ୍ରଗତିରେ ବଢ଼ିଚାଲିଛି ।

ପର୍ଯ୍ୟବେକ୍ଷକ : ବର୍ତ୍ତମାନ ନବୀନ ସରକାର ଅତୀତରେ ୩ଜଣ ମନ୍ତ୍ରୀଙ୍କୁ ଦୁର୍ନୀତି ଓ ଭ୍ରଷ୍ଟାଚାର ପାଇଁ ବହିଷ୍କାର କରି ତାଙ୍କ ବିରୁଦ୍ଧରେ ଆଇନ ଅନୁଯାୟୀ କାର୍ଯ୍ୟକ୍ରମ ନେବାଟା ବୋଧହୁଏ ଏକ ଉଦାହରଣ ନାଁ ସ୍ୱଚ୍ଛ ପ୍ରଶାସନ ଦେବା କ୍ଷେତ୍ରରେ !

ରବି ରାୟ : ନା, ମୁଁ ଏଥିରେ ଆଦୌ ଏକମତ ନୁହେଁ । ନବୀନ ପଟ୍ଟନାୟକ ହୁଏତ କିଛିଟା କରିଛନ୍ତି କିନ୍ତୁ ମୁଁ ଏଥିରେ ସନ୍ତୁଷ୍ଟ ନୁହେଁ । ମୋର କହିବା କଥା ହେଉଛି ଯେଉଁମାନେ ଏବେ ଅଛନ୍ତି ସେମାନଙ୍କ କଥା କ'ଣ ? ଅନ୍ୟ ଦୃଷ୍ଟିରେ ଦେଖିଲେ ଇଏ ବିଚାରା ରାଜ୍ୟ ସରକାରମାନେ କେନ୍ଦ୍ରର ବଟସ୍କର ହୋଇଯାଇଛନ୍ତି । ମୁଁ ତ କହିବି ନବୀନ ସରକାର ଏ ରାଜ୍ୟକୁ ନବୀନ ଭାବେ ଉଦାରୀକରଣରେ ଛନ୍ଦି ଦେଲେଣି । ଏ ରାଜ୍ୟ ହେଉଛି ଦେଶର ପ୍ରଥମ ରାଜ୍ୟ, ସାଧା ଲୁଣକୁ ନିଷେଧ କରି କମ୍ପାନୀ ଲୁଣ ବିକ୍ରି ପାଇଁ ସାହାଣ ମେଲା କରିବାରେ ଏ ରାଜ୍ୟ ହେଉଛି ପ୍ରଥମ ରାଜ୍ୟ । ପାଣିକୁ ବେପାରୀକରଣ କରେଇବାକୁ ଷଡ଼ଯନ୍ତ୍ର କରିବାରେ ଓ ପ୍ରତିଦିନ ଛୋଟ ବଡ଼ କଳକାରଖାନାକୁ ଘରୋଇକରଣ କରେଇବାରେ । ଯେ ଉଦାରୀକରଣର ସମର୍ଥକ ସେ ଭ୍ରଷ୍ଟାଚାରକୁ ରୋକିବ କିପରି ? ଦୁଇଟା ଯାକତ ସମାନାର୍ଥକ ଶବ୍ଦ । ନବୀନ ସରକାର ଯେଉଁ ଅଟଳ ବିହାରୀ ସରକାର ସହ କାୟମନୋବାକ୍ୟରେ ଜଡ଼ିତ ଅଛନ୍ତି ସେମାନେ ଉଦାରୀକରଣ ଆଳରେ ଯେ ଓଡ଼ିଶାର ଧ୍ୱଂସସାଧନ କରିବେ, ଏଥିରେ ମୋ' ମନରେ କିଛି ସନ୍ଦେହ ନାହିଁ ।

ପର୍ଯ୍ୟବେକ୍ଷକ : ଉଦାରୀକରଣ କ'ଣ ପ୍ରକୃତରେ ରୋକିବା ସମ୍ଭବ, ବିଶେଷକରି ରାଜ୍ୟ ସରକାରଙ୍କ କ୍ଷେତ୍ରରେ ?

ରବି ରାୟ : କାହିଁକି ନୁହେଁ ? ନିଶ୍ଚିତ ଭାବେ ସମ୍ଭବ । ଅବଶ୍ୟ କଷ୍ଟକର । ଯଦି କୌଣସି ରାଜ୍ୟ ସରକାର ନିଜ ଲୋକଙ୍କ ହିତ ଦୃଷ୍ଟିରୁ କାର୍ଯ୍ୟ କରିବାକୁ ସଂକଳ୍ପବଦ୍ଧ ହେବ, ତାହେଲେ ସବୁକିଛି ସମ୍ଭବ ହେବ, କିନ୍ତୁ ଲୋକମାନେ ଜାଣିବା ଦରକାର ଯେଉଁ ସରକାର କାମକରୁଛି ସେ ଲୋକଙ୍କ ପାଇଁ ଏବଂ ଲୋକଙ୍କ ହିତ ପାଇଁ କାମ କରୁଛି ।

ପର୍ଯ୍ୟବେକ୍ଷକ : ଆପଣ ଓଡ଼ିଶାରେ ସମାଜବାଦୀ ଦଳ ଗଠନ କରିଥିଲେ । ଏହାପରଠାରୁ କେନ୍ଦ୍ରୀୟ ରାଜନୀତି ସହିତ ଜଡ଼ିତ କିନ୍ତୁ ବିଧାନସଭାରେ ଭାଗ ନ ନେବାର ରହସ୍ୟ କ'ଣ ?

ରବି ରାୟ : ନା ଆଦୌ ନୁହେଁ । ଯେଉଁ ନୀତି, ସିଦ୍ଧାନ୍ତ ଓ ଆଦର୍ଶକୁ ଭିତ୍ତିକରି ସମତା ଦଳ ଗଠନ କରାଗଲା, ସେ ଆଦର୍ଶରେ ସମତା ପାର୍ଟି କାର୍ଯ୍ୟ କଲା ନାହିଁ । ଭାରତବର୍ଷରେ ସମାଜବାଦ ପ୍ରତିଷ୍ଠା ସମତା ଦଳର ଲକ୍ଷ୍ୟ ଥିଲା । ସମତା ଦଳର ସିଦ୍ଧାନ୍ତ ବକ୍ତବ୍ୟରେ ଏକଥା ଉଲ୍ଲେଖ ଥିଲା ଯେ ଉଭୟେ କଂଗ୍ରେସ ଓ ଭାଜପା ଏ ଦୁଇଟା ଯାକ ଦଳ ଦେଶର ଭିତ୍ତିପାଇଁ ସମାନଭାବେ ଖରାପ । ଏହାଠୁଁ ଦୂରେଇ ଯାଇ ସମତାଭିତ୍ତିକ ଆଦର୍ଶରେ କାର୍ଯ୍ୟ କରିବାକୁ ହେବ । କିନ୍ତୁ ତାହା ହେଲା ନାହିଁ । ଜର୍ଜ ଫର୍ଣ୍ଣାଡ଼ିଜ୍, ନୀତିଶ କୁମାର, ଏହାର ସମ୍ବିଧାନ ପ୍ରତି ବିଶ୍ୱାସଘାତକତା କରି ଭାଜପା ସହ ହାତ ମିଳାଇଲେ । ତେଣୁ ଏ ପରିସ୍ଥିତିରେ ମୋର ସେଠି ରହିବାର ପ୍ରଶ୍ନ ହିଁ ନଥିଲା । ଏହାପରେ ମୁଁ ସିଦ୍ଧାନ୍ତ କଲି ଆଉ ନିର୍ବାଚନ ଲଢ଼ିବି ନାହିଁ । ଏହି ଘଟଣା ପରେ ଥରେ ହଠାତ୍ ଫର୍ଣ୍ଣାଡିଜ୍ ମୋ ନିକଟକୁ ଆସି ମୋ ସିଦ୍ଧାନ୍ତ ବଦଳାଇବାକୁ ଅନୁରୋଧ କଲେ ଏବଂ ମୁଁ ତାଙ୍କୁ ସଫା ସଫା କହିଦେଲି ଯେ ମୁଁ ଫଇସଲା କରିଛି ଯେ ନିର୍ବାଚନ ଲଢ଼ିବି ନାହିଁ । ତମେ ଯଦି ଫଇସଲା କରିବ ନିର୍ବାଚନ ନ ଲଢ଼ିବା ପାଇଁ ତାହାହେଲେ ତମେ ବର୍ତ୍ତିଯିବ । କିନ୍ତୁ ଆଜି ମୁଁ ଭାବୁଛି ଯଦି ଫର୍ଣ୍ଣାଡ଼ିଜ୍ ତାହା କରିଥାନ୍ତେ, ତେବେ ସେ ଜନଆନ୍ଦୋଳନରେ ନିଶ୍ଚୟ ଥା'ନ୍ତେ । ତା'ହେଲେ ତାଙ୍କୁ ଆଜି ତେହଲ୍କା ଦେଖିବାକୁ ପଡ଼ିନଥାନ୍ତା ।

ପର୍ଯ୍ୟବେକ୍ଷକ : କେତେକ ରାଜନୈତିକ ବିଶେଷଜ୍ଞଙ୍କ ମତରେ ଯଦି ରବି ରାୟ ସମତା ଦଳରେ ଥାନ୍ତେ ତେବେ ହୁଏତ ଆଜି ଓଡ଼ିଶା ତା'ର ସୁପୁତ୍ରକୁ ରାଷ୍ଟ୍ରପତି ପଦବୀରେ ଦେଖିବାର ସୌଭାଗ୍ୟ ପାଇଥାନ୍ତା ।

ରବି ରାୟ : ଏସବୁ ବାଜେ କଥା । ଏହାର କୌଣସି ଅର୍ଥ ନାହିଁ । ମୁଁ ଯେତେବେଳେ ସିଦ୍ଧାନ୍ତ ନିଏ ଏହିଭଳି ସୁବିଧାବାଦୀ ତର୍କକୁ ଆଖି ଆଗରେ ରଖି ନିଏ ନାହିଁ । ମୁଁ ଫଇସଲା କରୁଛି ରାଷ୍ଟ୍ରର ଭବିଷ୍ୟତ ସଂକ୍ରାନ୍ତରେ । ଦେଶରେ ଜନଆନ୍ଦୋଳନ କେମିତି ହେବ, ମୁଁ ସେହି ଚିନ୍ତାରେ ଅଛି । ଆଉ ରାଷ୍ଟ୍ରପତି କଥା ...ଯଦି ଜଣେ ଦଳରେ ନାହିଁ ତେବେ ତାକୁ ରାଷ୍ଟ୍ରପତି ବା ଉପରାଷ୍ଟ୍ରପତି କରିବାରେ ଅସୁବିଧା କେଉଁଠି ? ମୁଁ ବର୍ତ୍ତମାନ ରାଜନୀତିର ଶିକାର ନୁହେଁ । ମୁଁ ରାଜନୀତିରେ ପରିବର୍ତ୍ତନ ଚାହେଁ । ସମତାଭିତ୍ତିକ ସମାଜବାଦୀ ରାଷ୍ଟ୍ର ମୋର ସ୍ୱପ୍ନ । ଯେଉଁଠି ଧନୀଗରିବ, ଛୁଆଁ ଅଛୁଆଁର ପ୍ରାଚୀର ନଥିବ, ସେଇଭଳି ସମାଜ ପ୍ରତିଷ୍ଠା ପାଇଁ ମୁଁ ଜନଆନ୍ଦୋଳନ କରୁଛି । ମୁଁ ଆଜି ଆଶ୍ଚର୍ଯ୍ୟ ଯେ କେହି ମୌଳିକ ପ୍ରଶ୍ନକୁ ଛୁଉଁନାହାନ୍ତି । ସେ ହେଉଛି, ଦେଶକୁ କିଭଳି ସାଂପ୍ରଦାୟିକ ଫାସିଷ୍ଟବାଦ ଓ ଉଦାରୀକରଣରୁ ରକ୍ଷା କରିହେବ । ଆଉସବୁ କଥା ମୋ ପାଇଁ ଗୌଣ ।

ପର୍ଯ୍ୟବେକ୍ଷକ : ଆପଣଙ୍କୁ ଅନେକେ ବିକାଶର ବିରୋଧୀ ବୋଲି କହୁଛନ୍ତି ।

ରବି ରାୟ : ଯେଉଁମାନେ ସାଂପ୍ରଦାୟିକ ଫାସିଷ୍ଟବାଦ ଏବଂ ଉଦାରୀକରଣର ନକାରାତ୍ମକ ଦିଗର ସମର୍ଥକ ସେଇମାନେ ହିଁ କେବଳ ଏହା କହିପାରନ୍ତି ।

ପର୍ଯ୍ୟବେକ୍ଷକ : ବର୍ତ୍ତମାନ ଭାରତ ପାକିସ୍ଥାନ ଭିତରେ ଥିବା ଦ୍ୱନ୍ଦର ବିଲୋପ ପାଇଁ ଯୁଦ୍ଧ ଅପରିହାର୍ଯ୍ୟ କି ?

ରବି ରାୟ : ମୋତେ ନୁହେଁ, ଦୁଇଟି ଯାକ ରାଷ୍ଟ୍ର ଗରିବ ରାଷ୍ଟ୍ର ଏବଂ ଦୁଇଟିଯାକ ରାଷ୍ଟ୍ର ଏବେ କୌଣସି ଆଦର୍ଶକୁ ନେଇ ଚାଲୁନାହିଁ । ସେଥିପାଇଁ ମଝିରେ ମଝିରେ ଯୁଦ୍ଧ ପରିସ୍ଥିତି ସୃଷ୍ଟି ହେଉଛି । ସେଇ ଦୃଷ୍ଟିରୁ ମୁଁ କହିବି, ପାକିସ୍ଥାନ-ଭାରତ ଭିତରେ ଯେଉଁ ଝଗଡ଼ା ଚାଲିଛି ତା'ର ମୂଳ କାରଣକୁ ଯିବା ଦରକାର । ପାକିସ୍ଥାନରେ ଗଣତନ୍ତ୍ର ଆସିବା ଦରକାର ଏବଂ ସବୁଠୁ ବଡ଼ ଭୁଲ୍.ହେଲା ଦୁଇଟାଯାକ ରାଷ୍ଟ୍ର ଦାରିଦ୍ର୍ୟଦୂରୀକରଣର ବିକଳ୍ପ ଖୋଜିଲେ ଆଟମ୍‌ବମ୍‌କୁ ନେଇ । ଗୋଟିଏ ଦେଶ କହୁଛି ଆମ ପାଖରେ ପରମାଣୁ ବୋମା ଥିବାରୁ ଯୁଦ୍ଧ ହେଲା ନାହିଁ ।

ପର୍ଯ୍ୟବେକ୍ଷକ : ଏ କଥା' ତ କାଲାମ୍ ନିଜେ କହୁଛନ୍ତି ?

ରବି ରାୟ : ହଁ କାଲାମ୍ ଏହା କହିଛନ୍ତି ତ ଠିକ୍ କହିନାହାନ୍ତି । ତାଙ୍କର ଏହା କହିବା ଉଚିତ୍ ନଥିଲା । ଜଣେ ରାଷ୍ଟ୍ରପତି ହେବାକୁ ଯାଉଥିବା ବ୍ୟକ୍ତିଙ୍କ ମୁହଁରେ ଏଭଳି ବକ୍ତବ୍ୟ ଶୋଭାପାଏ ନାହିଁ । ଏହା କାଲାମଙ୍କ ରାଷ୍ଟ୍ରପତି ପୂର୍ବର ବକ୍ତବ୍ୟ ଥିଲା । ମୁଁ ଭାବୁଛି ଏବେ ସେ ଏ ବିଷୟରେ ମତ ସ୍ପଷ୍ଟ କରିବେ । ଆଟମ୍ ବୋମା ପେଟକୁ ଖାଦ୍ୟ ଦେବ ନାହିଁ ଏବଂ ସେ ଦୃଷ୍ଟିରୁ ଦୁଇ ଦେଶକୁ ଯେତେଦୂର ସମ୍ଭବ ଦ୍ୱିପାକ୍ଷିକ ସଂପର୍କରେ ଉନ୍ନତି ଆଣିବାକୁ ପଡ଼ିବ । ତେବେ ମୋର ଦୃଢ଼ ବିଶ୍ୱାସ ଯେ ଭାରତବର୍ଷରେ ଏହାର ସମ୍ଭାବନା ଅଛି । ଏଠି ଉଦାରୀକରଣ ଓ ଫାସିଷ୍ଟବାଦ ବିରୁଦ୍ଧରେ ନୂଆ ଶକ୍ତି ଗଢ଼ି ଉଠିବ ଏବଂ ଭବିଷ୍ୟତରେ ଦୁଇ ଦେଶର ସମ୍ପର୍କ ବଢ଼ିବ ଏବଂ ଉଭୟେ ବୁଝିବେ ଯେ ଆମର ଯୁଦ୍ଧ ଦରକାର ନାହିଁ ।

ପର୍ଯ୍ୟବେକ୍ଷକ : 'ଲୋକଶକ୍ତି ଅଭିଯାନ' ବିଷୟରେ କିଛି କହିବେ ?

ରବି ରାୟ : ଲୋକଶକ୍ତି ଅଭିଯାନ ଏକ ରାଜନୈତିକ ଦଳ ନୁହେଁ । ଅତ୍ୟଧିକ କେନ୍ଦ୍ରୀକରଣ, ଉପଭୋକ୍ତାବାଦ, ଉଚ୍ଚସ୍ତରୀୟ ଭ୍ରଷ୍ଟାଚାର ସହିତ ସାମ୍ପ୍ରଦାୟିକ ଫାସିଷ୍ଟବାଦ ଓ ଉଦାରୀକରଣ ବିରୁଦ୍ଧରେ ଲଢ଼ି ଦେଶରେ ଏକ ଜନ ଆନ୍ଦୋଳନ ଗଢ଼ି ତୋଳିବା ଏହାର ଲକ୍ଷ୍ୟ । ଦେଶର ଅନେକ ଉତ୍ସାହୀ ଏବଂ ଉତ୍ସର୍ଗୀକୃତ ଯୁବକ ଏହାକୁ ଚଳାଉଛନ୍ତି । ମୁଁ ଏହାକୁ ସାହାଯ୍ୟ କରୁଛି ।



# ଅହିଂସାତ୍ମକ ଗଣ ଆନ୍ଦୋଳନ ସାମ୍ବିଧାନିକ ମୂଲ୍ୟବୋଧର ପୁନଃ ପ୍ରତିଷ୍ଠା କରିବ

**(ପ୍ରଗତିବାଦୀ ସହ ସାକ୍ଷାତକାର ୨୩.୯.୨୦୦୧)**

ଏମିତି ଏକ ରାଜନୈତିକ ବ୍ୟକ୍ତିତ୍ୱ - ରବିରାୟ ଯାହାଙ୍କୁ ସାମ୍ନା କଲେ ଏକ ଆନ୍ତରିକତାର ସ୍ପର୍ଶ ମିଳେ, ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିବେଶ ଆପଣା ଛାଏଁ ସୃଷ୍ଟି ହୋଇଯାଏ । କଲ୍ୟାଣୀନଗରସ୍ଥିତ ତାଙ୍କ ବାସଭବନରେ କିଛି ସମୟର ବାର୍ତ୍ତାଳପ ପରେ ମୁଁ ତାଙ୍କୁ ପଚାରିଥିଲି ସର୍ବପ୍ରଥମେ ତାଙ୍କର ବାଲ୍ୟଜୀବନର କେତୋଟି ଅନୁଭୂତି ସଂପର୍କରେ । କିଛି ସମୟ ନୀରବ ରହି, ଭାବ ବିହ୍ୱଳ ହୋଇଗଲେ ରବି ରାୟ ।

*ରବି ରାୟ । ପୂର୍ବତନ ସାଂସଦ ଏବଂ ବାଚସ୍ପତି । ସମକାଳୀନ ଭାରତୀୟ ରାଜନୀତି କ୍ଷେତ୍ରରେ ଆଦର୍ଶ, ଅଂଗୀକାର, ନୀତି ଓ ନୈତିକତାର ଅନ୍ୟ ନାମ । ସର୍ବଭାରତୀୟ ସ୍ତରରେ ସମାଜବାଦୀ ଆନ୍ଦୋଳନର ଏକ ସମର୍ପିତ ସ୍ଫୁଲିଙ୍ଗ । ସାଂଗଠନିକ ବିଚାର ଧାରା, ରାଜନୈତିକ ଦିଗଦର୍ଶନ ଗାନ୍ଧୀ, ଲୋହିଆ ସମନ୍ୱିତ ଜୟପ୍ରକାଶଙ୍କ ଚିନ୍ତାଧାରାରେ ଏକ ଶ୍ରଦ୍ଧାଶୀଳ ବ୍ୟକ୍ତିତ୍ୱ । ଆତ୍ମ ବିଶ୍ୱାସରେ ଅଟଳ, ଅଂଧାନୁସରଣର ତୀବ୍ର ବିରୋଧୀ, ସଂସଦୀୟ ଗଣତନ୍ତ୍ରର ଏହି ସତର୍କ ସମ୍ବେଦନଶୀଳ ରାଜନୀତିଜ୍ଞ ଏବେ ବି ଜନସାଧାରଣରେ ବିଶ୍ୱାସନୀୟତାର ପ୍ରତୀକ । 'ଲୋକଶକ୍ତି ଅଭିଯାନ' ମାଧ୍ୟମରେ ଲୋକମାନଙ୍କୁ ସଂଗଠିତ କରି ଉଚସ୍ତରୀୟ ଦୁର୍ନୀତି, ଭ୍ରଷ୍ଟାଚାର, କ୍ଷମତାର ଅପବ୍ୟବହାର ବିରୁଦ୍ଧରେ ତାଙ୍କର ଏ ସଂଗ୍ରାମ ଅଦ୍ୟାବଧି ଅବ୍ୟାହତ । ଏହି ବର୍ଷୀୟାନ୍ ଜନନେତାଙ୍କ ସଂପର୍କରେ ... ସାକ୍ଷାତକାର, ପ୍ରସ୍ତୁତି, ଉପସ୍ଥାପନା : ନିକୁଞ୍ଜ ଜେନା ।*

''ଆମ ଗାଁର ନାଁ ଭଅଁରାଗଡ (ନିଜିଗାଁ) । ବର୍ତ୍ତମାନ ଖୋର୍ଦ୍ଧାଜିଲ୍ଲା ବାଲିପାଟଣା ଥାନା ବନମାଳୀପୁର ଆଖପାଖ । ବାପାଙ୍କ ନାଁ ଘନଶ୍ୟାମ ରାୟ ପୀତାମ୍ବର ମହାପାତ୍ର । ମାଆ ସୁନାମଣି ଦେବୀ । ମୋ ବାପା ଥିଲେ ଘରର ବଡ଼ପୁଅ (ସାମନ୍ତ) । ଆମର ଏକ ଯୌଥ ପରିବାର ପ୍ରାୟ ୫୦ ଜଣଙ୍କୁ ନେଇ । ଆମରି ଘରର ପରିବାରକୁ ନେଇ ଆମରି ଗାଁ । ପାର୍ଶ୍ୱବର୍ତ୍ତୀ ଗାଁରେ ଅନ୍ୟାନ୍ୟ ଜାତିର ଲୋକେ ବସବାସ କରୁଥିଲେ । ଆମେ ପାଞ୍ଚଭଉଣୀ, ଦୁଇଭାଇ । ମୋ ସାଆନ୍ତ ମା' ବହୁତ ଧର୍ମପରାୟଣା । ସେ ଠାକୁର ଘରେ ଖିଆପିଆ କରେ । ସେତେବେଳେ ଆମ ଗାଁର ଚାରିପଟେ ଘୋର ଜଙ୍ଗଲ । କେବେ କେବେ ସକାଳେ ସଂଜେ କଲରାପତରିଆ ବାଘକୁ ଦେଖୁଥିବାର ସେ କୁହେ । ଆମେ ସମସ୍ତେ ଯୌଥ ପରିବାରରେ ବଢ଼ି ଆସିଥିଲୁ । ସେଥିପାଇଁ 'ତୋର', 'ମୋର' ଭାବ ଆମର - କଳ୍ପନାରେ ବି କେବେ ନଥିଲା ।

ବାପା ମୋର ଅନେକ ସମୟରେ କହୁଥିବାର ମୁଁ ଶୁଣିଥିଲି - ଘରେ ସେ ବଂଚିଥିବା ସମୟରେ ଯେ ଭିନେ ହେବା କଥା କହିବ ତା କୂଳରେ କେହି ରହିବେନି । ମୁଁ ପିଲାଟିଏ ହୋଇଥାଏ ମୋର ମନେ ଅଛି । ଗାନ୍ଧିଜୀଙ୍କ ଏକ ସଭା ହେଉଥାଏ ଡେଲାଙ୍ଗ ଥାନାର ବୋରବୋଇଠାରେ ।

ନେହେରୁ, ପଟେଲ, ରାଜେନ୍ଦ୍ର ପ୍ରସାଦ, କସ୍ତୁରବା ଏମାନେ ସମସ୍ତେ ଆସିଥାନ୍ତି । ମୁଁ ୧୦/୧୨ କିଲୋମିଟର ଚାଲି ଚାଲି ଯାଉଥିଲି ଗାନ୍ଧିଜୀଙ୍କୁ ଦେଖିବାକୁ । ଆଉ ଗୋଟିଏ କଥା କହିବି - ସେ ବି ପିଲାଦିନର । ମୋ କକାଙ୍କ ନାଁ କୃଷ୍ଣଚନ୍ଦ୍ର ରାୟ । ସେ କଲିକତାରେ ରହୁଥିଲେ । ଆମ ଘରକୁ ସେତେବେଳେ 'ଅମୃତବଜାର ପତ୍ରିକା' ଆସୁଥାଏ । ଜାତୀୟ ଆନ୍ଦୋଳନର ସେ ନେତା ଥିଲେ । କକା ଆମକୁ ଇଂରାଜୀ ପଢ଼ାଉଥିଲେ ଘରେ ଥିବା ସମୟରେ । ସେଇ ଅମୃତବଜାର ପତ୍ରିକାରେ, ବାଲ୍ ଗଙ୍ଗାଧର ତିଳକଙ୍କ ପ୍ରସିଦ୍ଧ କାବ୍ୟ ଇଂରାଜୀରେ ଲେଖା ହୋଇଥାଏ । ସ୍ୱରାଜ୍ୟ ମୋର ଜନ୍ମଗତ ଅଧିକାର । ମୁଁ ସେତେବେଳେକୁ ମାଇନର ପଢ଼ିନାହିଁ । ମୁଁ କକାଙ୍କୁ ପଚାରିଥିଲି ଏହାର ଅର୍ଥ କ'ଣ ? ସେ ଏହାର ଅର୍ଥ ମୋତେ ବୁଝାଇ ଦେଇଥିଲେ । ତା'ପରେ ମୁଁ 'ଗୋପ'ରେ ପଢ଼ିଲି । ହେଡମାଷ୍ଟର ଥିଲେ ଜଗମୋହନ ପଟ୍ଟନାୟକ । ଶିକ୍ଷକମାନଙ୍କ ଚାରିତ୍ରିକ ବିଶେଷତ୍ୱ ସହ ଶିକ୍ଷାଦାନ ପ୍ରଣାଳୀ ମଧ୍ୟ ଉନ୍ନତମାନର ଥିଲା । ସେତେବେଳେ ସେ ଛାତ୍ରମାନଙ୍କୁ ସିଗାରେଟ ନଖାଇବାକୁ ଉପଦେଶ ଦେଉଥିଲେ । ବାଲ୍ୟଜୀବନର ଏ ଯେଉଁ ଛାପ ମୋ ମନରେ ରହିଯାଇଥିଲା ତାର ପ୍ରଭାବ ଏ ପର୍ଯ୍ୟନ୍ତ ଲିଭି ନାହିଁ ମୋ ମନରୁ । ଏ ପ୍ରସଙ୍ଗରେ ଏକ କୌତୂହଳଜନକ କଥା କହିଦିଏଁ ।

କଲେଜ ଜୀବନରେ ମୋର ଜଣେ ଘନିଷ୍ଠ ସାଙ୍ଗ ଥିଲେ । ସେ ହେଉଛନ୍ତି ବାରିଷ୍ଟର ଗୋବିନ୍ଦ ଦାସ । ସେ ମୋତେ ସିଗାରେଟ୍ ପିଆଇବା ପାଇଁ ମୋ ପଛରେ ଲାଗିଗଲେ । ହେଡ୍‌ମାଷ୍ଟରଙ୍କ କହିବା ଅନୁସାରେ ମୁଁ ଏହି ଗର୍ହିତ କାମ ନକରିବା ପାଇଁ ସ୍ପଷ୍ଟ ମନା କରି ଦେଇଥିଲି । ଏ ଯେଉଁ ପ୍ରଭାବ ମନ ଭିତରେ ଥିଲା - ସିଗାରେଟ ମୁଁ ପିଇବି ନାହିଁ - ତାର ପରିପ୍ରକାଶ ଘଟିଲା ଯେତେବେଳେ ମୁଁ ଭାରତର ସ୍ୱାସ୍ଥ୍ୟ ମନ୍ତ୍ରୀ ହେଲି ଏବଂ ଭାରତର ପ୍ରତିନିଧି ମଣ୍ଡଳର ନେତୃତ୍ୱ ନେଇ 'ଜେନେଭା' ଯାଇଥିଲି ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ତରଫରୁ । ଆମେରିକାରେ ସେତେବେଳର ରାଷ୍ଟ୍ରପତି କାର୍ଟର । ଆମେରିକାର ସ୍ୱାସ୍ଥ୍ୟମନ୍ତ୍ରୀ ଏବଂ ମିସେସ୍ କାର୍ଟର ମଧ୍ୟ ମୋ ପାଖରେ ବସିଥାନ୍ତି । ସେ ସମୟରେ ଆମେରିକାରେ ଧୂମପାନ ଉପରେ ପ୍ରବଳ ବିରୋଧ ହେଉଥାଏ । ମୁଁ ମଜ୍ଜା କରିବାକୁ ଯାଇ ଆମେରିକାର ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ପଚାରିଦେଲି - ଆପଣ ଧୂମପାନ କରନ୍ତି କି ? ସଂଗେ ସଂଗେ ମିସେସ୍ କାର୍ଟର ତାଙ୍କ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ କହିଲେ - ଉତ୍ତର ଦିଅନ୍ତୁ । ଆମେରିକାର ସ୍ୱାସ୍ଥ୍ୟମନ୍ତ୍ରୀ ବଡ଼ ଅଡୁଆରେ ପଡ଼ିଗଲେ । କହିଲେ - ମୁଁ ପୂର୍ବରୁ ପିଉଥିଲି କିନ୍ତୁ ଏବେ ସ୍ୱାସ୍ଥ୍ୟମନ୍ତ୍ରୀ ହେବା ପରେ ଆଉ ପିଉନାହିଁ । ପରେ ମିସେସ୍ କାର୍ଟର ମୋତେ ପଚାରିଲେ - ଆପଣ ପିଅନ୍ତି କି ? ମୁଁ ତାଙ୍କୁ ସେତେବେଳେ ସିଗାରେଟ୍ ନପିଇବା ସଂପର୍କରେ ମୋର ହେଡମାଷ୍ଟରଙ୍କ ଉପଦେଶ ଓ ତାର ପ୍ରଭାବ ବିଷୟରେ ତାଙ୍କୁ କହିଥିଲି । ସେ ସବୁ ଶୁଣି ବହୁତ ଖୁସି ହୋଇଯାଇଥିଲେ ।

ପ୍ର : କଲେଜ ଜୀବନ ଓ ପରବର୍ତ୍ତୀ ରାଜନୀତିରେ ଆପଣଙ୍କ ଭୂମିକା ସଂପର୍କରେ କହିବେ କି ?

ଉ : ମୋର କଲେଜ ଜୀବନରେ ଭାରତ ଛାଡ଼ ଆନ୍ଦୋଳନ ପୂରାଦମ୍‌ରେ ଚାଲିଥାଏ । ସେତେବେଳକୁ ମୁଁ ରେଭେନ୍ସା କଲେଜର ଛାତ୍ର । ଜାତୀୟ ଆନ୍ଦୋଳନରେ ଛାତ୍ର ସମାଜ

ବିଶେଷଭାବେ ରେଭେନ୍‌ସା କଲେଜର ଥାଏ ଅଗ୍ରଣୀ ଭୂମିକା । ୧୯୪୪-୪୫ରେ ମୁଁ ସ୍ନାତକ ତୃତୀୟ ବର୍ଷର ଛାତ୍ର । ୧୯୪୮-୪୯ମସିହାରେ ରେଭେନ୍‌ସା ଛାତ୍ର ସଂସଦର ପ୍ରଥମ ସଭାପତି ହେଲି । ୧୯୫୩-୫୪ ମସିହାରେ ସର୍ବଭାରତୀୟ ସମାଜବାଦୀ ଯୁବକ ସଭାର ଯୁଗ୍ମ ସଂପାଦକ ହେବା ପରେ ୧୯୫୬ ମସିହାରେ ଡକ୍ଟର ରାମମନୋହର ଲୋହିଆଙ୍କ ନେତୃତ୍ୱରେ ଓଡ଼ିଶାରେ ସୋସାଲିଷ୍ଟ ପାର୍ଟି ସ୍ଥାପନ କଲି । ସୋସାଲିଷ୍ଟ ପାର୍ଟିର ଜାତୀୟ କାର୍ଯ୍ୟକାରିଣୀର ସଦସ୍ୟ ଭାବରେ ରହିବା ପରେ ୧୯୬୦ ମସିହାରେ ମୁଁ ଏହାର ସାଧାରଣ ସଂପାଦକ ହେଲି ।

୧୯୬୭ ମସିହାରେ ମୁଁ ଚତୁର୍ଥ ଲୋକସଭା ନିର୍ବାଚନରେ ପୁରୀ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲି । ପରେ ୧୯୭୪ ମସିହା ଠାରୁ ୧୯୮୨ ମସିହା ପର୍ଯ୍ୟନ୍ତ ରାଜ୍ୟସଭାର ସଦସ୍ୟ ଭାବରେ କାର୍ଯ୍ୟନିର୍ବାହ କରିଛି । ୧୯୭୭ ମସିହାର ଷଷ୍ଠ ଲୋକସଭା ନିର୍ବାଚନ ପରେ ମୋରାରଜୀ ଦେଶାଇଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ ସ୍ୱାସ୍ଥ୍ୟ ଏବଂ ପରିବାର କଲ୍ୟାଣ ବିଭାଗର କ୍ୟାବିନେଟ ମନ୍ତ୍ରୀ ମଧ୍ୟ ରହିଛି ।  ସେଇ ସମୟରେ ଜନତାପାର୍ଟିର ସାଧାରଣ ସଂପାଦକ ମଧ୍ୟ ଥିଲି । ୧୯୮୯ ମସିହାରେ ଜନତାଦଳରୁ କେନ୍ଦ୍ରାପଡ଼ା ଲୋକସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ସର୍ବସମ୍ମତିକ୍ରମେ ଲୋକସଭାର ବାଚସ୍ପତି ହୋଇଥିଲି ।

ପ୍ର. : ଆପଣ ଡଃ ଲୋହିଆଙ୍କ ଜୀବନାଦର୍ଶରେ ଅନୁପ୍ରାଣିତ । ଗାନ୍ଧୀ ଓ ଲୋହିଆଙ୍କ ରାଜନୈତିକ ଆଭିମୁଖ୍ୟ ସଂପର୍କରେ କହିବେ କି ?

ଉ. : ଡଃ ଲୋହିଆ, ଜୟପ୍ରକାଶ ନାରାୟଣ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ଏମାନେ ସମସ୍ତେ ଭାରତୀୟ ଜାତୀୟ କଂଗ୍ରେସର ସମର୍ଥକ । ୧୯୪୫ ମସିହା ଠାରୁ କଂଗ୍ରେସରେ କ୍ଷମତାଲୋଭର ଅଭିପ୍ସା ଆରମ୍ଭ ହେଲା । ଆସ୍ତେ ଆସ୍ତେ ପଶିଲା କଂଗ୍ରେସରେ ଦୁର୍ନୀତି । କ୍ଷମତାକୁ ଜାବୁଡ଼ି ଧରିବାର ନିଶା । ୧୯୪୮ ମସିହାରେ ଗାନ୍ଧିଜୀଙ୍କ ମୃତ୍ୟୁପରେ ତାହା ଆହୁରି ତୀବ୍ରତର ହେଲା । ଗାନ୍ଧୀ ଓ ଲୋହିଆଙ୍କ ରାଜନୈତିକ, ସାମାଜିକ, ଅର୍ଥନୈତିକ ଦୃଷ୍ଟିଭଙ୍ଗୀ ଏକ । ଗାନ୍ଧିଜୀଙ୍କ ପରେ ସୋସାଲିଷ୍ଟମାନେ ହିଁ ପ୍ରକୃତପକ୍ଷେ ଗାନ୍ଧୀଜୀଙ୍କ ପଛାକୁ ଅନୁସରଣ କରି ଚାଲିଥିଲେ ଏବଂ ତାକୁ ଧରି ରଖିଥିଲେ । ଏହା ଭିତରେ ୬୦ ବର୍ଷ ଅତିବାହିତ ହୋଇଗଲାଣି । ଗାନ୍ଧୀଙ୍କୁ ମୁଁ ଯେତେ ଅନୁଶୀଳନ କରୁଛି ସେତେ ମୋର ଧାରଣା ବଦ୍ଧମୂଳକ ହେଉଛି ଯେ ଗାନ୍ଧୀ ହେଉଛନ୍ତି ଦୁନିଆର ମୁକ୍ତିଦାତା । ପୃଥିବୀ ପ୍ରସିଦ୍ଧ ଜର୍ମାନୀର ବର୍ଲିନ ମ୍ୟୁଜିୟମର ସମ୍ମୁଖ ଭାଗରେ ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତି ଏବଂ ତାଙ୍କର ବାଣୀ ପ୍ରଦର୍ଶିତ ହୋଇଛି । ସମଗ୍ର ପୃଥିବୀ ପାଇଁ ଲିପିବଦ୍ଧ ହୋଇଛି ତାଙ୍କର ଅହିଂସାର ବାର୍ତ୍ତା । ଯେତେବେଳେ  ସାରା ପୃଥିବୀ ତାଙ୍କୁ ନୂତନ ବିଶ୍ୱର ଅଭ୍ୟୁଦୟରେ ତ୍ରାଣକର୍ତ୍ତା ରୂପେ ମାନିନେବ, ସେତେବେଳେ ହିଁ ଆମର ନେତା ତଥା ଜନସାଧାରଣ ତାଙ୍କୁ ସର୍ବାନ୍ତଃକରଣରେ ମାନିନେବେ । କାରଣ ଆମର ଚୈତନ୍ୟ ଉଦୟ ହୁଏ ଅନ୍ୟ ଦେଶମାନଙ୍କର ଅନୁକରଣରେ ।

ପ୍ରଶ୍ନ : ଗୋପାଳପୁର ଠାରେ ଇସ୍ପାତ କାରଖାନା ପ୍ରତିଷ୍ଠାନକୁ ଆପଣ ବିରୋଧ କରିଛନ୍ତି । ଏହା ଯଥାର୍ଥ କି ?

ଉ : ଏହାର ଉତ୍ତରରେ ରବି ରାୟ କୁହନ୍ତି 'ବିରୋଧ' ଶବ୍ଦ ପ୍ରୟୋଗ ଠିକ୍ ନୁହେଁ । ପ୍ରଥମେ ଦେଖିବାର କଥା ବିକାଶ ସପକ୍ଷରେ ସମାଗ୍ରିକ ଦୃଷ୍ଟିଭଙ୍ଗୀ । ଏହାର ଅଭାବ ରହିଛି ଓଡ଼ିଶାରେ । ଏସବୁ ଉଦାରୀକରଣର ଫଳ । ଏଇ ଉଦାରୀକରଣ ଶବ୍ଦ କାନକୁ ଭଲ ଶୁଭୁଛି । ଏହା ପାଶ୍ଚାତ୍ୟ ଉପନିବେଶବାଦର ଅନ୍ୟ ଏକ ଛଦ୍ମରୂପ । ସେତେବେଳେ ଉପନିବେଶବାଦ ଜରିଆରେ ଆମେ ଯେମିତି ଶୋଷିତ ହେଉଥିଲେ, ପାଶ୍ଚାତ୍ୟ ଦେଶମାନେ ଉପନିବେଶ ହରାଇଲା ପରେ ଏହି ଉଦାରୀକରଣ ନାଆଁରେ ଆମେରିକାର ନେତୃତ୍ୱରେ କେତେକ ପାଶ୍ଚାତ୍ୟ ଧନୀରାଷ୍ଟ୍ର ଆମ୍ଭମାନଙ୍କ ଉପରେ ଆଧିପତ୍ୟ ଜାହିର କରି ଶୋଷଣ କରିବେ । ସେତେବେଳେ ଏହାକୁ ସେମାନେ ଆଖ୍ୟା ଦେଇ କହିଥିଲେ ଆମେ 'ସଭ୍ୟ' କରିବାକୁ ଆସିଛୁ । ବର୍ତ୍ତମାନ ପରିପ୍ରେକ୍ଷୀରେ କହିଲେ ଆମେ 'ସର୍ବସ୍ୱାନ୍ତ' କରିବୁ । ସେମାନଙ୍କ ପାଖରେ ଏହା ଏକ ହତିଆର ସଦୃଶ । ଏକଥା ଜନସାଧାରଣ ବୁଝି ପାରୁନାହାନ୍ତି । ମୁଁ ଆଉଟିକେ ଗଭୀରକୁ ଯାଉଛି । କଥା ହେଉଛି, ଆମ ବିକାଶର ଉପାଦାନ । ସ୍ୱାଧୀନତାର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସମୟରେ ଶିଳ୍ପୀକରଣ ହେଲା । କଲିକତା, ବମ୍ବେ, କାନପୁର ଆଦି ଜାଗାରେ ଗଢ଼ିଉଠିଲା ବଡ ବଡ ଶିଳ୍ପ କାରଖାନା । ସେସବୁ ଅଂଚଳରେ ଉଚ୍ଛେଦ ପ୍ରକ୍ରିୟା ଚାଲିଲା । ତାର ପାର୍ଶ୍ୱବର୍ତ୍ତୀ ଅଂଚଳଗୁଡ଼ିକ ଦାରିଦ୍ର୍ୟ, ଅଭାବ, ଅନଟନ, ବେକାରୀ ଏବଂ ଯାବତୀୟ କୁତ୍ସିତ ପରିବେଶରେ ସଂଶ୍ଳିଷ୍ଟ ହେଲା । ସେତେବେଳେ ତାହା ସ୍ୱାଧୀନତା ପରବର୍ତ୍ତୀ କାଳ । ଆମେ ତା'ର ବିରୋଧ କରିଥିଲୁ । ଏସବୁକୁ ସେତେବେଳେ କୁହାଯାଉଥିଲା ଆମେ ଗୋଟିଏ ଗୋଟିଏ 'ନୂତନ ମନ୍ଦିର' ତିଆରି କରିବୁ । କିନ୍ତୁ ପ୍ରକୃତରେ ଏସବୁ ଥିଲା ଏକ ଏକ ଦ୍ୱୀପ ଏବଂ ତାର ଚତୁଃପାର୍ଶ୍ୱରେ ଥିଲା ଦାରିଦ୍ର୍ୟ, ଅସହାୟତା ଏବଂ ନିର୍ଯ୍ୟାତନାର ସମୁଦ୍ର । ସେତେବେଳେ ଏ ଯେଉଁ ମାନସିକତା ତାହା ସରକାର ନିଜେ ସ୍ଥିର କରୁଥିଲେ । କିନ୍ତୁ ବର୍ତ୍ତମାନ ସରକାରଙ୍କ ଆଢୁଆଳେ ଆଉ ଏକ ଲୁକ୍କାୟିତ ଶକ୍ତି କାମ କରୁଛି ଯୋଉ ଶକ୍ତି ଏକଦା ବ୍ରିଟିଶ ସରକାରର ଗୋଲାମୀ କରି ପ୍ରଚ୍ଛଦପଟରେ ଉପନିବେଶବାଦକୁ ସମର୍ଥନ କରୁଥିଲା । ଏ ଯେଉଁ ଉଦାରୀକରଣ ଆସିଲା ଏସବୁ ପାଶ୍ଚାତ୍ୟ ଦେଶମାନଙ୍କ ହାତରେ ଏକ ଏକ ଅସ୍ତ୍ର ରୂପରେ ତୃତୀୟ ବିଶ୍ୱର ଦେଶମାନଙ୍କୁ ଭୟଭୀତ କରାଇ ଶୋଷଣ କରିବା । ବିଶ୍ୱବ୍ୟାଙ୍କ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ବିଶ୍ୱବାଣିଜ୍ୟ ସଂଘ ଏସବୁ ଏକ ଏକ ନମୁନା । ସମ୍ବିଧାନର ଆଦ୍ୟକଥନରେ କ'ଣ ଅଛି ? ''ଆମେ ଭାରତୀୟ ଜନସାଧାରଣ ଆମକୁ ଶାସିତ ହେବାର ଅଧିକାର ଦେଉଛୁ ।'' ତାକୁ ବର୍ତ୍ତମାନ ପରିପ୍ରେକ୍ଷୀରେ ଯଦି କୁହାଯିବ ତେବେ ଏଇଆ ହେବ - ଆମେ ମୁଷ୍ଟିମେୟ କିଛି ଅଭିଜାତବର୍ଗ ଏଇ ସମ୍ବିଧାନ ଦେଉଛୁ ।

ଗୋପାଳପୁର ଅଂଚଳର ସାଧାରଣ ଲୋକେ କିଆ ଗଛରୁ ଅତର ତିଆରି କରି ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଏପରିକି ପୃଥିବୀର ବିଭିନ୍ନ ସ୍ଥାନକୁ ରପ୍ତାନି କରୁଥିଲେ । ପ୍ରକୃତି ସହିତ ସେମାନଙ୍କର ସଂପର୍କ ନିବିଡ । ପ୍ରକୃତିଦତ୍ତ ଜିନିଷ । ମଣିଷ ଦେଇନି କିଛି । ଘରେ ଘରେ କୁଟୀର ଶିଳ୍ପ । ସେମାନେ ତାଙ୍କ ଉଦ୍ୟମର ରୂପରେଖକୁ ସାଧୁଶବ୍ଦ ମଧ୍ୟରେ ବ୍ୟବହାର କରିଛନ୍ତି । ତାହା ହେଲା 'ଉଦ୍ୟାନ' । ନଡ଼ିଆ, ପଣସ, ଆମ୍ବ, ବିଭିନ୍ନ କିସମର ଗଛ । ସେ ଭଳି ବିସ୍ତୃତ ଇଲାକାକୁ ଟାଟାକୁ ଦିଆଗଲା । ସେ ଇସ୍ପାତ ତିଆରି କରି ରପ୍ତାନି କରିବ ବିଦେଶକୁ । ଓଡ଼ିଶାରେ ତତ୍କାଳୀନ

ସରକାରରେ ମୁଖ୍ୟ ଥିବା ଜାନକୀ ବାବୁଙ୍କୁ କ୍ଷମା ନାହିଁ, ସେ ଜମି ସବୁକୁ ଟାଟାକୁ ହସ୍ତାନ୍ତର କଲେ । ମୁଁ ଯଦି ଓଡ଼ିଆ ତଥା ଭାରତୀୟ ହିସାବରେ ଏହାର ବିରୋଧ କରିନଥାନ୍ତି ତେବେ ମୁଁ ନିଜକୁ କେବେ କ୍ଷମା ଦେଇନଥାନ୍ତି ।

ପ୍ରଶ୍ନ : ବର୍ତ୍ତମାନ ଅବସ୍ଥା କ'ଣ ?

ବର୍ତ୍ତମାନ ଟାଟା ହାତରେ ଜମି ଅଛି । ଲୋକମାନେ ସେଇଠି ଅଛନ୍ତି । ମୋର କହିବା କଥା ସରକାର ବିକଳ୍ପ ରୋଜଗାର ଦେଇପାରିଲା ନାହିଁ । ସରକାରର ଦବାର କ୍ଷମତା ନାହିଁ । ଥାଉ ନେଇଯିବାର କ୍ଷମତା ଅଛି ? ସରକାର ଆଉ ରୋଜଗାର ଦେବେ ଏହା ଆକାଶ କଇଁଆ, ଚିଲିକା ମାଛ । ଉଦାରୀକରଣର ଏ ହେଉଛି କରାଳ ରୂପ । ଏବେ ଏକ ହାୱା ଉଠିଛି ରୋଜଗାର ଦେବା ସରକାରର କର୍ତ୍ତବ୍ୟ ନୁହେଁ !

ତଥାକଥିତ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଲୋକେ ଯେଉଁମାନେ ଷଡଯନ୍ତ୍ରରେ ସାମିଲ ଅଛନ୍ତି, ସେମାନଙ୍କ ଭାଷାରେ ଲୋକେ ମରନ୍ତୁ, ଆମର ଷ୍ଟିଲ ପ୍ଲାଣ୍ଟ ବିଲ୍ଡିଂ ହେବ ତ ! ଏହି କିଛି ମୁଷ୍ଟିମେୟ ଗୋଷ୍ଠୀଙ୍କ ସହ ଟାଟାର କି ସଂପର୍କ, ମିଡିଆର କି ସଂପର୍କ ତାହା ଏକ ପ୍ରଶ୍ନବାଚୀ । ଉଦାରୀକରଣର ଅନ୍ୟ ଏକ ନଗ୍ନରୂପର ପ୍ରକାଶ ଟାଟାର ଚିଲିକା ଅଂଚଳରେ ଚିଙ୍ଗୁଡ଼ି ଚାଷ ।

ପ୍ରଶ୍ନ : କାଶୀପୁର କଥା କ'ଣ ?

ଉ : ଏକା କଥା । ଏମିତି କାଶୀପୁର ହୋଇଚାଲିଥିବ । ଯଦି ନ୍ୟାୟାଳୟ ନଥାନ୍ତା ତା'ହେଲେ ପ୍ରକୃତିର କେତେ ଯେ କ୍ଷତି ହେଉଥାନ୍ତା ତାହା ବର୍ଣ୍ଣନାତୀତ ।

ଟାଟା ହଟିଯିବା ପରେ ଏବେ କାଶୀପୁର ଘଟଣା । ବିସ୍ତୀର୍ଣ୍ଣ ଜଙ୍ଗଲ ଅଞ୍ଚଳ । ଅଧିକାଂଶ ଆଦିବାସୀ । ଜଙ୍ଗଲକୁ ରକ୍ଷାକରେ ଆଦିବାସୀ । ଆଦିବାସୀକୁ ଜଙ୍ଗଲ । ଉଭୟେ ଉଭୟଙ୍କର ପରିପୂରକ । ଝରଣା ସହ ପ୍ରାକୃତିକ ସଂପଦରେ ପରିପୂର୍ଣ୍ଣ ପରିବେଶ । ନରୱେ କଂପାନୀ ଓ ଆଦିତ୍ୟ ବିରଲାଙ୍କର ସେଠାକାର ପ୍ରାକୃତିକ ସଂପଦ ବକ୍ସାଇଟରେ ତାଙ୍କର ଆଖି । ବକ୍ସାଇଟର ମାଲିକାନା । ଆଦିବାସୀମାନଙ୍କୁ ଉଚ୍ଛେଦ କରିବାକୁ ହେବ । ଆଦିବାସୀମାନେ କହିଲେ ଆମେ ଜମି ଛାଡ଼ିଲେ ଚଳିବୁ କେମିତି ? ସରକାର ଯଦି ଖଣି ଖୋଲିବେ ତେବେ ଝରଣାର ସ୍ରୋତ ବନ୍ଦ ହୋଇଯିବ ସବୁଦିନ ପାଇଁ । ସରକାରଙ୍କ ପାଖେ ଜବାବ୍ ନାହିଁ । ସମଗ୍ର ଅଂଚଳ ମରୁଭୂମି ହେବ । ଆମେ ଚଳିବୁ କେମିତି ? ମୋର କହିବାର କଥା, ଆଦିବାସୀମାନଙ୍କୁ ରୋଜଗାର ଦିଅ । ଥଇଥାନର ବ୍ୟବସ୍ଥା କର । ତା'ପରେ ଯେଉଁ କଥା ।

ସମ୍ବିଧାନର ୫ମ ଧାରାରେ (Scheduled Area) ସଂପର୍କରେ ଉଲ୍ଲେଖ ରହିଛି । ଆଦିବାସୀମାନଙ୍କ ଜମିକୁ ହସ୍ତାନ୍ତର କରାଯାଇ ପାରିବ ନାହିଁ ।

ପ୍ରଶ୍ନ : ଆପଣ ଉଦ୍ୟୋଗୀକରଣକୁ ବିରୋଧ କରୁଛନ୍ତି । ଭାରତବର୍ଷ ତଥା ବିଦେଶର ଯେଉଁ ଯେଉଁ ସ୍ଥାନ ଶିଳ୍ପ ସମୃଦ୍ଧ ହୋଇଛି ସେଥିରେ ଏସବୁ ସମସ୍ୟା ମଧ୍ୟ ଥିଲା । ରହିବ ମଧ୍ୟ । ପରବର୍ତ୍ତୀ ସମୟରେ ଶିଳ୍ପୀକରଣରେ ଦେଶ ସମୃଦ୍ଧି ହୋଇଛି ।

ଉ : ମୁଁ କହୁଛି ଉଦ୍ୟୋଗୀକରଣ କ'ଣ ? ପ୍ରଥମେ 'ହାତ' । ଆମେ ଆମର ଅଜାଣତରେ ଦେଶଦ୍ରୋହୀ ହୋଇଯାଉଛୁ । ଆମର ପୁଂଜି ହେଉଛି ମଣିଷ । ସେମାନଙ୍କୁ ଉପଯୋଗ କରାଇ ତାକୁ ରୋଜଗାରକ୍ଷମ କରିବା ଏବଂ ଦେଶର ଉତ୍ପାଦନ ବଢ଼ାଇବା ଆମର କର୍ତ୍ତବ୍ୟ । ସେମାନଙ୍କ କଥା ସଂପୂର୍ଣ୍ଣ ଭୁଲି ଯିବା ଉଚିତ ନୁହେଁ । ଲୋକେ ଯାହା ହେବାର ହୁଅନ୍ତୁ - ବହୁରାଷ୍ଟ୍ରୀୟ କଂପାନୀ ମାନଙ୍କର ଏ ହେଉଛି ନିଶା । ଉଦାରୀକରଣର ଏ ହେଉଛି ପ୍ରକ୍ରିୟା ।

ପ୍ରଶ୍ନ : ଏକଦା ସମ୍ବିଧାନର ୩୫୬ ଧାରା ପରିବର୍ତ୍ତନ ଉପରେ ବହୁ ବାଦ ବିସମ୍ବାଦ ପ୍ରକାଶ ପାଇଥିଲା । ବିରୋଧୀ ଦଳମାନେ ମଧ୍ୟ ସମର୍ଥନ କରିଥିଲେ । ଆପଣଙ୍କ ମତ କ'ଣ ?

ମୋ ମତରେ ସମ୍ବିଧାନର ୩୫୬ ଧାରା ବିଷୟରେ କେବଳ ଯେ ସମ୍ବିଧାନ ବିଶେଷଜ୍ଞମାନେ ଚିନ୍ତା କରିବା ଉଚିତ । ଯେତେବେଳେ ସାମ୍ବିଧାନିକ ଶାସନ ପ୍ରକ୍ରିୟା ବିପର୍ଯ୍ୟସ୍ତ ହୋଇଥାଏ, ହିଂସାତ୍ମକ କାର୍ଯ୍ୟକଳାପ ଉଗ୍ରରୂପ ଧାରଣ କରେ ଯାହାଫଳରେ ସରକାର ଚଳାଇବା ଅସମ୍ଭବ ହୋଇପଡ଼େ, ସେତେବେଳେ ଏହାର ଦରକାର ପଡେ । କିନ୍ତୁ ଏହାର ଦୁରୁପଯୋଗ କରାଯାଇଛି ଜବାହରଲାଲ ନେହରୁଙ୍କ ସମୟରେ ଏବଂ ପରବର୍ତ୍ତୀ କାଳରେ ଇନ୍ଦିରା ଗାନ୍ଧୀଙ୍କ ସମୟରେ । ତତ୍କାଳୀନ ମାଡ୍ରାସ ଷ୍ଟେଟରେ କମ୍ୟୁନିଷ୍ଟ ଶାସନକାଳରେ କଂଗ୍ରେସ ନିଜକୁ ଜାହିର କରିବାକୁ ଯାଇ ଅଣ-କଂଗ୍ରେସ ମନ୍ତ୍ରିମଣ୍ଡଳକୁ ଭାଙ୍ଗି ଦେଇଛି । ୧୯୫୭ ସାଲରେ କେରଳରେ କମ୍ୟୁନିଷ୍ଟ ମନ୍ତ୍ରିମଣ୍ଡଳକୁ ଭାଙ୍ଗି ଦିଆଗଲା । ବାପା ଜବାହରଲାଲ ନେହରୁ ପ୍ରଧାନମନ୍ତ୍ରୀ । ଝିଅ ଇନ୍ଦିରା କଂଗ୍ରେସ ସଭାପତି । କେତେକ କହନ୍ତି ଜବାହରଙ୍କ ଇଚ୍ଛା ବିରୋଧରେ ଏହା ହୋଇଥିଲା । ମୁଁ କିନ୍ତୁ ଏକଥା ମାନେନା । ଏ ଦୁଇଟି ଆରମ୍ଭ ହୋଇଥିଲା କଂଗ୍ରେସ ଶାସନରୁ । ଅଦ୍ୟାବଧି ୮୫ ଥର ୩୫୬ ଧାରାର ଦୁରୁପଯୋଗ ହେଲାଣି । ୩୫୬ ଧାରା କହିଲେ ଲୋକେ ପ୍ରମାଦ ଗଣିବେ । ରାଜ୍ୟ ଶାସନ ବଦଳରେ କେନ୍ଦ୍ରଶାସନ ।

ପ୍ରଶ୍ନ : ମହିଳା ଆରକ୍ଷଣ ବିଲ୍ ଉପରେ ଆପଣଙ୍କ ମତ କ'ଣ ?

ଉ : ରାଜନୈତିକ ଦଳମାନଙ୍କୁ କ୍ଷମା ନାହିଁ ଯେ ସେମାନେ ମହିଳାମାନଙ୍କୁ ସଶକ୍ତିକରଣ କରିବାରେ ପଛଘୁଞ୍ଚା ଦେଉଛନ୍ତି । ଯେଉଁ ଦେଶରେ ଅଧେ ମହିଳା ସେମାନଙ୍କୁ ପୁରୁଷମାନଙ୍କ ସହିତ କାନ୍ଧ ମିଳାଇ ଦେଶକୁ ଗଢ଼ିବା ପାଇଁ ସୁଯୋଗ ନଦେବା ଦୁଃଖଦାୟକ ଘଟଣା । ବାଜପାୟୀ ସରକାର କାହିଁକି ଏପର୍ଯ୍ୟନ୍ତ କରି ପାରିନାହାନ୍ତି ? ଯେତେ ତାର ନିନ୍ଦା କରାଯିବା କଥା ସେତେ ଭଲ ।

ପ୍ରଶ୍ନ : କିଛି ରାଜନୈତିକ ନେତା ଏହାର ବିରୋଧ କରୁଛନ୍ତି ବିହାର ଏବଂ ୟୁପିରେ ।

ଉ : ମୋର ହୃଦବୋଧ ହେଉଛି ଏହା ପାଶ୍ ହେବ । ସେମାନେ କହିବାକୁ ବାଧ ହେବେ । ଏହାକୁ ବିରୋଧ କୁହାଯିବ ନାହିଁ, ବରଂ ଆଶଙ୍କା କୁହାଯିବ । ଆଶଙ୍କା ହେଉଛି ଯେ ଆରକ୍ଷଣରେ ଉଚ୍ଚ ଜାତିର ଫ୍ୟାସନେବଲ୍ ମହିଳାମାନେ ଆସିଯିବେ । ଯେଉଁମାନେ ଜାତି ଦୃଷ୍ଟିରୁ ଶିକ୍ଷା ଦୃଷ୍ଟିରୁ ପଛୁଆ ଅଛନ୍ତି । ସେଇ ମହିଳାମାନେ ନିର୍ବାଚିତ ହୋଇ ଆସିପାରିବେ ନାହିଁ । ମୋର କହିବା କଥା

ମହିଳାଙ୍କ ଜାତି ନାହିଁ । ପ୍ରଥମେ ଆଇନ ପାଶ କରିଦିଅ । ତା'ପରେ ତମର କାମ ହେବ ମହିଳାମାନଙ୍କୁ ସଶକ୍ତିକରଣ କରି ପଠାଇବାକୁ । ମୋ ମତରେ ତଥାକଥିତ ଡିଗ୍ରୀଧାରୀ ମହିଳାମାନଙ୍କ ଠାରୁ ପଛୁଆ ବର୍ଗର ମହିଳାମାନେ ବହୁତ ଅଛନ୍ତି ଯେଉଁମାନେ ପାର୍ଲାମେଣ୍ଟରେ ଭଲ କରିଛନ୍ତି । ଏହା ମୋର ଦୀର୍ଘ ବର୍ଷର ଅଭିଜ୍ଞତା ପାର୍ଲାମେଣ୍ଟରେ । ସାଧାରଣ ଭାବେ ଆସିଥିବା ମହିଳାମାନେ ବେଶ୍ ନାଁ କରିଥିଲେ । ସରଳ ଭାବେ କହିଲେ ଏଇ କଥା ନଣରେ ପହଁରିବା ସାଙ୍ଗେ ସମାନ । ନଣକୁ ଯଦି ଜଣକୁ ନନେବ ତେବେ ସେ ପହଁରିବ କେମିତି ?

ପ୍ରଶ୍ନ : ଆପଣଙ୍କର 'ଲୋକଶକ୍ତି ଅଭିଯାନ'ର ଆଭିମୁଖ୍ୟ କ'ଣ ? ଭାରତବର୍ଷ ବିଶେଷକରି ଓଡ଼ିଶାରେ ଏହାର ରୂପରେଖ କିପରି ?

ଉ : ମୁଁ ଗଣତାନ୍ତ୍ରିକ ସମାଜବାଦରେ ବିଶ୍ୱାସ କରେ । ଗଣତନ୍ତ୍ର ବିନା ସମାଜବାଦ ନାହିଁ । ସମାଜବାଦ ବିନା ଗଣତନ୍ତ୍ର ନାହିଁ । ଭାରତବର୍ଷ ଏକ ଗଣତାନ୍ତ୍ରିକ ରାଷ୍ଟ୍ର । ରାଜନୈତିକ ଦଳର ଆବଶ୍ୟକତା ଅଛି । ମୁଁ ଯେତେବେଳେ ବାଚସ୍ପତି ହେଲି, ଦଳମତ ନିର୍ବିଶେଷରେ କାମ କଲି ଏବଂ ବାଚସ୍ପତିଙ୍କର ଗାରିମାକୁ ଅବ୍ୟାହତ ରଖିଲି । ଆଦର୍ଶବାଦରୁ ବିଚ୍ୟୁତ ହୋଇନାହିଁ । ମୋର ବଦ୍ଧମୂଳ ଧାରଣା ସଂସଦୀୟ ଗଣତନ୍ତ୍ର ହିଁ ଗଣତନ୍ତ୍ରକୁ ଆଗକୁ ନେବ । ସକ୍ରିୟ ରାଜନୀତିରେ ଥିଲାବେଳେ ରାଜନୀତିକ ନେତାମାନଙ୍କ ସହ ସୁସମ୍ପର୍କ ଥିଲା । ମୁଁ ଭଲଭାବେ ହୃଦୟଙ୍ଗମ କଲି ତତ୍କାଳୀନ ନେତାମାନଙ୍କର କଥା ସହ କାମର କୌଣସି ସମ୍ପର୍କ ନାହିଁ । ସମ୍ବିଧାନରେ ଯେଉଁ ନିର୍ଦ୍ଦେଶ ଓ ଅଧିକାର ଦିଆଯାଇଛି ସେଥିରେ ସେମାନଙ୍କର ବିଶ୍ୱାସ ନାହିଁ । ଗଣତନ୍ତ୍ରକୁ ବଂଚାଇବାକୁ ହେଲେ ମୋର ନିର୍ଦ୍ଦିଷ୍ଟ ମତ ହେଲା ଲୋକେ ଭଲ ।

ପ୍ରକୃତି ସବୁ ଦେଇଛି ଆମକୁ । ରାଜନୈତିକ ନେତାମାନଙ୍କ ଅବିମୃଶ୍ୟକାରିତା, ଆଦର୍ଶ ବିଚ୍ୟୁତି ସୁବିଧାବାଦୀ ନୀତି ପାଇଁ ଆମେ ରସାତଳକୁ ଯାଉଛୁ । ଏସବୁର କାରଣ ଖୋଜିବାକୁ ଯାଇ ପାର୍ଲାମେଣ୍ଟରେ ସଭ୍ୟ ଥିଲାବେଳେ ୧୯୯୦ ମସିହାରେ ମୁଁ ଦୁଇଟି ପଛୁଆ ପଡୋଶୀ ରାଜ୍ୟ ବିହାର ଓ ଓଡ଼ିଶା ପାଇଁ Social Audit ର ବନ୍ଦୋବସ୍ତ କରିଥିଲି । ଦୁଇଟି ଜନତାଦଳ ଶାସିତ ରାଜ୍ୟ । ଗୋଟିକରେ ଲାଲୁ ଯାଦବ, ଅନ୍ୟଟିରେ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ । ଦେଖିଲି, ସେମାନେ ଠିକ୍ କଂଗ୍ରେସର ପଦାଙ୍କ ଅନୁସରଣରେ ଲାଗିଛନ୍ତି । ସେଇ ଦୁର୍ନୀତି, ସେଇ ପ୍ରତିଶ୍ରୁତିହୀନତା । ଏସବୁ ଦେଖିଲାପରେ ମୁଁ ଗଭୀର ଭାବେ ଚିନ୍ତାକଲି । ଲୋକଶକ୍ତି ହିଁ ସବୁରି ମୂଳରେ । ଗାନ୍ଧୀଙ୍କର 'ଗ୍ରାମ ସ୍ୱରାଜ୍ୟ', ଏବଂ ଡଃ ଲୋହିଆଙ୍କ 'ଚଉଖମ୍ବା' ୪ଟି ଖମ୍ବ (କେନ୍ଦ୍ର ରାଜ୍ୟ, ଜିଲ୍ଲା, ଗାଁ) ଏମାନଙ୍କ ଭିତରେ ସମନ୍ୱୟ । ଅହିଂସାତ୍ମକ ଗଣ ଆନ୍ଦୋଳନ ସାମ୍ବିଧାନିକ ମୂଲ୍ୟବୋଧକୁ ପୁନଃ ପ୍ରତିଷ୍ଠିତ କରିପାରିବ । ଯଦି ନୂଆ ଶକ୍ତି ଆସିବ ନାହିଁ ଆର୍ଥିକ ସୁରକ୍ଷା ଏବଂ ଶାନ୍ତି ଫେରିଆସିବ କିପରି ? ମୁଁ ଲେଖିଲି - 'Where did we go wrong ?" ଅର୍ଥାତ୍ ଆମେ ବାଟ ଭୁଲିଲୁ କେଉଁଠି ? ବୁଦ୍ଧିଜୀବୀମାନଙ୍କ ଭିତରେ ଏହା ଏକ ଆଲୋଡନ ସୃଷ୍ଟି କରିଥିଲା । ଦିଲ୍ଲୀ, ଓଡ଼ିଶା ଓ ବିଭିନ୍ନ ପ୍ରଦେଶରୁ ବହୁ ସଂଖ୍ୟାରେ ଚିଠିପତ୍ର ମିଳିଲା । ସେ ଲେଖା ସେମାନେ ବିଶ୍ଳେଷଣ କଲେ । ଏକ ସମ୍ମିଳନୀର ଆୟୋଜନ ମଧ୍ୟ ସେମାନେ କଲେ । ମୋତେ

ଉଦ୍‌ଘାଟନ କରିବାକୁ କହିଲେ । ଏଥିରେ ଜଷ୍ଟିସ୍ ସାମନ୍ତ, ପ୍ରେସ କାଉନସିଲର ଅଧକ୍ଷ, ସାମ୍ବାଦିକ ପ୍ରଭାତ ଯୋଶୀ ପ୍ରମୁଖ ଯୋଗ ଦେଇଥିଲେ । ''ଆମେ ବାଟ ହୁଡିଲୁ କେଉଁଠି'ର ଗଭୀର ଅନୁଶୀଳନ ହୋଇଥିଲା ସେ ସଭାରେ । ମୋ ଭାଷଣରେ ମୁଁ ଗୁରୁତ୍ୱ ଦେଇ କହିଥିଲି ଯେ, ତିନୋଟି ଶତ୍ରୁକୁ ମୁଁ ଚିହ୍ନଟ କରିଛି । ପ୍ରଥମ ହେଲା ଉଚ୍ଚସ୍ତରୀୟ ଭ୍ରଷ୍ଟାଚାର, ଦ୍ୱିତୀୟ କେନ୍ଦ୍ରୀକରଣ । ତୃତୀୟ ଭୋଗବାଦ ଯଦି ପ୍ରଥମ ଓ ଦ୍ୱିତୀୟ ମିଶିଯାଏ ତେବେ ତୃତୀୟ ବଢ଼ିଚାଲିବ । ଦେଶ ଓ ରାଜ୍ୟସ୍ତରରେ ସାଧାରଣ ବୁଦ୍ଧିଜୀବୀ ଏହା ଗ୍ରହଣ କରିନେଲେ । ସେମାନେ ସମର୍ଥନ କଲେ । ଅନ୍ୟମାନଙ୍କ ମଧ୍ୟରେ କୁଳଦୀପ ନାୟାର ମଧ୍ୟ ଥିଲେ ସେଠାରେ । ସେମାନେ ଆମକୁ କର୍ମକର୍ତ୍ତା ରୂପେ ବାଛିବାକୁ ବାଧ କଲେ । ଆମେ କହିଲୁ ଆମେ ସଂଗଠନର କର୍ମକର୍ତ୍ତା ହେବୁନାହିଁ । ଯୁବଶକ୍ତି ଉଠିବା ଦରକାର । ଓଡ଼ିଶାରେ ପ୍ରଫୁଲ୍ଲ ସାମନ୍ତରା ଲୋକଶକ୍ତି ଅଭିଯାନର ସଭାପତି । ମୁଁ କହିବି ସେ ବହୁତ କାମ କରୁଛନ୍ତି । ଆଉ ମଧ୍ୟ ଅଛନ୍ତି ଗବେଷକ ସୁଧୀର ପଟ୍ଟନାୟକ, ସାମ୍ବାଦିକ ବିବେକାନନ୍ଦ ଦାସ । ଏ ତିନିଜଣ ଓଡ଼ିଶା ସାରା ବୁଲୁଛନ୍ତି । ଓଡ଼ିଶାରେ ଅନାହାର ମୃତ୍ୟୁ, ଗୋପାଳପୁର, ରାୟଗଡ଼ାଠାରେ ବହୁରାଷ୍ଟ୍ରୀୟ କମ୍ପାନୀର ପ୍ରାଦୁର୍ଭାବକୁ ସେମାନେ ପ୍ରତିହତ କରୁଛନ୍ତି ।

ସେତେବେଳକୁ ରାତି ନଅ ବାଜିବା ଉପରେ । ବାହାରେ ବର୍ଷାର ଆୟୋଜନ । ରବି ରାୟ ବିଶେଷ ଚିନ୍ତାଶୀଳ ଜଣାପଡୁଥିଲେ । ତାଙ୍କୁ କହିବାକୁ ଅଛି ଅନେକ । କଥାର ଖିଅ ବଢ଼ି ବଢ଼ି ଚାଲିଛି । ସମୟ ନାହିଁ । ତାଙ୍କଠାରୁ ବିଦାୟ ନେଇ ମୁଁ ବାହାରି ଆସିଲି ପଦାକୁ । ଭାବୁଥିଲି - ବାର୍ଦ୍ଧକ୍ୟ କେବଳ ମନର ଏକ ଦୁର୍ଭାବନା । ଶରୀରରେ ଥାଏ ବାର୍ଦ୍ଧକ୍ୟ । ମନରେ ନୁହେଁ । ଅଶୀତି ପୂର୍ବ ଏହି ଜନନାୟକ ଏହାର ଏକ ଉଦାହରଣ । କେତେ ସକ୍ରିୟ କେତେ ସଚେତନ !



# ଜଗତୀକରଣ ଓ ବୈଷମ୍ୟ ବିରୁଦ୍ଧରେ ସମତାବାଦୀ ଜନ ଆନ୍ଦୋଳନ ଆବଶ୍ୟକ

(ମଣିଷର ବାର୍ତ୍ତାବହ ସ୍ୱାଭିମାନ ସହ ସାକ୍ଷାତକାର ତା. ୧.୧୧.୨୦୦୧ରେ ପ୍ରକାଶିତ)

**ପ୍ରଶ୍ନ -୧ ଭାରତବର୍ଷରେ ସମାଜବାଦୀ ଆନ୍ଦୋଳନ ସଂପୂର୍ଣ୍ଣରୂପେ ନିଷ୍କ୍ରିୟ ହୋଇପଡ଼ିଲା କାହିଁକି ?**

ଉତ୍ତର : ଭାରତବର୍ଷରେ ସମାଜବାଦୀ ଆନ୍ଦୋଳନର ଇତିହାସକୁ ଯଦି ଅନୁଶୀଳନ କରାଯାଏ, ତାହାହେଲେ ଆମେ ଏହି ଉପସଂହାରରେ ପହଞ୍ଚିବାଯେ ଯଦିଓ ଏହାର ନେତୃତ୍ୱ ଆମ ଦେଶର ବହୁତ ବିପ୍ଲବୀ ଓ ପ୍ରଖ୍ୟାତ ବୁଦ୍ଧିଜୀବୀଙ୍କ ଦ୍ୱାରା ଆରମ୍ଭ ହୋଇଥିଲା, ଏହାର ଗଠନର ଅୟମାରମ୍ଭରୁ ବିଭିନ୍ନ ପ୍ରକାରର ସଂକଟ ଦେଖାଦେଇଥିଲା । ବିଶେଷ କରି ସିଦ୍ଧାନ୍ତ ଓ ବିଚାରଜନିତ ସଂକଟ ସବୁଠାରୁ ମହତ୍ୱପୂର୍ଣ୍ଣ ବୋଲି କୁହାଯାଇପାରେ । ପ୍ରଥମ ସାଧାରଣ ନିର୍ବାଚନ ଶେଷ ହେବାପରେ ପରେ କଂଗ୍ରେସ ପ୍ରତି କି ପ୍ରକାର ଦୃଷ୍ଟିଭଙ୍ଗୀ ପ୍ରଦର୍ଶନ କରାଯିବ ସେ ସଂପର୍କରେ ଗଭୀର ମତଭେଦ ଆରମ୍ଭ ହୋଇଯାଇଥିଲା । ଏ ସଂପର୍କରେ ମଧ୍ୟପ୍ରଦେଶର ପଞ୍ଚମାଡ଼ିଠାରେ ହୋଇଥିବା ସୋସାଲିଷ୍ଟ ପାର୍ଟିର ଜାତୀୟ ସମ୍ମିଳନୀ (୧୯୫୨) ପରେ ପରେ ଡଃ ରାମ ମନୋହର ଲୋହିଆ ଭାରତୀୟ ପରିପ୍ରେକ୍ଷୀରେ ସମାଜବାଦୀ ଆନ୍ଦୋଳନର ରୂପରେଖ ସମ୍ମିଳନୀରେ ଯେପରି ଭାବେ ଉପସ୍ଥାପିତ କରିଥିଲେ, ସେ ସବୁକୁ ସମ୍ମିଳନୀ ସଂପୂର୍ଣ୍ଣ ରୂପେ ମାନି ନେଇଥିଲା । ଏହି ସମ୍ମିଳନୀରେ ସେ ସ୍ପଷ୍ଟଭାବରେ କହିଥିଲେ ଯେ, ଦୁନିଆ ତଥା ବିଶେଷ କରି ଭାରତରେ ପୁଞ୍ଜିବାଦ ଓ କମ୍ୟୁନିଷ୍ଟବାଦ ସମାନ ଭାବରେ ନିରର୍ଥକ । ଏକ ସମତାବାଦୀ ଓ ସମୃଦ୍ଧ ବିଶ୍ୱ ବା ଭାରତବର୍ଷ ସମାଜବାଦ ଦ୍ୱାରା ହିଁ ସମ୍ଭବପର ବୋଲି କହିଥିଲେ । ସେ ଏହାକୁ ଏକ ନୂତନ ସଭ୍ୟତା ଆଡ଼କୁ ଏକ ନୂତନ ପଦକ୍ଷେପ ହେବ ବୋଲି ମଧ୍ୟ ଘୋଷଣା କରିଥିଲେ । ଏହାପରେ ସମାଜବାଦୀ ଆନ୍ଦୋଳନରେ ବାରଂବାର ବିଭାଜନ ସଂଗଠନ କଳେବରକୁ ସଂକୁଚିତ କରିବାରେ ସହାୟକ ହୋଇଥିଲା ।

ପ୍ରଥମ ସାଧାରଣ ନିର୍ବାଚନପରେ ଆଚାର୍ଯ୍ୟ କ୍ରିପାଳିନୀଙ୍କର କିସାନ ମଜଦୁର ପ୍ରଜାପାର୍ଟି ସହ ସୋସାଲିଷ୍ଟ ପାର୍ଟିର ସଂପୂର୍ଣ୍ଣ ଏକତ୍ର ହୋଇ ଗଲାପରେ ଡ଼ଃ. ଲୋହିଆ ଓ ସାଦିକଅଲ୍ଲୀ (ସ୍ୱାଧୀନତା ଆନ୍ଦୋଳନ ବେଳେ ଅଖିଳ ଭାରତ କଂଗ୍ରେସ କମିଟିର ବହୁବର୍ଷ ଧରି ଅଫିସ ସଂପାଦକ ଥିଲେ)ଙ୍କ ନେତୃତ୍ୱରେ ପ୍ରଜା ସୋସାଲିଷ୍ଟ ପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମର (ଉଭୟ ସାଂଗଠନିକ ଓ ଆନ୍ଦୋଳନାତ୍ମକ) ଖସଡ଼ା ତିଆର କରିବା ପାଇଁ କମିସନ ବସାଯାଇଥିଲା । ଏହି କମିସନର ରିପୋର୍ଟ ଗୃହୀତ ହେଲାପରେ ପାର୍ଟିର ପ୍ରତିଷ୍ଠିତ ନେତାମାନେ ତାହାର ବିରୁଦ୍ଧାଚରଣ କରିବା ଆରମ୍ଭ କଲେ । ଏହି ରିପୋର୍ଟକୁ କାର୍ଯ୍ୟକାରୀ କରିବାପାଇଁ ଡଃ ଲୋହିଆଙ୍କୁ ପାର୍ଟିର ସାଧାରଣ ସଂପାଦକ ରୂପେ ନିର୍ବାଚିତ କରାଯାଇଥିଲେ ସୁଦ୍ଧା ପାର୍ଟିକୁ ଗତିଶୀଳ କରିବା ପାଇଁ

ପାର୍ଟିର ପ୍ରତିଷ୍ଠିତ ନେତାମାନଙ୍କ ଦ୍ୱାରା ବାଧା ଦିଆଯାଇଥିଲା । ଗୋଟିଏ ଐତିହାସିକ ଉଦାହରଣରୁ ଏହା ପରିସ୍ଫୁଟ ହୋଇଯିବ । ସେଇଟି ହେଲା ୧୯୫୪ ସାଲରେ କେରଳର ପଟମଥାନୁ ପିଲାଇଙ୍କ ଦ୍ୱାରା ପ୍ରଜାସୋସାଲିଷ୍ଟ ପାର୍ଟି ସରକାର ଗଠିତ ହୋଇଥିଲା । ଏହାଦେଶରେ ପ୍ରଥମ ଅଳ୍ପସଂଖ୍ୟକ ସରକାର । ଏହି ସରକାରଙ୍କ ଅମଳରେ କେରଳ ପ୍ରଦେଶରେ ତାମିଲ ସତ୍ୟାଗ୍ରହୀଙ୍କ ଉପରେ ପୋଲିସର ଗୁଳିଚାଳନାରେ ୫ ଜଣ ସତ୍ୟାଗ୍ରହୀଙ୍କ ମୃତ୍ୟୁ ହୋଇଥିଲା । ଏଣେ ପ୍ରଜା ସୋସାଲିଷ୍ଟ ପାର୍ଟିର ସାଧାରଣ ସଂପାଦକ ଡଃ ରାମ ମନୋହର ଲୋହିଆ ଜଳକର ବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନ କରି ଉତ୍ତରପ୍ରଦେଶର ଫାରୁକାବାଦ ଜେଲରେ ଥିଲେ । ଉତ୍ତର ପ୍ରଦେଶର ତତ୍‌କାଳୀନ ଗୃହମନ୍ତ୍ରୀ ଶ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ ତାଙ୍କୁ ଜେଲରୁ ମୁକ୍ତ କରିବା ପାଇଁ ମନା କରି ଦେଇଥିଲେ । ସେତିକିବେଳେ ଡଃ ଲୋହିଆ ଆଲାହାବାଦ ହାଇକୋର୍ଟରେ ଦେଶରେ ଅନ୍ୟାୟର ପ୍ରତିକାର ଦୃଷ୍ଟିରୁ ପ୍ରତ୍ୟେକ ନାଗରିକର ସତ୍ୟାଗ୍ରହ କରିବା ଅଧିକାର ଅଛି ବୋଲି ଯେଉଁ ଯୁକ୍ତି ବାଢ଼ିଥିଲେ ତାହା ହାଇକୋର୍ଟ ଗ୍ରହଣ କରି ଡଃ ଲୋହିଆଙ୍କୁ ଖଲାସ କରିଥିଲେ ।

ସେ ଜେଲରେ ଥାଇ ପଟମଥାନୁ ପିଲାଇଙ୍କୁ ଇସ୍ତଫା ଦେବାପାଇଁ ନିର୍ଦ୍ଦେଶ ଦେଇ କହିଥିଲେ ଯେ, ଯେତେବେଳେ କଂଗ୍ରେସ ସରକାର ବିଭିନ୍ନ ରାଜ୍ୟରେ ଗୁଳି କରିବା ବିରୁଦ୍ଧରେ ଇସ୍ତଫା ମଗାଯାଉଛି ଏବଂ ବିଚାର ବିଭାଗୀୟ ତଦନ୍ତ କମିସନ ପାଇଁ ଦାବି କରାଯାଉଛି ସେତେବେଳେ ସୋସାଲିଷ୍ଟ ପାର୍ଟିର କେରଳ ସରକାର ପ୍ରତି ମଧ୍ୟ ଏହା ଲାଗୁ ହେବା ଦରକାର । ଅନ୍ୟପକ୍ଷରେ ପାର୍ଟିର କେନ୍ଦ୍ରୀୟ ନେତୃମଣ୍ଡଳୀ ଇସ୍ତଫା ନଦେବାକୁ ପରାମର୍ଶ ଦେଇଥିଲେ । ଏପରି ଭାବରେ ଦଳରେ ସଂକଟ ସୃଷ୍ଟି ହୋଇଥିଲା । ଯଦିଚ ପରେ ପରେ ଥାନୁପିଲାଇ ଦଳ ପରିବର୍ତ୍ତନ କରି କଂଗ୍ରେସୀ ହୋଇ ପଞ୍ଜାବର ରାଜ୍ୟପାଳ ହୋଇଯାଇଥିଲେ ଓ ସରକାର ଭାଙ୍ଗି ଯାଇଥିଲା । କିନ୍ତୁ ଡଃ ଲୋହିଆଙ୍କ ମତ ଅନୁଯାୟୀ ପାର୍ଟିର ନୀତି ଆଦର୍ଶ ପ୍ରତି ସମ୍ମାନ ଦେଇ ସରକାର ଇସ୍ତଫା ଦେଇଥାନ୍ତେ । ପରବର୍ତ୍ତୀ ସମୟରେ ଲୋକେ ପ୍ରଜା ସୋସାଲିଷ୍ଟପାର୍ଟିକୁ କଂଗ୍ରେସର ଉନ୍ନତତର ବିକଳ୍ପ ରୂପେ ଗ୍ରହଣ କରିନେଇଥାନ୍ତେ ।

ଦେଶର ସ୍ୱାଧୀନତା ଆନ୍ଦୋଳନର ପ୍ରଖ୍ୟାତ ବୀର ରୂପେ ପରିଚିତ ସୋସାଲିଷ୍ଟ ପାର୍ଟିର ମୁଖ୍ୟନେତା ମାନଙ୍କ ମଧ୍ୟରୁ ଜୟ ପ୍ରକାଶ ନାରାୟଣ ସର୍ବୋଦୟକୁ ଚାଲିଗଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଅକାଳ ବିୟୋଗ ହୋଇଗଲା । ଅରୁଣା ସରାଫ ଅଲ୍ଲୀ ଦଳଛାଡ଼ି କମ୍ୟୁନିଷ୍ଟ ପାର୍ଟିର ସମର୍ଥକ ହୋଇଗଲେ । ଅଶୋକ ମେହେଟାଙ୍କ ପରି ନେତାମାନେ କଂଗ୍ରେସକୁ ଚାଲିଗଲେ । ଓଡ଼ିଶା ସୋସାଲିଷ୍ଟ ପାର୍ଟିର ମୁଖ୍ୟନେତା ତଥା ତତ୍କାଳୀନ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠା ଅର୍ଜନ କରିଥିବା ନେତା ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ ମଧ୍ୟ କଂଗ୍ରେସକୁ ଚାଲିଗଲେ । ଡଃ ଲୋହିଆଙ୍କ ଅକାଳ ବିୟୋଗ ପରେ ସମାଜବାଦୀ ଆନ୍ଦୋଳନ ନୂତନ ପ୍ରେରଣା ପାଇବାରୁ ବଞ୍ଚିତ ହେଲା ।

**ପ୍ରଶ୍ନ ୨ : ଏହି ଆନ୍ଦୋଳନକୁ ପୁଣି ଥରେ ଗଢ଼ି ତୋଳିବାର ଆଶା ପୋଷଣ ରଖୁଛନ୍ତି କି ? ଯଦିହୁଏ ଆପଣଙ୍କର ଭୂମିକା କିପରି ହେବ ?**

ଉତ୍ତର : ସମାଜବାଦୀ ଆନ୍ଦୋଳନ ନୂତନ ସଭ୍ୟତାର ବାହକ ଥିଲା । ବର୍ତ୍ତମାନ ଏହାର ପ୍ରାସଙ୍ଗିକତା ଅତିମାତ୍ରାରେ ରହିଛି ଯେହେତୁ ଭାରତୀୟ ରାଜନୀତିରେ ଆଦର୍ଶବାଦିତା ତଥା ମୂଲ୍ୟବୋଧର ଅବକ୍ଷୟ ଘଟିବାବେଳେ ବିଚାର ଓ ଦର୍ଶନର ଶୂନ୍ୟତା ଦେଖାଦେଇଛି ।

ଏକଦା କେନ୍ଦ୍ରରେ ଓ ରାଜ୍ୟମାନଙ୍କରେ ଏକ ଦଳୀୟ ଶାସନ କଂଗ୍ରେସ ହାତରେ ରହିଥିଲା । ଡଃ ଲୋହିଆଙ୍କ ଡାକରାରେ କଂଗ୍ରେସ ହଟାଅ ଅଭିଯାନରୁ ସଫଳତା ମିଳିଥିଲା । ୧୯୬୭ରେ ଯେତେବେଳେ ୯ ଗୋଟି ରାଜ୍ୟରେ ଅଣ-କଂଗ୍ରେସ ସରକାର ଗଠିତ ହୋଇଥିଲା, ମାତ୍ର କେନ୍ଦ୍ର ସରକାରରେ ପରିବର୍ତ୍ତନ ହୋଇପାରିନଥିଲା । ଡ: ଲୋହିଆଙ୍କ ଦେହାନ୍ତ ହୋଇଗଲା ପରେ ପୁଣି ୧୦ ବର୍ଷ ପରେ ୧୯୭୭ରେ କେନ୍ଦ୍ରର କଂଗ୍ରେସ ଶାସନ ପରିବର୍ତ୍ତନ ହୋଇପାରିଲା ଲୋକନାୟକ ଜୟ ପ୍ରକାଶଜୀ ନେତୃତ୍ୱରେ ସଂପୂର୍ଣ୍ଣକ୍ରାନ୍ତି ଆନ୍ଦୋଳନ ଆରମ୍ଭ ହେବାପରେ । ଯଦିଚ ଜୟ ପ୍ରକାଶ ରାଜନୀତିରୁ ଦୂରେଇ ରହିଥିଲେ ପୁଣି ଦେଶର ଭ୍ରଷ୍ଟାଚାର ବିରୁଦ୍ଧରେ ଜନଜାଗରଣକୁ ଜାଗ୍ରତ କରି ସମାଜବାଦର ପରିକଳ୍ପନା ସଂପୂର୍ଣ୍ଣ କ୍ରାନ୍ତିର ଡାକରା ଦେଇଥିଲେ । ଅବଶ୍ୟ ଜୟପ୍ରକାଶଜି ମଧ୍ୟ ବେଶୀଦିନ ବଞ୍ଚି ରହିପାରିଲେ ନାହିଁ । ଯାହାରି ଫଳରେ ସଂପୂର୍ଣ୍ଣ କ୍ରାନ୍ତିର ପରପର୍ଯ୍ୟାୟ ଆନ୍ଦୋଳନ ଚାଲିପାରିଲା ନାହିଁ । ଡଃ. ଲୋହିଆ ଓ ଜୟପ୍ରକାଶଙ୍କ ମଧ୍ୟରେ ବ୍ୟକ୍ତିଗତ ସୁସଂପର୍କ ରହିଥିଲା । ଜୟପ୍ରକାଶ ନିଜର ସଂପୂର୍ଣ୍ଣ କ୍ରାନ୍ତିକୁ ବୁଝାଇବାକୁ ଯାଇ କଟକରେ ଅନୁଷ୍ଠିତ ବିଶାଳ ଜନସଭାରେ କହିଥିଲେ ଯେ ''ରାମ ମନୋହରଙ୍କ ସପ୍ତକ୍ରାନ୍ତି ହିଁ ସଂପୂର୍ଣ୍ଣ କ୍ରାନ୍ତି'' । ଏଥିରେ ସେଦିନ ମୁଁ ଉଦ୍‌ଫୁଲ୍ଲିତ ହୋଇଥିଲି । ଯେହେତୁ ଲୋହିଆଙ୍କ ବିଚାର ଉପରେ ତାଙ୍କର ଅତୁଟ ବିଶ୍ୱାସ ଥିଲା । ଆଜି ଯେପରି ଭାବରେ ଦେଶର ସମସ୍ୟାଗୁଡ଼ିକ ଠିଆ ହୋଇଛନ୍ତି, ସେଥିର ମୁକାବିଲା କରି ଦେଶର ବିଭିନ୍ନ ସ୍ଥାନରେ ମହାତ୍ମାଗାନ୍ଧିଙ୍କ ସ୍ୱରାଜ, ଡଃ ଲୋହିଆଙ୍କ ସପ୍ତକ୍ରାନ୍ତି ଓ ଜୟପ୍ରକାଶଙ୍କ ସଂପୂର୍ଣ୍ଣ କ୍ରାନ୍ତିର ଲକ୍ଷ୍ୟ ନେଇ ଆଞ୍ଚଳିକ ସ୍ତରରେ ଲୋକେ ଆନ୍ଦୋଳନ କରୁଛନ୍ତି । ସେହି ଆନ୍ଦୋଳନଗୁଡ଼ିକୁ ସଂଗଠିତ କରି ସଂପ୍ରସାରଣ କରାଯାଇପାରିଲେ ରାଷ୍ଟ୍ରୀୟ ସ୍ତରରେ ମଧ୍ୟ ଏକ ଅନୁରୂପ ସମତାବାଦୀ ଆନ୍ଦୋଳନ ସଂଗଠିତ ହୋଇପାରିବ । ମୁଁ ଏଥିରେ ଆଶାବାଦୀ ଯେହେତୁ ଲୋକଙ୍କ ପାଖରେ ଆଉ କିଛି ବିକଳ୍ପ ନାହିଁ । ସେହି କାମରେ ବର୍ତ୍ତମାନ ମୁଁ ନିଜକୁ ନିୟୋଜିତ କରିଛି । ଲୋକଶକ୍ତି ଅଭିଯାନ କାର୍ଯ୍ୟରେ ମୁଁ ଅଧିକ ସମୟ ଦେଉଛି ଏବଂ ସେଥିରେ ମୁଁ ଦେଇ ଚାଲିବି ।

**ପ୍ରଶ୍ନ ୩ : ଆପଣଙ୍କ ଜୀବନ ଉପରେ ଭାରତ କି ଓଡ଼ିଶାର କେଉଁ ସମାଜବାଦୀ ନେତାଙ୍କର ପ୍ରଭାବ ତଥା ପ୍ରେରଣା ସର୍ବାଧିକ ଓ କାହିଁକି ?**

ଉ : ସ୍ୱାଧୀନତା ଆନ୍ଦୋଳନ ପରେ ପରେ ମହାତ୍ମାଗାନ୍ଧୀଙ୍କ ମୌଳିକ ବିଚାର ଓ ଦର୍ଶନର ସଂପ୍ରସାରଣର ପ୍ରତୀକ ହୋଇଥିଲେ ଡଃ. ରାମ ମନୋହର ଲୋହିଆ । ଦେଶକାଳ ପାତ୍ରକୁ ବିଚାରକୁ ନେଇ ବିଶ୍ୱ ପରିପ୍ରେକ୍ଷୀରେ ଗାନ୍ଧିଜୀଙ୍କ ମୌଳିକ ନୀତିକୁ ଦୁନିଆ ଆଗରେ ସେ ପ୍ରତିପାଦିତ କରୁଥିଲେ । ଏହି ନୀତିକୁ ନୂତନ ସଭ୍ୟତାର ଦ୍ୟୋତକ ରୂପେ କାର୍ଯ୍ୟକାରୀ କରିବା ପାଇଁ ନୂଆ ନୂଆ ବାଟ ଦେଖାଉଥିଲେ ଜନ ମାନସିକତାକୁ ତିଆର କରିବା ପାଇଁ । ସମାଜବାଦୀ

ଆନ୍ଦୋଳନର ପ୍ରବକ୍ତା ରୂପେ ଗାନ୍ଧୀ-ଲୋହିଆ-ଜୟ ପ୍ରକାଶ ମୋ ପାଇଁ ଓ ଆଗାମୀ ପିଢ଼ୀ ପାଇଁ ଆଦର୍ଶ ହୋଇ ରହିବେ । ଡଃ ଲୋହିଆଙ୍କ ସମାଜବାଦର ଅନ୍ତିମ ଲକ୍ଷ୍ୟ ସପ୍ତକ୍ରାନ୍ତିକୁ ଜୟପ୍ରକାଶ ଉଦ୍ଧୃତ କରୁଥିଲେ ଏକ ନୂଆ ସମାଜ ଗଠନ ପାଇଁ ସଂପୂର୍ଣ୍ଣକ୍ରାନ୍ତିର ଡାକରା ଦେବାବେଳେ ।

ଆଚାର୍ଯ୍ୟ ନରେନ୍ଦ୍ର ଦେବ ଏକ ସମାଜବାଦୀ ଚିନ୍ତକ ଓ ତାଙ୍କର ସରଳ ଜୀବନ ଶୈଳୀଦ୍ୱାରା ସେ ମତେ ବେଶ୍ ପ୍ରଭାବିତ କରିଥିଲେ । ଏପରିକି ଏକଦା ସେ କଂଗ୍ରେସର ସଭାପତି ହୁଅନ୍ତୁ ବୋଲି ଗାନ୍ଧିଜୀ ପ୍ରସ୍ତାବ ଦେଇଥିଲେ । ଦଳବଦଳ କାନୁନ ସଂପର୍କରେ ମୁଁ ଲୋକସଭାର ବାଚସ୍ପତି ଥିବାବେଳେ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖରଙ୍କ ମନ୍ତ୍ରିମଣ୍ଡଳରେ ୬ ଜଣ ମନ୍ତ୍ରୀଙ୍କୁ ଲୋକସଭା ସଭ୍ୟ ପଦରୁ ବହିଷ୍କାର କରିଥିଲି ସେତେବେଳେ ମୋ ଆଗରେ ଆଦର୍ଶ (Role Model) ହୋଇଥିଲେ ଆଚାର୍ଯ୍ୟ ନରେନ୍ଦ୍ର ଦେବ । ୧୯୪୮ ସାଲରେ ସୋସାଲିଷ୍ଟ ପାର୍ଟି ପାଇଁ କଂଗ୍ରେସ ଛାଡ଼ିଲା ପରେ ଦଳବଦଳ କାନୁନ ସେତେବେଳେ ନଥିଲା ବେଳେ ମଧ୍ୟ ସେ କଂଗ୍ରେସ ଟିକଟରେ ନିର୍ବାଚିତ ହୋଇଥିବାରୁ ଉତ୍ତରପ୍ରଦେଶ ବିଧାନସଭା ସଦସ୍ୟ ପଦରୁ ଇସ୍ତଫା ଦେଇଥିଲେ । ତାଙ୍କ ତ୍ୟାଗପୂତ ଜୀବନ ବହୁ ଅଣସମାଜବାଦୀଙ୍କୁ ମଧ୍ୟ ପ୍ରଭାବିତ କରିଥିଲା ।

**ପ୍ରଶ୍ନ ୪ ବର୍ତ୍ତମାନ ସମାଜ ଓ ରାଜନୀତିରେ ପ୍ରଚ୍ଛନ୍ନ ହୋଇ ଉଠିଥିବା ବିଷମତାକୁ ରୋକିବାରେ ବାଟ କିଛି ଆପଣ ଦେଖୁଛନ୍ତି କି ?**

ଉତ୍ତର : ୧୯୯୮ ଜାତିସଂଘର ମାନବ ସମ୍ବଳ ବିକାଶ ରିପୋର୍ଟରେ ଯେଉଁ ଚମକପ୍ରଦ ତଥ୍ୟ ପ୍ରକାଶ ପାଉଛି ତାହା ଉତ୍କଟ ସାମାଜିକ ଓ ଆର୍ଥିକ ସମତାର ସମର୍ଥକଙ୍କୁ ମଧ୍ୟ ସ୍ତବ୍ଧ କରିଦେବ । ସେ ରିପୋର୍ଟରେ କୁହାଯାଉଛି ଯେ ବିଶ୍ୱର କେବଳ ୩ ଜଣ ସର୍ବୋଚ୍ଚଧନୀ ବ୍ୟକ୍ତିଙ୍କର ମୋଟ ବାର୍ଷିକ ଆୟ ବିଶ୍ୱର ୪୮ ଗୋଟି ଦରିଦ୍ରତମ୍ ଦେଶମାନଙ୍କର ମୋଟ ବାର୍ଷିକ ଆୟ ସହ ସମାନ । ବିଶ୍ୱର ୨୨୫ ଜଣ ଧନୀବ୍ୟକ୍ତିଙ୍କ ମୋଟ ସଂପତ୍ତିର ମୂଲ୍ୟ ଏକ ଟ୍ରିଲିୟନ ଡ଼ଲାର ଯାହାକି ବିଶ୍ୱର ୪୭% ଗରିବ ଲୋକ ଅର୍ଥାତ ୨୫୦ କୋଟି ଲୋକଙ୍କ ସଂପତ୍ତି ସହ ସମାନ । ୩୨ ଗୋଟି ସର୍ବୋଚ୍ଚ ଧନୀ ବ୍ୟକ୍ତିଙ୍କ ମୋଟ ସଂପତ୍ତି ଭାରତ, ପାକିସ୍ଥାନ, ବଂଗଳାଦେଶ, ଶ୍ରୀଲଙ୍କା, ଭୁଟାନ, ମାଳଦୀପ, ଇରାନ ଓ ଆଫଗାନୀସ୍ଥାନର ମିଳିତ ଆୟ ରୁ ଟପିଯାଉଛି । ଆଜିର ଦିନରେ ବିଶ୍ୱର ସମସ୍ତ ଖାଉଟି ପଦାର୍ଥର ମୂଲ୍ୟ ୨୪ ଟ୍ରିଲିୟନ ଡ଼ଲାର । ଯାହା ୨୫ ବର୍ଷ ତଳର ଖାଉଟି ଦ୍ରବ୍ୟର ୬ ଗୁଣ ଅଧିକ । ଏଥିରୁ ୫୦ ଭାଗରୁ ଅଧିକ ବିଶ୍ୱର ମାତ୍ର ୨୦% ଧନୀ ଲୋକେ ଉପଭୋଗ କରୁଛନ୍ତି । ବିଶ୍ୱର ଏକ ପଞ୍ଚମାଂଶ ଲୋକ (ଧନୀରାଷ୍ଟ୍ରର) ୪୫% ମାଂସ, ମାଛ, ୫୮% ବିଜୁଳି, ୭୪% ଟେଳିକମୁନିକେସନ, ୮୪% କାଗଜ ବ୍ୟବହାର କରୁଥିବାବେଳେ ସେମାନଙ୍କ ପାଖରେ ବିଶ୍ୱର ୮୭% ଯାନବାହନ ରହିଛି । କିନ୍ତୁ ଅନ୍ୟପକ୍ଷରେ ସର୍ବନିମ୍ନ ୫ ଶତାଂଶ ଦରିଦ୍ରତମ ଲୋକେ ମାତ୍ର ୫% ମାଛ ମାଂସ, ବିଜୁଳି ସମେତ ମୋଟ ଶକ୍ତି ୪% ଟେଲିକମ୍ୟୁନିକେସନ, ୧.୫% ବ୍ୟବହାର କରିବାବେଳେ ମୋଟ ଯାନବାହନର ୧%ରୁ କମ୍ ବ୍ୟବହାର କରନ୍ତି । ବର୍ତ୍ତମାନ ଏହି ବିଷମତା ବିଶ୍ୱର କାହାଣୀ । ଆମ ଯୋଜନା କମିସନ ଯେଉଁ ତଥ୍ୟ ଦେଉଛନ୍ତି ତାହା ଭୁଲ । ୧୯୯୧-୯୫ ନରସିଂହ ରାଓଙ୍କ ସରକାର କାର୍... ଭୂମଣ୍ଡଳୀ କରଣ, ଖୋଲା ବଜାର ପରେ କହିଲେ ଦାରିଦ୍ର୍ୟ ସୀମାରେଖା ତଳେ ୧୯% ଭାଗ, ମିଳିତସାମ୍ମୁଖ୍ୟ ସରକାର ବେଳେ କୁହାଗଲା ୩୯% ଲୋକେ

ଅଛନ୍ତି । କିନ୍ତୁ ଆମ ଦେଶର ଲୋକେ ଦାରିଦ୍ର୍ୟ ସୀମାରେଖା ତଳେ ମୋ ମତରେ ୫୫% ନିଶ୍ଚିତ ଭାବରେ । ଅସମତା ଯେ କେତେ ବୃଦ୍ଧି ପାଉଛି ତାହା ସହଜରେ ଅନୁମେୟ । ଅର୍ଥନୈତିକ କ୍ଷେତ୍ରରେ ଏହା ଆମର ଉପଲବ୍ଧି, ତେଣୁ ଆମ ଅଗ୍ରଗତି ଅନ୍ଧକାର ଭିତରେ ପଛକୁ ଯାଉଛି । ମୁଁ କେବଳ ଏତିକି କହିଲେ ଉଚିତହେବ ଯେ, ବିଶ୍ୱର ଓ ଭାରତବର୍ଷର ଅସମତାର ଉଲ୍ଲିଖିତ ହିସାବର ପରିପ୍ରେକ୍ଷୀରେ ଗାନ୍ଧି ଲୋହିଆଙ୍କ ରାସ୍ତା ଯେ ଏକ ମାତ୍ର ରାସ୍ତା, ଏ ସଂପର୍କରେ ସର୍ବାନୁମତି ବଦଳରେ ବିବାଦ ଥାଇପାରେ କି ? କିନ୍ତୁ ଲୋକେ ଅଛନ୍ତି ଯେଉଁମାନେ ବରଦାସ୍ତ କରି ଚୁପ ରହିବାରେ ଆତ୍ମ ସନ୍ତୋଷ ଲାଭ କରୁଛନ୍ତି । କିପରି ସେମାନଙ୍କ ଦେହ ସହୁଛି ? ଏହାକୁ ରୋକିବାରେ ଏକ ମାତ୍ର ବାଟ ହେଉଛି ଲୋକ ଶକ୍ତିକୁ ସଂଗଠିତ କରି ଉଚ୍ଚ ସ୍ତରରେ ଭ୍ରଷ୍ଟାଚାର, ପ୍ରଧାନମନ୍ତ୍ରୀଙ୍କ ହାତରେ ଠୁଳ ହୋଇଥିବା କ୍ଷମତାର କେନ୍ଦ୍ରୀକରଣ, ଭୋଗବାଦ ଅର୍ଥବ୍ୟବସ୍ଥା ବିରୁଦ୍ଧରେ ଅହିଂସାତ୍ମକ ବିଦ୍ରୋହ ମୁଖ୍ୟଧାରାର ରାଜନୈତିକ ଦଳମାନେ ଏହି ଅସମତା ପାଇଁ ଦାୟୀ । ସେମାନଙ୍କ ଠାରୁ ଅସମତା ବିରୁଦ୍ଧରେ ଲଢ଼େଇ କରିବା ଆଶା ବୃଥା । ଏକ ମାତ୍ର ଭରସା ହେଉଛି ନାଗରିକ ହସ୍ତକ୍ଷେପ ତଥା ଲୋକଶକ୍ତି ଅଭିଯାନ କାଳ ବିଳମ୍ବ ନହୋଇ ହେବା ଅନିବାର୍ଯ୍ୟ । ଦେଶର ଏକତା ପାଇଁ ଏହା ଜରୁରୀ ।

ପ୍ରଶ୍ନ ୫ : ଆଜିର ସମସ୍ୟାଗୁଡ଼ିକ ସେତବେଳର ସମାଜବାଦୀ ଆନ୍ଦୋଳନରେ ରହିଥିଲା କି ?

ଉତ୍ତର : ମହାତ୍ମାଗାନ୍ଧୀଙ୍କ ଗ୍ରାମ ସ୍ୱରାଜ ଓ ଡଃ ଲୋହିଆଙ୍କ ଚଉଖମ୍ବା ରାଷ୍ଟ୍ର ନୀତିରେ ନିହିତ ଥିବା ଆର୍ଥିକ ବ୍ୟବସ୍ଥା, ଦେଶର ସାଧାରଣ ଲୋକଙ୍କ ପାଇଁ ଯୋଜନାର ଦୃଷ୍ଟିଭଙ୍ଗୀ ଏବଂ ବିଶ୍ୱ ଅର୍ଥନୀତିର ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦର ଶୋଷଣ ନୀତି ବିରୁଦ୍ଧରେ ବିଚାର ସହ ପ୍ରାକୃତିକ ସଂବଳ ଉପରେ ସାଧାରଣ ଜନତାଙ୍କ ଅଧିକାର ଓ ସେସବୁର ସମୁଚିତ ବ୍ୟବହାର ଉପରେ ବିଚାର ତତ୍‌କାଳୀନ ଅର୍ଥବ୍ୟବସ୍ଥା ଓ ଦିଶାହୀନ ପ୍ରଶାସନ ବିଷମତାକୁ ବୃଦ୍ଧି କରିବ ବୋଲି ସତର୍କ କରାଇ ଦେଉଥିଲା । ଆଜି ସେହି ସମସ୍ୟାଗୁଡ଼ିକ ଉତ୍କଟ ଆକାର ଧାରଣ କରି ଠିଆହୋଇଛନ୍ତି ।

ଜଗତିକରଣ, ଖୋଲାବଜାର ଅର୍ଥନୀତି, ବହୁରାଷ୍ଟ୍ରୀୟ କଂପାନୀମାନଙ୍କର ଖୋଲା ବିଚରଣ ଆଜି ଆମ ଆର୍ଥିକ ସ୍ୱାଧୀନତା ଓ ରାଷ୍ଟ୍ରର ସାର୍ବଭୌମତ୍ୱ ଉପରେ ବିପଦ ସୃଷ୍ଟି କରିଛନ୍ତି । ଏହାର ଏକ ମାତ୍ର ବିକଳ୍ପ ସ୍ୱଦେଶୀ ଓ ସ୍ୱାବଲମ୍ବନ ଆର୍ଥିକ ନୀତି ଓ ବ୍ୟବସ୍ଥା । ଏହା ସମାଜବାଦୀ ଆନ୍ଦୋଳନର ମୁଖ୍ୟ ଲକ୍ଷ୍ୟଥିଲା ।



# ଲୋକଶକ୍ତି ଅଭିଯାନ ପାଇଁ ଆହ୍ୱାନ

**(ଭୁବନେଶ୍ୱରଠାରେ ଜୁଲାଇ ୨୬-୨୮, ୨୦୦୨ ଲୋକଶକ୍ତି ଅଭିଯାନର ରାଷ୍ଟ୍ରୀୟ ଶିବିରରେ ଶ୍ରୀ ରବିରାୟଙ୍କ ଉଦ୍‌ଘାଟନୀ ବକ୍ତବ୍ୟ)**

ଭାରତ ଗାନ୍ଧୀ ଓ ସୁଭାଷଙ୍କ ଦେଶ । କିନ୍ତୁ ଦେଶର ସରକାର ଧ୍ୱଂସର ରାସ୍ତା ଗ୍ରହଣ କରିଛନ୍ତି । ଲୋକଶକ୍ତି ଅଭିଯାନ ବିଚାର ବିନିମୟ ମାଧ୍ୟମରେ ଦେଶର ଧ୍ୱଂସ ଅଭିଳକ୍ଷିତ ପଥ ଏବଂ ରାଜନୀତିରେ କ୍ରମବର୍ଦ୍ଧମାନ ଅପରାଧୀକରଣ ବିରୁଦ୍ଧରେ ଲୋକଙ୍କୁ ଏକାଠି କରିବାକୁ ଚାହେଁ । କଂଗ୍ରେସୀ କର୍ମକର୍ତ୍ତା ୧୯୩୮ରେ ସଂସଦୀୟ ନିର୍ବାଚନ ୨୦୦-୩୦୦ ଟଙ୍କାରେ ଜିତୁଥିଲେ । ଶ୍ରୀ କିଶନ ପଟ୍ଟନାୟକ ଦଶହଜାର ଟଙ୍କାରେ ନିର୍ବାଚନରେ ବିଜୟଲାଭ କରିଥିଲେ । ହେଲେ ବର୍ତ୍ତମାନ ନିର୍ବାଚନ ନ ଲଢ଼ିଲେ କେହି ନିଜକୁ ରାଜନୈତିକ ନେତା ବୋଲି ମନେ କରୁନାହାନ୍ତି ଓ ନିର୍ବାଚନ ଲଢୁଛନ୍ତି କେବଳ ମାତ୍ର ବିଜୟ ଲାଭର ଲକ୍ଷ୍ୟ ନେଇ । ନିର୍ବାଚନରେ ବିଜୟ ପାଇଁ ନେତାମାନେ ଅନ୍ଧ ପାଇଟି ଯାଉଛନ୍ତି, ଦେଶ ଯେ ଧ୍ୱଂସ ହେବାକୁ ଗଲାଣି, ସେଥିପ୍ରତି କାହାର ଦୃଷ୍ଟି ନାହିଁ । ମାରୁତି କାର ଫ୍ୟାକ୍ଟ୍ରିର ମାଲିକ 'ସୁଜୁକି' (ଜାପାନର ପୁଞ୍ଜିପତି) ହୋଇଗଲା । ଭାରତର ଭାତଥାଳି ଲୁଟ ହେଉଛି, କେହି ଚିନ୍ତା ସୁଦ୍ଧା କରୁନାହାନ୍ତି । ରାଷ୍ଟ୍ରବାଦ ଶେଷ ହୋଇଯାଉଛି । ଆମେରିକାର କରୋଡ଼ପତି ବିଲଗେଟ୍‌ସ ବିରୁଦ୍ଧରେ ଆମେରିକାରେ ଦୁର୍ନୀତି କେଶ୍ ଚାଲିଛି ଅଥଚ ତାଙ୍କ ସହ ହାତ ମିଳାଇବା ପାଇଁ ଭାରତର ରାଜନୈତିକ ନେତାମାନେ ଧାଡ଼ିବାନ୍ଧି ଠିଆ ହେଉଛନ୍ତି । ଏପରି କରି ସମ୍ବିଧାନର ଅବମାନନା କରିବାକୁ ବି ପଛାଉ ନାହାନ୍ତି । ଏମିତି ଏକ ପୃଷ୍ଠଭୂମିରେ ସାଂପ୍ରତିକ ସ୍ଥିତିକୁ ଦେଶର ନୀତି, ବିଚାର, ସିଦ୍ଧାନ୍ତର ମରୁଭୂମି ବୋଲି କୁହାଯାଇପାରେ । ଏହି ସ୍ଥିତିରେ ମୁଁ ଆହ୍ୱାନ କରୁଛି ସିଦ୍ଧାନ୍ତହୀନ, ଆଦର୍ଶହୀନ, କୁନୀତିଜ୍ଞଙ୍କ ସହିତ କୌଣସି ସାଲିସ କରନାହିଁ ।

ମୁଁ ଓଡ଼ିଶାର କାଶୀପୁରର ଆଦିବାସୀମାନଙ୍କୁ ନମସ୍କାର କରୁଛି । ଓଡ଼ିଶାର ସ୍ୱାଭିମାନର ରକ୍ଷା କଟକର କୌଣସି ବୁଦ୍ଧିଜୀବୀ କରିନାହାନ୍ତି । ଜମି-ଜଳ-ଜଙ୍ଗଲ ପ୍ରସଙ୍ଗକୁ ନେଇ ୨୦୦୧ରେ ରାଷ୍ଟ୍ରପତି କେ.ଆର.ନାରାୟଣନଙ୍କ ସହିତ ଆଲୋଚନା କଲି । ମୋ ସହିତ ପ୍ରଫୁଲ୍ଲ ସାମନ୍ତରା ଥିଲେ । ନାରାୟଣନ ନିଜେ ଏ ନେଇ ଚିନ୍ତିତ ଥିଲେ । ମୁଁ ଆଜି ନିର୍ଦ୍ୱନ୍ଦ୍ୱରେ କହିପାରେ ଓଡ଼ିଶା ଭାରତରେ ଚାଲୁଥିବା ବିଧ୍ୱଂସକାରୀ କାର୍ଯ୍ୟ ବିରୁଦ୍ଧରେ ଆଶା ସୃଷ୍ଟି କରୁଛି । ଏହା ମୁଁ ଏକ ଉଦାହରଣ ମାଧ୍ୟମରେ ପ୍ରମାଣ କରିବି ।

କାଶୀପୁରର ମାଇକଞ୍ଚରେ ମୃତ୍ୟୁବରଣ କରିଥିବା ୩ ଜଣ ଯୁବକଙ୍କ ଶହୀଦତ୍ୱ ନଅଟି ବିଦେଶୀ କଂପାନୀକୁ ଓଡ଼ିଶାରୁ ପଳାୟନ କରିବାକୁ ବିବଶ କରିଦେଲା । ଏହି ଆନ୍ଦୋଳନର ଜଣେ ସଦସ୍ୟ ଆଦିବାସୀ ମହିଳା ସୁମନ ଝୋଡ଼ିଆଙ୍କୁ ନାଲ୍‌କୋ ନିଜ ବାର୍ଷିକ ସମାରୋହରେ ପୁରସ୍କାର ଦେବାପାଇଁ ଡକାଇଥିଲା । ସୁମନ ଝୋଡ଼ିଆ ନାଲ୍‌କୋର ସମାରୋହ ମଞ୍ଚକୁ ଗଲେ । ସେ ପୂର୍ଣ୍ଣ ଆତ୍ମବିଶ୍ୱାସର ସହିତ କହିଲେ, " ଆପଣ ମତେ ନିମନ୍ତ୍ରଣ କରିଛନ୍ତି, ଇଂରାଜୀରେ ଭାଷଣ

ମାରୁଛନ୍ତି, ଏହା ମୋ ପାଇଁ ଅପମାନ । ତମେ ଆମର ତିନୋଟି ପିଲାଙ୍କୁ ମାରିଦେଲ, ୧୫ ହଜାର ଟଙ୍କା ଏବେ ଲାଞ୍ଚ ଦେଉଛ, ମୁଣ୍ଡ ପିଛା ପାଞ୍ଚ ହଜାର ।'' ଏତିକି କହି ସେ ମଞ୍ଚରୁ ଓହ୍ଲାଇଗଲେ । ତାଙ୍କ କଥା ଶୁଣି ମୁଁ ଖୁସିରେ କାନ୍ଦି ପକାଇଲି । କାରଣ ଆଦିବାସୀ ମହିଳା ସୁମନ ଝୋଡ଼ିଆଙ୍କର ଏହି ସ୍ୱାଭିମାନୀ କଥାରୁ ଆଶା ସଞ୍ଚାର ହେଉଛି, ଦେଶ ବଞ୍ଚିବ, ଦେଶକୁ ବଞ୍ଚାଯାଇପାରିବ, ଯଦି ମାନସିକତା ଠିକ୍ ରଖାଯାଏ ।

ଆଉ ରାଜନୈତିକ ନେତାଙ୍କ କଥା କଣ କହିବା ? ଦେଶର ଲୋକସଭା ଶକ୍ତିହୀନ ହୋଇଯାଇଛି ଓ ବିଧାନସଭା ଗୁଡିକ ମୁନିସିପାଲଟିମାନଙ୍କ ଠାରୁ ବି ତଳକୁ ଚାଲିଗଲାଣି ବୋଲି ମୁଁ ମନେ କରେ । ୧୯୯୦ରୁ ଏପର୍ଯ୍ୟନ୍ତ ଲୋକସଭା ଜରିଆରେ ସାମ୍ବିଧାନିକ ମୂଲ୍ୟବୋଧକୁ ଯୋଜନାବଦ୍ଧ ଭାବେ ନଷ୍ଟକରିବା ଓ ଦେଶର ଜନମାନସକୁ ସୁଖଦୁଃଖର ଦର୍ପଣ କରିବା ବଦଳରେ ଜନତାଙ୍କ ଉପରେ ଅତ୍ୟାଚାର କରିବା ମୁଖ୍ୟକାମ ପାଲଟିଯାଇଛି ।

ଉଚ୍ଚଶିକ୍ଷାର ଘରୋଇକରଣ ସମ୍ବନ୍ଧୀୟ ବିରଳା-ଅମ୍ବାନୀ ରିପୋର୍ଟ ଅନୁସାରେ ଯିଏ ଲକ୍ଷପତି ହୋଇଥିବ ସେ ହିଁ ନିଜ ପିଲାକୁ ପାଠ ପଢ଼ାଇ ପାରିବ । ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ଦେଶବାସୀ ଏହାକୁ କିପରି ବରଦାସ୍ତ କରୁଛନ୍ତି ! ଚାଲନ୍ତୁ, ଆମେ ସମସ୍ତେ ବିପ୍ଲବ କରିବା । ଭାରତର ସାଧାରଣ ବୁଦ୍ଧିଜୀବୀ ଡିଗ୍ରୀଧାରୀ ଓ ଦୃଷ୍ଟିହୀନ ଅଟନ୍ତି । ଦୃଷ୍ଟି ବିନା, ଏକ ଦିବ୍ୟ ଦୃଷ୍ଟି ବିନା ପୁସ୍ତକଗତ ଜ୍ଞାନ ନିରର୍ଥକ ।

ମୁଁ ଲୋକଶକ୍ତିର ବନ୍ଧୁମାନଙ୍କୁ କହୁଛି, ଆପଣମାନେ ଯେଉଁ ଦିହୁଡ଼ି ଜାଳିଛନ୍ତି, ତାହାଦ୍ୱାରା ଆଗାମୀ କିଛିବର୍ଷରେ ଏମିତି ସନ୍ଦେଶ ଦିଅନ୍ତୁ ଯାହାଦ୍ୱାରା ସାଧାରଣ ଜନତା ବିପ୍ଲବ ଦିଗରେ ଆକୃଷ୍ଟ ହେବେ । ବ୍ୟକ୍ତିଗତ ଭାବେ କିଛି ବାମପନ୍ଥୀଙ୍କୁ ଛାଡ଼ିଦେଲେ ଭାରତର ସମସ୍ତ ରାଜନୈତିକ ଦଳ ଆତ୍ମହତ୍ୟା କରୁଛନ୍ତି । କିନ୍ତୁ ରାଜନୀତି ବିନା ତ' ଦେଶ ଚାଲିବ ନାହିଁ । ଏହା ମଧ ସତ ଯେ ରାଜନୀତିକ ଦଳ ରହିଲେ ହିଁ ଗଣତନ୍ତ୍ର ରହିବ ।

ଗୁଜରାଟର ଘଟଣାକୁ ଲକ୍ଷ୍ୟ କଲେ ମାର୍ଟିନ ନିଭେଲଙ୍କ 'ଫାସିବାଦ' ପରି ପୁସ୍ତକ ପୁଣି ପଢ଼ିବା ଦରକାର । ଫାସିଜ୍‌ମ ଆସିବା ପୂର୍ବରୁ ଜର୍ମାନୀରେ କମ୍ୟୁନିଷ୍ଟ ଓ ସମାଜବାଦୀ ମାନେ ଆନ୍ଦୋଳନ କରୁଥିଲେ । ଉଭୟଙ୍କୁ ହିଟଲର ଚତୁରାତର ସହ ପନ୍ଥକୁ ହଟାଇ ଦେଲେ । ଫାସିଷ୍ଟ ଜର୍ମାନୀରେ ପ୍ରଥମେ କମ୍ୟୁନିଷ୍ଟମାନଙ୍କୁ ଗିରଫ କରାଗଲା । କମ୍ୟୁନିଷ୍ଟମାନଙ୍କୁ ଗିରଫ କଲାବେଳେ ଅଣ କମ୍ୟୁନିଷ୍ଟମାନେ ଭାବିଲେ ଆମେ ତ' କମ୍ୟୁନିଷ୍ଟ ନୋହୁଁ, ଆମକୁ କଣ ଡ଼ର ? କ୍ୟାଥଲିକଙ୍କୁ ଧରିଲାବେଳେ ଅନ୍ୟମାନେ କହିଲେ ମତେ ତ' ଧରୁନାହାନ୍ତି, ମୋର କଣ ଯାଏ ? ଏହି ପ୍ରକାରେ ସମସ୍ତେ କହିଲେ ମୋର କ'ଣ ଦରକାର, କ'ଣ ଯାଏ ? କିନ୍ତୁ ସମସ୍ତେ କ୍ରମାନ୍ୱୟରେ ଫାସିବାଦର ଶିକାର ହେଲେ । ଏବେ ଆମ ଦେଶରେ ଗ୍ରାମ୍ୟସ୍ତରରୁ ଜାତୀୟ ସ୍ତର ପର୍ଯ୍ୟନ୍ତ ଏସବୁ ହିଁ ଘଟୁଛି । ତେଣୁ ଲୋକଶକ୍ତି ଅଭିଯାନର ଲୋକଙ୍କ ସାମ୍ନାରେ କ୍ରମବର୍ଦ୍ଧମାନ ଫାସିବାଦ ବିରୋଧରେ ଏକ ସଶକ୍ତ ଲୋକଶକ୍ତିକୁ ଜାଗ୍ରତ କରାଇବାର କାର୍ଯ୍ୟଭାର ରହିଛି ।

## ଶିବିରର ଅନ୍ୟ ଅଧିବେଶନରେ ଶ୍ରୀ ରବି ରାୟଙ୍କ ମନ୍ତବ୍ୟ :

ଯେତେବେଳେ ମୁଁ ବିଦ୍ୟାର୍ଥୀ ଜୀବନରେ ସମାଜବାଦ ପ୍ରତି ଆକର୍ଷଣ କଥା ଚିନ୍ତା କରେ ସେତେବେଳେ ମନେକରେ ପ୍ରତ୍ୟେକ ମଣିଷ ମଧ୍ୟରେ ସମତା ପ୍ରତି କେଉଁଠି ନା କେଉଁଠି ପ୍ରତିବଦ୍ଧତା ନିଶ୍ଚୟ ଅଛି । ଲୋକଙ୍କ ମନରେ ଥିବା ସମତା ପ୍ରତି ପ୍ରତିବଦ୍ଧତାକୁ ଆମେ ଜାଗ୍ରତ କରାଉଥିଲୁ । ସେହି ସମତାର ପ୍ରତିବଦ୍ଧ ସର୍ବୋପରି ହୋଇଯାଉଥିଲା ଓ ଆମେ ଆଦର୍ଶବାଦୀ ପାଲଟୁଥିଲୁ । ଆଜି ଆମକୁ ଉଦାରୀକରଣ ଓ ଭୂମଣ୍ଡଳୀକରଣ ଧାରାର ପ୍ରତିକୂଳରେ ଯିବାକୁ ହେବ । ଡଃ ଲୋହିୟାଙ୍କ ମୃତ୍ୟୁପରେ ଗତ ୪୦ ବର୍ଷ ହେଲା ଭାରତରେ ସମତାର ଆଧାରରେ ଅର୍ଥଗ୍ରହଣ କରିବା ଓ ଆମ ନିୟନ୍ତ୍ରଣର ପରୀକ୍ଷା ଦେବା, ଲୋକଙ୍କ ମଧ୍ୟରେ ସେହିପରି ମାନସିକତା ସୃଷ୍ଟି କରିବା ବନ୍ଦ ହୋଇଯାଇଛି । ବର୍ତ୍ତମାନ ଭାରତ ସରକାରଙ୍କ ନେତା ଜର୍ଜ ବୁଶ । ଦୁନିଆକୁ ସମତା ଆଡ଼କୁ ନେଇଯିବା ପାଇଁ ଓ ମାର୍କିନ ପ୍ରଭାବକୁ ଖତମ କରିବା ପାଇଁ ପୃଥିବୀକୁ ପାଞ୍ଚଟି ସ୍ତରରେ ବାଣ୍ଟିଦେବା ଆବଶ୍ୟକ । ୧) ବିଶ୍ୱ ସଂସଦ, ୨) ଦେଶର ସଂସଦ, ୩) ବିଧାନସଭା, ୪) ନଗର ପାଳିକା, ୫) ଗ୍ରାମ ପଞ୍ଚାୟତ

କିନ୍ତୁ ସମୂହ ଦେଶ-୮ ର ଦେଶମାନେ ଉଦାରୀକରଣ ଜଗତୀକରଣର ନେତୃତ୍ୱ ନେଇ ଏସିଆ, ଆଫ୍ରିକା ଓ ଦକ୍ଷିଣ ଏସିଆର ଦେଶମାନଙ୍କୁ ଧ୍ୱଂସ ଆଡ଼କୁ ଟାଣି ନେଉଛନ୍ତି । ଏଥିପାଇଁ ରାଷ୍ଟ୍ରୀୟ ଓ ଅନ୍ତର୍ରାଷ୍ଟ୍ରୀୟ ସ୍ଥିତି ସମ୍ବନ୍ଧରେ ବୁନିଆଦି କଥାକୁ ଯଦି ମନରେ ରଖିବା ତେବେ ହିଁ ଦେଶକୁ ଉନ୍ନତ ଏବଂ ଦେଶର ଆନ୍ଦୋଳନକୁ ଆଗେଇ ନେବାରେ ସହଯୋଗ କରିପାରିବା ।

## ଜାତିବାଦ ଓ ସାଂପ୍ରଦାୟିକତା ବିରୋଧରେ ...

ସାଂପ୍ରଦାୟିକତାର ପ୍ରଶ୍ନ ୧୦୦ କୋଟି ଲୋକ ଜୀବନ-ମୃତ୍ୟୁ ସହ ଯୋଡ଼ି ହୋଇରହିଛି । ୧୯୯୦ରେ ଆଡଭାନୀଙ୍କ ରଥଯାତ୍ରା ନରସଂହାର ଜନନୀ ପାଲଟିଲା । ସେ ଆଜି ଦେଶର ଉପପ୍ରଧାନମନ୍ତ୍ରୀ । ତେଣୁ ମୁଁ ଆଶଙ୍କିତ ଯେ ନରେନ୍ଦ୍ର ମୋଦି ବିଜୟୀ ହେବେ । ସନାତନୀ ଓ ପୂଜାରୀ ହିନ୍ଦୁ ବି ସାଂପ୍ରଦାୟିକତାବାଦର ମାନସିକତାର ପ୍ରଭାବିତ ହୋଇପାରେ ନାହିଁ । ଏହାର ଜ୍ୱଳନ୍ତ ଉଦାହରଣ ନ୍ୟାୟମୂର୍ତ୍ତି ଶ୍ରୀ କ୍ରିଷ୍ଣା । କଠୋର ସନାତନୀ ହିନ୍ଦୁ ଓ ନିତ୍ୟ ଭାଗବତ ପାଠ କରୁଥିବା ନ୍ୟାୟମୂର୍ତ୍ତି ଶ୍ରୀକ୍ରିଷ୍ଣା ବମ୍ବେ ଦଙ୍ଗା ବିଷୟରେ ଯେଉଁ ରିପୋର୍ଟ ଦେଲେ ତାହା ବାଲଥାକ୍ରେ ଓ 'ବମ୍ବେଇ ଗୁଣ୍ଡା' ମାନଙ୍କ ବିରୋଧରେ । ରାଜ୍ୟପାଳ ଆଲକ୍ଜାଣ୍ଡାର, ମହାରାଷ୍ଟ୍ର କ୍ରିଷ୍ଣାଙ୍କ ରିପୋର୍ଟକୁ ଚପାଇ ରଖିଲେ । ସେଇ ଆଲେକଜାଣ୍ଡାର ଏବେ ରାଜ୍ୟସଭାର ସଦସ୍ୟ ଓ ରାଷ୍ଟ୍ରପତି ହେବାର ସ୍ୱପ୍ନ ଦେଖୁଛନ୍ତି ।

ହିନ୍ଦୁସ୍ଥାନର ଦେଶଦ୍ରୋହୀ ପ୍ରଭାବଶାଳୀ ରାଜନୀତିଜ୍ଞ ନିଜକୁ ଦେଶପ୍ରେମୀ ସାବିତ କରୁଛନ୍ତି ଓ ମିଡ଼ିଆ ବି ସେମାନଙ୍କୁ ସମର୍ଥନ କରୁଛି । ଯଦି ଏହାକୁ ଆପଣମାନେ ଦେଖି ନଦେଖିଲା ପରି ରହନ୍ତି ତେବେ ନିଜପ୍ରତି ବି ନ୍ୟାୟ କରିପାରିବେ ନାହିଁ ।

ସମତାବାଦୀ ବା ସମାଜବାଦୀ ଧର୍ମନିରପେକ୍ଷ ହୋଇଥାଏ । ବାସ୍ତବିକ ସମାଜବାଦୀ କ୍ଷମତାବାଦୀ ନୁହେଁ ବରଂ ଧର୍ମନିରପେକ୍ଷବାଦୀ ଜାତି ବ୍ୟବସ୍ଥାର ବିରୋଧୀ ହେବା ଉଚିତ୍ ।

ସାଂପ୍ରଦାୟିକତା ଓ ଜାତିବ୍ୟବସ୍ଥାର ବ୍ୟାବହାରିକ ବିରୋଧ ପାଇଁ ତୁମକୁ ହିମାଳୟର ଶିଖରରୁ ଲମ୍ଫ ଦେଲାଭଳି ମାନସିକତା କରିବାକୁ ହେବ ।

ଯେତେବେଳେ ମୁଁ ୧୯୯୦ରେ ଲୋକସଭାର ବାଚସ୍ପତି ଥିଲି, ସେତେବେଳେ ଭାରତର ରାଜନୀତି ବିଜ୍ଞାନର ଅନ୍ତର୍ରାଷ୍ଟ୍ରୀୟ ଖ୍ୟାତିପ୍ରାପ୍ତ ଦୁଇ ବିଦ୍ୱାନ ପ୍ରଫେସର ମନୋରଞ୍ଜନ ମହାନ୍ତି ଓ ବୀଣାଦାସ ମୋ ସହ ଦେଖା କରିବାକୁ ଆସିଥିଲେ । କୁଶଳ ଜିଜ୍ଞାସା ପରେ ମନୋରଞ୍ଜନ କହିଲେ, ଆମେ ଆପଣଙ୍କ ପାଖକୁ ଏହା ଜାଣିବା ପାଇଁ ଆସିଛୁ ଯେ ମଣ୍ଡଳ କମିଶନ କ'ଣ ? ମୁଁ ତାଙ୍କ ସହ ତତ୍ତ୍ୱଜ୍ଞାନ ଚର୍ଚ୍ଚା କରିବା ବଦଳରେ ଉଦାହରଣ ଦ୍ୱାରା ନିଜ କାମ ଆରମ୍ଭ କଲି । ମୁଁ କହିଲି, ମୋ ବାଲ୍ୟକାଳରେ ମୁଁ ଆମ ଗାଁରୁ ନାମୀ ମାର୍କେଟ ବନମାଳୀପୁର ଆସୁଥିଲି । ଆମ ଗାଁରୁ ବନମାଳୀପୁର ରାସ୍ତା ମଝିରେ ଯେଉଁ ୧୦ଟି ଗାଁ ଅଛି ସେ ସମସ୍ତ ମଣ୍ଡଳ ଗାଁ । ତାପରେ ମନୋରଞ୍ଜନ କହିଲେ ମଣ୍ଡଳ ଗାଁ କ'ଣ ? ମୁଁ କହିଲି ଉଚ୍ଚଜାତିର ୨ ପ୍ରତିଶତକୁ ଛାଡ଼ିଦେଲେ ସମସ୍ତେ ଶୂଦ୍ର । ବନମାଳୀପୁର ପାଖରେ ଖ୍ରୀଷ୍ଟିୟାନମାନଙ୍କ ବସ୍ତି ଅଛି, ତାପରେ ୨ କିଲୋମିଟର ଆଗରେ ମୁସଲମାନ ବସ୍ତି । ଏହା ହେଉଛି ଛୋଟ ହିନ୍ଦୁସ୍ତାନ । ଏଠାରେ ୯୦ ପ୍ରତିଶତ ପଛୁଆ ବର୍ଗ, ଗରିବ ଓ ଦଳିତ । ତମର ରାଜନୀତି ବିଜ୍ଞାନ ଓ ସାମାଜିକ ବିଜ୍ଞାନ ଏମାନଙ୍କ ପାଇଁ କିଛି ମୂଲ୍ୟବାନ ନୁହେଁ, କିଛି ପ୍ରେରଣା ବି ଦେଇ ପାରିବ ନାହିଁ । ରାଜନୀତି ବିଜ୍ଞାନ ବା ସାମାଜିକ ବିଜ୍ଞାନରୁ ବି ଯଦି କୌଣସି ପ୍ରେରଣା ମିଳିବ ତାହା ବିବଶତା ଅଧିକ ହିଁ ହେବାକୁ ମିଳିବ ।

## ନିଜ ଘରେ ପରୀକ୍ଷା ...

ପିଲାଦିନର ଏକ ଘଟଣା ମନେ ପଡୁଛି । ମୋ କକା ରାଷ୍ଟ୍ରୀୟ ଆନ୍ଦୋଳନର ନେତା ଥିଲେ । ମୁସଲମାନ ବସ୍ତିର ଆଶା ନୋନିୟା ଆମ ଘରକୁ ଆସିଲେ । ସେ ଜଳଖିଆ ଖାଇଲେ । ତା ପରେ ପ୍ରଶ୍ନ ଉଠିଲା ସେହି ପ୍ଲେଟଟି ଉଠାଇବ କିଏ ? ଏହା ଗୋଟେ ପ୍ରଶ୍ନ !!! ଆପଣ ସମସ୍ତେ ଆଶ୍ଚର୍ଯ୍ୟ ହେଉଥିବେ । ଥରେ ମୋର ବଡ଼ଭାଇଙ୍କ ହରିଜନ ବନ୍ଧୁ ଘରକୁ ଆସିଲେ । ସେ ଖାଉଥିଲେ । ସେତେବେଳେ ଘରର ମହିଳା ମାନଙ୍କ ମଧ୍ୟରେ ଆଲୋଚନା ହେଲା ସେଇ ବାସନ କିଏ ଉଠାଇବ ? ମୁଁ ନିଜ ଭଉଣୀକୁ ଡାକିଲି ଓ କହିଲି ଇନ୍ଦୁ ଚାଲ୍, ଆମେ ଦୁହେଁ ଉଠାଇ ଦେବା ! ମୁଁ ଯେତେବେଳେ ଏହା କହିଲି ସେତେବେଳେ ଖୁଡୀ ଓ ମାଆ କଥା ହେଲେ ରବି ଉଠେଇବ ? କିପରି ? ହଁ, ଝିଅପିଲାଟା ଉଠାଇଲେ ଚଳିବ । ପ୍ରଥମଥର ପାଇଁ ଆମଘରେ ମୁସଲମାନ, ହରିଜନର ଉଚ୍ଛିଷ୍ଟ ଉଠାଗଲା । ଏହା ମାନସିକତାର ପ୍ରଶ୍ନ । ସାଂପ୍ରଦାୟିକତା ଓ ଜାତିବାଦ ବିରୁଦ୍ଧରେ ସମତା ଓ ସମାଜବାଦର ଭାବନା ସୃଷ୍ଟି କରିବା ପାଇଁ ଏମିତି ବିପ୍ଳବାତ୍ମକ ମାନସିକତା ସୃଷ୍ଟି କରିବାର ଆବଶ୍ୟକତା ରହିଛି ।

ଥରେ କଫି ହାଉସରେ ଡଃ ରାମ ମନୋହର ଲୋହିଆଙ୍କ ସହ କେତେଜଣ ଯୁବକ ବସିଥିଲେ, ସେମାନଙ୍କ ମଧ୍ୟରୁ ଜଣେ ପ୍ରଶ୍ନକଲେ ହିନ୍ଦୁସ୍ତାନର ସମାଜରେ କ୍ରାନ୍ତି କିପରି ହେବ ? ଏହା ଉପରେ ଲୋହିୟା ମତ ଦେଲେ ଯେ, କ୍ଷୋଭର ବିଷୟ, ତୁମ ମଧ୍ୟରେ ଜଣେ ହେଲେ

ମୁସଲମାନ ନାହାନ୍ତି କି ମହିଳା ନାହାନ୍ତି କି ଶୁଦ୍ର ନାହାନ୍ତି ! ଡଃ ଲୋହିଆଙ୍କ ଏହି କଥାରୁ ରାଷ୍ଟ୍ରୀୟତା ଓ ଧର୍ମନିରପେକ୍ଷତା ସନ୍ଦେଶ ମିଳେ ।

ଗାନ୍ଧିଜୀଙ୍କ ହତ୍ୟା ଘଟିବାର ତିନି ମାସ ପରେ ୧୩ ଅପ୍ରେଲ ୧୯୪୮ ରେ ଭାରତୀୟ ସମ୍ବିଧାନ ସଭା ସଂକଳ୍ପ କରିଥିଲା । ସେଥିରେ ସ୍ପଷ୍ଟ ଉଲ୍ଲେଖ ଥିଲା ଦେଶର ବିକାଶ, ଏକତା ଓ ସାର୍ବଭୌମିକତା ପାଇଁ ଭାରତୀୟ ଜନ ଜୀବନରେ ସାଂପ୍ରଦାୟିକତାକୁ ସମାପ୍ତ କରିବା ଆବଶ୍ୟକ । ଏଥିପାଇଁ ଏପରି ସମସ୍ତ ସଙ୍ଗଠନ ବା ଦଳ ଉପରେ ପ୍ରତିବନ୍ଧ ଲଗାଇବାକୁ ସ୍ଥିର କରାଯାଇଥିଲା ଯାହା ଜାତି, ଧର୍ମ, ବର୍ଣ୍ଣ ବା ଏପରି କୌଣସି ଭେଦଭାବ ପ୍ରଚାରରେ ସଂଲଗ୍ନ ଥିବ ।

ଧର୍ମ ସମ୍ବନ୍ଧରେ ଅଜ୍ଞାନୀ ହେବା ପ୍ରତିବାଦର ଦ୍ୟୋତକ ନୁହେଁ । ସାଂପ୍ରଦାୟିକତା ଓ ଜାତିବାଦ ବିରୋଧରେ ଆମେ ଜନତାଙ୍କ ମାନସିକତାର ନିର୍ମାଣ କରିବା ଜରୁରୀ ।





କଟକରେ କୁଲଦୀପ ନାୟରଙ୍କ ସହ ରବି ରାୟ

# ଦେଶର ସ୍ଥିତି : ଆତ୍ମ ନିରୀକ୍ଷଣ କରିବା ପାଇଁ ଗାନ୍ଧି-ଲୋହିଆ-ଜୟପ୍ରକାଶ ପ୍ରାସଙ୍ଗିକ

ବର୍ତ୍ତମାନ ଦେଶବାସୀଙ୍କ ମୁଖ୍ୟ ୩ଟି ଶତ୍ରୁ ଉଚ୍ଚସ୍ତରୀୟ ଭ୍ରଷ୍ଟାଚାର, କ୍ଷମତାର କେନ୍ଦ୍ରୀକରଣ ଓ ଭୋଗବାଦ ଅର୍ଥନୀତି ବିରୁଦ୍ଧରେ ସାଲିସହୀନ ସଂଗ୍ରାମ କରିବା ପାଇଁ ଲୋକଶକ୍ତିର ଜାଗରଣ ଏକମାତ୍ର ବିକଳ୍ପ ବୋଲି ଲୋକସଭାର ପୂର୍ବତନ ବାଚସ୍ପତି ତଥା ଲୋକଶକ୍ତି ଅଭିଯାନର ମୁଖ୍ୟ ସଂରକ୍ଷକ ଶ୍ରୀ ରବିରାୟ ଦିଲ୍ଲୀଠାରେ ଡ଼କ୍ଟର ରାମ ମନୋହର ଲୋହିଆ ସମତା ନ୍ୟାସ ଭବନ ନିର୍ମାଣ ଭିତ୍ତି ପ୍ରସ୍ତର ଉତ୍ସବରେ ଅଧ୍ୟକ୍ଷତା କରି ନିଜ ଅନ୍ତର ବେଦନାକୁ ପରିପ୍ରକାଶ କରିଥିଲେ । ଜାତୀୟ ସ୍ତରର ବହୁ ପୂର୍ବତନ ସମାଜବାଦୀ ନେତା ଓ ସଂପ୍ରତି ବିଭିନ୍ନ ଜନ ଆନ୍ଦୋଳନର କର୍ମକର୍ତ୍ତାଙ୍କ ସମାବେଶରେ ବ୍ୟଥିତ ମନରେ କହିଥିଲେ ଯେ, ୫୦ ବର୍ଷର ସ୍ୱାଧୀନତା ପରେ ବି ଆମକୁ ଶୁଣିବାକୁ ପଡ଼ିଲା - ମହାତ୍ମାଗାନ୍ଧୀଙ୍କ ହତ୍ୟାକାରୀ ନାଥୁରାମ ଗଡ଼ସେର ଭାଇ ଗୋପାଳ ଗଡ଼ସେ ଜି.ଭି.ରେ କହିପାରିଲେ ଯେ "ଗାନ୍ଧୀଙ୍କୁ ହତ୍ୟାକରି ଠିକ୍ କରିଛନ୍ତି" ବୋଲି । ଏପରି ବକ୍ତବ୍ୟ ଦିଆଯାଇ ପାରୁଛି ଯେହେତୁ ଆମ ଦେଶରେ ନୈତିକ ଅଧପତନ ଘଟିଥିବା ଯୋଗୁଁ । ଜାତୀୟ ଆନ୍ଦୋଳନର ମୂଲ୍ୟବୋଧ ସାଙ୍ଗକୁ ଏକ ସମାଜବାଦୀ ଆନ୍ଦୋଳନ ଜରିଆରେ ଅସମତାକୁ ଦୂର କରିବା ପାଇଁ ମହାତ୍ମାଗାନ୍ଧୀଙ୍କ ପରେ ଡକ୍ଟର ଲୋହିଆ ଜନତାଙ୍କ ପାଖରେ ଆଦର୍ଶ ନେତୃତ୍ୱ ସହ ଦର୍ଶନ ରଖିଥିଲେ ଓ ସେଥିପାଇଁ ଆଜୀବନ କାର୍ଯ୍ୟରତ ଥିଲେ । କିନ୍ତୁ ଆଜି ସେହି ଆନ୍ଦୋଳନ ନଥିବାରୁ ବିଶ୍ୱସ୍ତରରେ ଧନୀ ଓ ଦରିଦ୍ର ମଧ୍ୟରେ ପାର୍ଥକ୍ୟ ଆକାଶ ପାତାଳ ହେବାରେ ଲାଗିଲାଣି । ଜାତିସଂଘର ମାନବ ବିକାଶ ରିପୋର୍ଟ ଅନୁଯାୟୀ ପୃଥିବୀର ସର୍ବୋଚ୍ଚ ୩ ଜଣ ଧନୀବ୍ୟକ୍ତିଙ୍କ ସଂପତ୍ତି ସବା ତଳ ୪୮ଟି ଗରିବ ଦେଶର ବାର୍ଷିକ ଉତ୍ପାଦନ ସଂପତ୍ତି ସହ ସମାନ । ଏପରି ଉଦାରୀକରଣ ତଥା ଭୋଗବାଦ ଅର୍ଥନୀତିରେ ଏକକୁ ଏକ ଲକ୍ଷ ଗୁଣ ପାର୍ଥକ୍ୟରେ ସାଧାରଣ ଲୋକେ ନ୍ୟାୟ ପାଇପାରିବେ ନାହିଁ । ଭାରତରେ ବି ଆଜି ସେହି ଅବସ୍ଥା ଡଃ ଲୋହିଆ ୩ ଅଣା ଓ ୧୪ ଅଣାର ଦୈନିକ ଆୟର ପାର୍ଥକ୍ୟକୁ ନେଇ ସମାଜବାଦୀ ଆନ୍ଦୋଳନ ଜରିଆରେ ଖର୍ଚ୍ଚ ଉପରେ ସୀମା ନିର୍ଦ୍ଧାରଣ କରିବାକୁ ଦାବି କରୁଥିଲେ । ଆଜି ଆୟ ଓ ବ୍ୟୟର ତାଲିକାରେ ଏକକୁ ଏକ ଲକ୍ଷ ଗୁଣ ପାର୍ଥକ୍ୟ ସହ ଧନୀବ୍ୟକ୍ତିଙ୍କ ସୁଖ ସମ୍ଭୋଗ ପାଇଁ ବିଦେଶରୁ ସ୍ତ୍ରୀ ଲୋକଙ୍କ ବିନ୍ଧିଆ ସମେତ ୩୪୦ଟି ପଦାର୍ଥକୁ ଆମଦାନୀ କରିବା ପାଇଁ ବର୍ତ୍ତମାନର ତଥାକଥିତ ସ୍ୱଦେଶୀପ୍ରେମୀ ବିଜେପି ସରକାର ନିଷ୍ପତ୍ତି ନେଇଛନ୍ତି । ଏହି ନୀତିକୁ ନରସିଂହ ରାଓଙ୍କ କଂଗ୍ରେସ, ଦେବଗୌଡ଼ା, ଗୁଜରାଲଙ୍କ ଜନତା ଓ ବର୍ତ୍ତମାନର ବାଜପାୟୀଙ୍କ ବିଜେପି ନେତୃତ୍ୱାଧୀନ ତିନୋଟି ସରକାର କାର୍ଯ୍ୟକାରୀ କରିଛନ୍ତି । ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ବିଶ୍ୱ ବ୍ୟାଙ୍କ ଓ ବିଶ୍ୱ ବାଣିଜ୍ୟ ସଂସ୍ଥା ତଥା ଆର୍ଥିକ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ନିର୍ଦ୍ଦେଶରେ । ଏଥିପାଇଁ ମୁଖ୍ୟ ରାଜନୈତିକ ଦଳମାନେ ଦୋଷୀ ।

ଏଥିରୁ ମୁକୁଳିବାକୁ ହେଲେ ଏବଂ ଧନୀ ଓ ଦରିଦ୍ର ମଧ୍ୟରେ ବୈଷମ୍ୟ କମାଇବାକୁ ହେଲେ - ଭ୍ରଷ୍ଟାଚାର, କେନ୍ଦ୍ରୀକରଣ ଓ ଭୋଗବାଦ ଅର୍ଥ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ ପାଇଁ ଯୁବଶକ୍ତିକୁ ଉଠାଇବାକୁ ହେବ । ସେମାନଙ୍କ ପାଇଁ ରୋଲମୋଡ଼େଲ ହେଉଛନ୍ତି ଗାନ୍ଧୀ ଲୋହିଆ - ଜୟପ୍ରକାଶ । ଏହି ଶିଳାନ୍ୟାସ ସଭାରେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖର ଶିଳାନ୍ୟାସ କରିଥିଲେ । ସର୍ବଶ୍ରୀ ସୁରେନ୍ଦ୍ର ମୋହନ, ଜନେଶ୍ୱର ମିଶ୍ର, ପ୍ରମୁଖ ପୂର୍ବତନ ସୋସାଲିଷ୍ଟ ନେତାମାନେ ଯୋଗଦେଇଥିଲେ । ଏହା ଥିଲା ନଭେମ୍ବର ୪ ତାରିଖ ।

ସାମୁଦ୍ରିକ ମତ୍ସ୍ୟଜୀବୀଙ୍କ ବଞ୍ଚିବାର ଅଧିକାର ପାଇଁ ଚାଲିଥିବା ସଂଗ୍ରାମକୁ ସମର୍ଥନ ଦେଇ ନଭେମ୍ବର ୫ ତାରିଖ ଦିନ ଦିଲ୍ଲୀର ସଂସଦ ମାର୍ଗରେ ଦେଶର ବିଭିନ୍ନ ରାଜ୍ୟରୁ ଯାଇଥିବା ମତ୍ସ୍ୟଜୀବୀଙ୍କ ଗଣ ବିକ୍ଷୋଭରେ ମୁଖ୍ୟ ଅତିଥି ରୂପେ ଶ୍ରୀ ରବିରାୟ ଯୋଗଦେଇ କେନ୍ଦ୍ର ସରକାରଙ୍କୁ କହିଥିଲେ ଯେ - ସୁପ୍ରିମକୋର୍ଟର ଐତିହାସିକ ରାୟ ଅନୁଯାୟୀ ଜନବିରୋଧୀ ଓ ପରିବେଶର ଶତ୍ରୁ କୃତ୍ରିମ ତଥା ସଘନ ସାମୁଦ୍ରିକ ଚିଙ୍ଗୁଡ଼ି ଚାଷକୁ ବନ୍ଦ କରି ମତ୍ସ୍ୟଜୀବୀଙ୍କ ଅଧିକାରକୁ ସ୍ୱୀକାର କରାଯାଉ । ସେହି ସମାଗମରେ କେନ୍ଦ୍ର ସରକାରଙ୍କୁ ସତର୍କ କରାଇ ଶ୍ରୀ ରାୟ କହିଲେ ଯେ - ଆମେରିକାର ଚାପରେ ଆମ ଦେଶର ୧୯୭୦ ପେଟେଣ୍ଟ ଆଇନକୁ ବାତିଲ କରି ବିଶ୍ୱ ବାଣିଜ୍ୟ ସଂସ୍ଥାର ନିର୍ଦ୍ଦେଶ ଅନୁଯାୟୀ ଆଇନକୁ ପରିବର୍ତ୍ତନ କଲେ ଆମ ଦେଶର ଲୋକେ ଔଷଧ, ବିହନ ତଥା ଅନେକ ନିଜର ଗବେଷଣାଜନିତ ସେବାରୁ ବଞ୍ଚିତ ହେବେ ଏବଂ ଆମ ବଜାରକୁ ଓ ଆମ ଅଧିକାରକୁ ଧନୀରାଷ୍ଟ୍ରମାନଙ୍କ ବେପାରୀମାନେ ଛଡ଼ାଇନେବେ । କେନ୍ଦ୍ର ସରକାର ଏହି ଆଇନକୁ ପରିବର୍ତ୍ତନ କରିବା ନିଷ୍ପତ୍ତି ଜନ ବିରୋଧୀ ଓ ଦେଶ ବିରୋଧୀ ବୋଲି ସେ କହିଥିଲେ ।

ନଭେମ୍ବର ୬ ଦିନ ସମାଜବାଦ ଚିନ୍ତକ ତଥା ସାମୟିକବାର୍ତ୍ତାର ସଂପାଦକ ଶ୍ରୀ କିଶନ ପଟ୍ଟନାୟକଙ୍କ ଅଧକ୍ଷତାରେ ସାମୟିକବାର୍ତ୍ତାର ଦିଲ୍ଲୀ ପ୍ରକାଶନ ଅବସରରେ ଏକ ବିଚାର ବୈଠକ ଅନୁଷ୍ଠିତ ହୋଇଥିଲା । ସେଥିରେ ଶ୍ରୀ ରବିରାୟ ଅଧକ୍ଷତା କରି ସାମୟିକବାର୍ତ୍ତା ନୂଆ ସମାଜବାଦୀ ତଥା ସମତା ଦର୍ଶନକୁ ଯୁବ ସମାଜ ପାଖରେ ପହଞ୍ଚାଇ ପାରିବ ବୋଲି ଆଶା କରି ଶୁଭେଚ୍ଛା ପ୍ରକାଶ କରିଥିଲେ । ଏହି ଅବସରରେ ସେ କହିଥିଲେ ଯେ ଡଃ ଲୋହିଆଙ୍କ ପାଇଁ ମହାତ୍ମାଗାନ୍ଧୀଙ୍କ ସମର୍ଥନ ନିକଟତର ହୋଇ ଆସୁଥିବାବେଳେ ମହାତ୍ମାଗାନ୍ଧୀଙ୍କ ହତ୍ୟା ହୋଇଥିଲା । ଡକ୍ଟର ଲୋହିଆ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ଓ ଜୟ ପ୍ରକାଶ ନାରାୟଣଙ୍କ ସମାଜବାଦୀ କାର୍ଯ୍ୟକ୍ରମ ଓ ନେତୃତ୍ୱ ଉପରେ ମହାତ୍ମାଗାନ୍ଧୀଙ୍କ ବିଶ୍ୱାସ ଦୃଢ଼ୀଭୂତ ହୋଉଥିଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କୁ କଂଗ୍ରେସର ସଭାପତି କରିବାକୁ ଗାନ୍ଧୀ ଚାହୁଁଥିଲେ । ଗୋଆ ମୁକ୍ତି ପାଇଁ ଡକ୍ଟର ଲୋହିଆ ଗିରଫ ହେବା ପରେ ଜବହାରଲାଲ ନେହୁରୁ ନୀରବ ରହିବାବେଳେ ମହାତ୍ମାଗାନ୍ଧୀ ପ୍ରତିବାଦ ସଭାକୁ ଆସି କହିଥିଲେ ଯେ "ଲୋହିଆଙ୍କୁ ଖଲାସ କରାନଗଲେ ମତେ ବି ଜେଲରେ ରହିବାକୁ ହେବ ।" ଡକ୍ଟର ଲୋହିଆଙ୍କ ସାମାଜିକ ନ୍ୟାୟପାଇଁ ଆହ୍ୱାନ ଥିଲା ସଂରକ୍ଷଣ ସହ ଜାତିତୋଡ଼ ଆନ୍ଦୋଳନ ।

ପଛୁଆ ଜାତି, ହରିଜନ ଓ ମହିଳାଙ୍କୁ ରାଜନୈତିକ ଓ ସାମାଜିକ ବ୍ୟବସ୍ଥାରେ ଉଚିତ ସ୍ଥାନ ଦେଲେ ହିଁ ଯାଇ ସାମଗ୍ରିକ ବିକାଶ ସମ୍ଭବ ପର ଏବଂ ଆର୍ଥିକ ସମତା ଏହି ବିକାଶ ଜରିଆରେ ଆସି ପାରିବ ବୋଲି ଡଃ ଲୋହିଆଙ୍କ ବିଚାର ଥିଲା । ସେହି ବିଚାରକୁ ଆଧାର କରି ଆଜି ଭୂମଣ୍ଡଳୀ କରଣ ବିରୁଦ୍ଧରେ ଲଢ଼ିବାକୁ ହେଲେ ପୁଣି ଗାନ୍ଧୀବାଦୀ ଲୋହିଆଙ୍କୁ ହିଁ ଗ୍ରହଣ କରିବାକୁ ହେବ ବୋଲି ରବି ରାୟ ସ୍ପଷ୍ଟ ମନ୍ତବ୍ୟ ଦେଇଥିଲେ ।

## ତିବ୍ବତର ସ୍ୱାଧୀନତାର ସୁରକ୍ଷା ଭାରତର ଦାୟିତ୍ୱ ଥିଲା

ଭାରତ ସ୍ୱାଧୀନ ହେଲାପରେ ତିବ୍ବତ ଉପରେ ଚିନ ଆକ୍ରମଣ କରି ନିଜ ଦେଶରେ ସାମିଲ କରିବାଦେବା ବେଳେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଜବହାରଲାଲ ନେହୁରୁ ଚିନକୁ ସମର୍ଥନ କରି ଐତିହାସିକ ଭୁଲ କରିଥିଲେ ବୋଲି ଭାରତ-ତିବ୍ବତ ମୈତ୍ରିସଂଘର ସଭାପତି ରୂପେ ରବିରାୟ ମିରିଠ ଠାରେ ନଭେମ୍ବରରେ ଅନୁଷ୍ଠିତ ସଂଘର ଯୁବ ବାର୍ଷିକ ସମ୍ମିଳନୀରେ କହିଛନ୍ତିଣ। ସର୍ଦ୍ଦାର ପଟେଲ ଓ ଡକ୍ଟର ଲୋହିଆ ତିବ୍ବତ ଏକ ସ୍ୱାଧୀନ ରାଷ୍ଟ୍ର ରୂପେ ସ୍ୱୀକାର କରିବାକୁ ମତ ଦେଇଥିଲେ । ମହାତ୍ମାଗାନ୍ଧୀ ବଞ୍ଚିଥିଲେ ତିବ୍ବତ ସ୍ୱାଧୀନତା ପାଇଁ ଲଢ଼ିଥାନ୍ତେ । ଭାରତ ସ୍ୱାଧୀନତାର ପ୍ରାକ କାଳରେ ଦିଲ୍ଲୀଠାରେ ଏସିଆନ ରିଲେସନ କନଫେରନସ୍‌ରେ ତିବ୍ବତର ପ୍ରତିନିଧିତ୍ୱ ସେଠାର ମୁଖ୍ୟ ଦଲାଇଲାମା କରିଥିଲେ । ଚିନ୍ କରିନଥିଲା । ସେହି କନଫେରନ୍‌ସକୁ ମହାତ୍ମାଗାନ୍ଧୀ ଉଦ୍‌ଘାଟନ କରିଥିଲେ । ଭାରତର ସ୍ୱାଧୀନତା ପରେ ଏସିଆ ଓ ଆଫ୍ରିକା ଦେଶମାନଙ୍କରେ ସ୍ୱାଧୀନତା ପାଇଁ ଭାରତ ସମର୍ଥନ କରିଥିଲାଣ। ଇଣ୍ଡୋନେସିଆର ସ୍ୱାଧୀନତା ଆନ୍ଦୋଳନକୁ ସାହାଯ୍ୟ କରିବାକୁ ଯାଇ ସେଠାର ସୁକର୍ଣ୍ଣଙ୍କ ନେତୃତ୍ୱରେ ପରିଚାଳିତ ସମାନ୍ତରାଳ ସରକାରର ପ୍ରଧାନମନ୍ତ୍ରୀ ଡଃ. ହଟାଙ୍କୁ ଉଦ୍ଧାର କରାଯାଇଥିଲା। ସେହିପରି ଚିନର ଆକ୍ରମଣରୁ ତିବ୍ବତକୁ ସାହାଯ୍ୟ କରାଯାଇଥିଲେ ଭାରତର ସୀମା ସୁରକ୍ଷିତ ହୋଇ ରହିଥାନ୍ତା ଓ ଚିନ ଭାରତ ଉପରେ ୧୯୬୨ରେ ଆକ୍ରମଣ କରିବାକୁ ସହାସ କରିନଥାନ୍ତା ବୋଲି ରବି ରାୟ ଐତିହାସିକ ତଥ୍ୟ ଉପସ୍ଥାପନା କରିଥିଲେ ।

ତିବ୍ବତରେ ଏବେ ବି ବୌଦ୍ଧଧର୍ମ ବଞ୍ଚିକରି ରହିଛି । ବୁଦ୍ଧ ଥିଲେ ନିଷ୍ପେସିତ ଓ ବଞ୍ଚିତ ଜନସାଧାରଣଙ୍କ ଦରଦୀ ସଂସ୍କାରକ । ତାଙ୍କରି ଦ୍ୱାରା ପ୍ରଭାବିତ ହୋଇ ନୋବେଲ ପୁରସ୍କାର ବିଜେତା ଡକ୍ଟର ଅମର୍ତ୍ତ୍ୟସେନ ଶିକ୍ଷା, ସ୍ୱାସ୍ଥ୍ୟ ତଥା ଦାରିଦ୍ର୍ୟ ଉପରେ ଗବେଷଣା କରିଛନ୍ତି ବୋଲି କହିଛନ୍ତି । ତେଣୁ ବୁଦ୍ଧଙ୍କୁ ଗ୍ରହଣ କରିଥିବା ତୀବ୍ବତୀୟମାନଙ୍କ ସ୍ୱାଧନତା ପାଇଁ ଭାରତୀୟମାନଙ୍କ ସମେତ ପୃଥିବୀବାସୀଙ୍କ ସମର୍ଥନ ଏକାନ୍ତ ଜରୁରୀ ବୋଲି ସେ ଆହ୍ୱାନ କରିଥିଲେ ।

ଏହି ସମ୍ମିଳନୀରେ ପ୍ରଫେସର ଆନନ୍ଦ କୁମାର ସଭାପତିତ୍ୱ କରିଥିଲେ । ସାଂସଦ ଶ୍ରୀ. ଟି.କେ. ଚତୁର୍ବେଦୀ, ତିବ୍ବତ ଜନ ସାଂସଦର ବାଚସ୍ପତି ଶ୍ରୀ. ଥୁମସନ ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ ।



## ଗାନ୍ଧୀମାର୍ଗ ଏ ପର୍ଯ୍ୟନ୍ତ ପରୀକ୍ଷିତ ହୋଇନାହିଁ

# ମହାତ୍ମା ଗାନ୍ଧି ବନାମ ପଣ୍ଡିତ ନେହେରୁ

ଏ ଲେଖାର ଶୀର୍ଷକ ସମ୍ପର୍କରେ ଏକ ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ମୃତ୍ୟୁର ବହୁବର୍ଷ ବିତିଯିବା ପରେ ଏ ପ୍ରକାର ବିଷୟର କୌଣସି ପ୍ରାସଙ୍ଗିକତା ଅଛି କି ? ସେଥିପାଇଁ ଏହାର ଉଦ୍ଦେଶ୍ୟ ସମ୍ବନ୍ଧରେ ସ୍ପଷ୍ଟ କରିଦେବା ସମୀଚୀନ ହେବ । ମହାତ୍ମା ଗାନ୍ଧୀ ଓ ପଣ୍ଡିତ ନେହେରୁଙ୍କ ଭିତରେ ଏକ କୃତ୍ରିମ ଦ୍ୱନ୍ଦ୍ୱ ସୃଷ୍ଟି କରିବା ଏ ଲେଖାର ଆଦୌ ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଯେଉଁମାନେ ସେମାନଙ୍କ ମୃତ୍ୟୁ ପରେ ଜନ୍ମ ଗ୍ରହଣ କରିଛନ୍ତି, ସେମାନଙ୍କ ଦର୍ଶନ ସମ୍ପର୍କରେ ସ୍ପଷ୍ଟ ଚିତ୍ର ରଖି ପାରିଲେ ସେମାନେ ସବୁ ବିଷୟକୁ ଏକ ସମନ୍ୱିତ ଦୃଷ୍ଟିକୋଣରୁ ଚିନ୍ତା କରିବାକୁ ସୁଯୋଗ ପାଇପାରିବେ । ଆମ ଦେଶରେ ଗୋଟିଏ ଭ୍ରାନ୍ତ ଧାରଣା ରହିଯାଇଛି ଯେ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ମଧ୍ୟରେ ଅନେକାଂଶରେ ଆଦର୍ଶଗତ ସାମ୍ୟ ରହିଛି । ଖାଲି ସେତିକି ନୁହେଁ, ଇତିହାସରେ ଗାନ୍ଧିଜୀଙ୍କ ସ୍ଥାନକୁ ଗୌଣକରିବା ପାଇଁ ଆଜିକାଲି ସୂକ୍ଷ୍ମ ଢଙ୍ଗରେ ଯେଉଁ ଚକ୍ରାନ୍ତ ଚାଲିଛି, ଦେଶର ଜଣେ ଅଭିଜ୍ଞ ସାମ୍ବାଦିକ ତାର ଯେଉଁ ନମୁନା ଦେଇଛନ୍ତି, ତା ପ୍ରଣିଧାନ ଯୋଗ୍ୟ । ସେ ଲେଖିଛନ୍ତି - ବହୁ ପ୍ରଶଂସିତ ଭାରତ ଉତ୍ସବରେ (India Festival) ଗାନ୍ଧିଜୀଙ୍କ ନାମ ବିଶେଷ ସ୍ଥାନ ପାଇନାହିଁ । ଭାରତ ଏବଂ ଭାରତର ପରମ୍ପରାକୁ ବିଶ୍ୱ ସମ୍ମୁଖରେ ଉପସ୍ଥାପିତ କରିବାକୁ ଭାରତ -ଉତ୍ସବର ଆୟୋଜନ କରାଯାଇଥିଲା । କିନ୍ତୁ ଆଧୁନିକ ଭାରତର ମୁଖ୍ୟ ନିର୍ମାତା ମହାତ୍ମା ଗାନ୍ଧିଙ୍କୁ ଏଥିରୁ ବାଦ୍ ଦିଆଯାଇଛି । ଶ୍ରୀମତୀ ଗାନ୍ଧୀ ୧୯୮୧ ମାର୍ଚ୍ଚ ୨୪ ତାରିଖରେ ଏକ ସାମ୍ବାଦିକ ସମ୍ମିଳନୀରେ ଦେଇଥିବା ମନ୍ତବ୍ୟ ଦୈବାତ ଦେଖିବାର ମୁଁ ସୁଯୋଗ ପାଇଥିଲି । ଶ୍ରୀମତୀ ଗାନ୍ଧୀଙ୍କୁ ଜଣେ ସାମ୍ବାଦିକ ପଚାରିଲେ ଯେ ନେହେରୁଙ୍କ ଉପରେ ଯେପରି ସ୍ଥାୟୀ ପ୍ରଦର୍ଶନୀର ବ୍ୟବସ୍ଥା ଅଛି, ମହାତ୍ମା ଗାନ୍ଧୀଙ୍କ ଉପରେ ସେପରି ସ୍ଥାୟୀ ପ୍ରଦର୍ଶନୀ ହେବ କି ? ଶ୍ରୀମତୀ ଗାନ୍ଧୀ କିଛି ସମୟ ରହିଯାଇ ଉତ୍ତର ଦେଇଥିଲେ ଯେ ଆପଣ ଜାଣନ୍ତି ଏହା ଘରୋଇ ଉଦ୍ୟମରେ ହେଉଛି । ନେହେରୁ ପ୍ରଦର୍ଶନୀ ସମୁଦାୟ ସ୍ୱାଧୀନତା ସଂଗ୍ରାମ ବିଷୟରେ କରାଯାଉଛି ଯେଉଁଥିରେ କି ମହାତ୍ମା ଗାନ୍ଧୀ ଜଣେ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ପୁତ୍ର ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି କଂଗ୍ରେସ ଶତବାର୍ଷିକୀ ଉତ୍ସବ ବମ୍ବେଠାରେ ଉଦ୍‌ଘାଟନ କରି ତାଙ୍କ ଭାଷଣରେ କହିଥିଲେ ଯେ ୧୯୩୬ ମସିହାରେ ଆନନ୍ଦ ଭବନରୁ କଂଗ୍ରେସ ଅଫିସ କାର୍ଯ୍ୟକାରୀ ହେବା ପରେ କଂଗ୍ରେସର ପ୍ରକୃତ ଇତିହାସ ଆରମ୍ଭ ହେଲା । ଯେତେବେଳେ ସରକାରୀ କଳ ସାହାଯ୍ୟରେ ଇତିହାସକୁ କଦର୍ଯ୍ୟ କରି ଯୁବସମାଜ ଆଗରେ ପରିବେଷିତ କରାଯାଉଛି, ସେତେବେଳେ ଦେଶ ଓ ସମାଜର ନିର୍ଭୀକ ଓ ସତ୍ୟନିଷ୍ଠ ନାଗରିକମାନଙ୍କର କର୍ତ୍ତବ୍ୟ ସୁସ୍ପଷ୍ଟ । ଏଇ ପରିପ୍ରେକ୍ଷୀରେ 'ମହାତ୍ମା ଗାନ୍ଧୀ ବନାମ ନେହେରୁ' ବିଷୟଟି ବହୁ ଆଗରୁ ଆଲୋଚିତ ହେବା ଉଚିତ ଥିଲା । ବରଂ ସେଥିରେ ବିଳମ୍ବ ହେବାରୁ ଏସମ୍ପର୍କରେ

ଜନସାଧାରଣଙ୍କ ଚିନ୍ତାଧାରାରେ ସ୍ପଷ୍ଟତା ଆସିବା ପରିବର୍ତ୍ତେ ହତବୁଦ୍ଧି ଦେଖାଦେଉଛି । ବିଭିନ୍ନ ବିଚାରଗୁଣ ସଂଘର୍ଷରେ ହିଁ ବିଚାରରେ ସ୍ପଷ୍ଟତା ଆସିପାରିବ । ସୁଖର କଥା ଯେ ଗତ କେତେ ବର୍ଷ ହେବ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ମଧ୍ୟରେ ଆଦାନ ପ୍ରଦାନ ହୋଇଥିବା ବହୁ ମହତ୍ୱପୂର୍ଣ୍ଣ ଚିଠିପତ୍ର ପ୍ରକାଶିତ ହୋଇଛି । ସେ ସବୁ ପ୍ରମାଣିକ ତଥ୍ୟ ଉପରେ ଯେଉଁପ୍ରକାର ଗବେଷଣା ଆବଶ୍ୟକ, ତା ଏପର୍ଯ୍ୟନ୍ତ କରାଯାଇପାରି ନାହିଁ । ସେସବୁ ଚିଠି ଭିତରୁ କେତେକ ଚିଠିକୁ ଏ ଲେଖାରେ ଏଥିପାଇଁ ପ୍ରକାଶିତ କରିବା ଜରୁରୀ ହୋଇଯାଇଛି, ଯାହାଫଳରେ ସେମାନଙ୍କ ଭିତରେ ଥିବା ଜୀବନ-ଦର୍ଶନ ସମ୍ପର୍କୀୟ ମୌଳିକ ପାର୍ଥକ୍ୟ ସମ୍ପର୍କରେ ଦେଶର ଜନସାଧାରଣ ଅବଗତ ହୋଇ ପାରିବେ । ବିବାଦମାନ ବିଚାର ମଧ୍ୟରେ ଖୋଲାଖୋଲି ବାଦ-ବିବାଦରୁ କିପରି ଗାନ୍ଧିଜୀ ପ୍ରୋତ୍ସାହନ ଦେଉଥିଲେ ତା ମଧ୍ୟ ଏ ଚିଠିଗୁଡ଼ିକରୁ ଆହୁରି ସ୍ପଷ୍ଟତର ହୋଇଯିବ ।

୧୯୨୭ ଜାନୁଆରୀ ୧୭ ତାରିଖ ସାବରମତୀ ଆଶ୍ରମରୁ ଏକ ଚିଠିରେ ପଣ୍ଡିତ ନେହେରୁଙ୍କୁ ଗାନ୍ଧିଜୀ ଲେଖିଛନ୍ତି ''ତୁମ ଓ ମୋ ଭିତରେ ମତର ପାର୍ଥକ୍ୟ ଏତେ ଗଭୀର ଓ ମୌଳିକ ଯେ ମୋର ମନେହୁଏ ଯେ ଆମ ଦୁହିଁଙ୍କ ମଧ୍ୟରେ କୌଣସି ସାମଞ୍ଜସ୍ୟ ଥିଲା ପରି ମନେ ହେଉନାହିଁ । ମୁଁ ମଧ୍ୟ ତମ ପରି ଜଣେ ସାହସୀ, ସାଧୁ, ସଚ୍ଚୋଟ ଓ ବିଶ୍ୱସ୍ତ ବନ୍ଧୁଙ୍କୁ ହରାଇବି ବୋଲି ଆମ ମତଭେଦକୁ ଚପାଇ ଦେବାକୁ ଚାହେଁ ନାହିଁ । କୌଣସି ଆଦର୍ଶ ପାଇଁ ବେଳେବେଳେ ନିଜର ବହୁ ଅନ୍ତରଙ୍ଗ ବନ୍ଧୁଙ୍କୁ ମଧ୍ୟ ଛାଡ଼ିବାକୁ ପଡ଼ିଥାଏ । ଏକଥା ମଧ୍ୟ ମନେ ରଖିବାକୁ ହେବ ଯେ ବନ୍ଧୁତାଠାରୁ ଆଦର୍ଶ ବହୁ ଉଚ୍ଚରେ । ଯଦି ଆମ ଭିତରେ ବିଚ୍ଛେଦ ବି ହୁଏ ତେବେ ଆମର ବ୍ୟକ୍ତିଗତ ସମ୍ବନ୍ଧରେ କୌଣସି ଆଞ୍ଚ ଆସିବ ନାହିଁ । ମୋ ମତ ସହ ତମ ମତର ଯେଉଁ ପାର୍ଥକ୍ୟ ରହିଛି, ତାର ପ୍ରଦର୍ଶନ ପାଇଁ ମୁଁ ତମପାଇଁ ଗୋଟିଏ ସମ୍ମାନଜନକ ବାଟ ଖୋଜି ବାହାର କରିଛି । ସେଇଟି ହେଲାଯେ ତମେ ସେ ସମ୍ପର୍କରେ ମୋତେ ଯେଉଁ ଚିଠି ଲେଖିବ, ମୁଁ ତାକୁ 'ୟଙ୍ଗ ଇଣ୍ଡିଆ'ରେ ପ୍ରକାଶିତ କରିବା ସଙ୍ଗେସଙ୍ଗେ ତା' ସହ ମୋର ଏକ ସଂକ୍ଷିପ୍ତ ଉତ୍ତର ମଧ୍ୟ ପ୍ରକାଶିତ କରିବି ।''

ଏକଥା କାହାକୁ ଅବିଦିତ ନାହିଁ ଯେ ଦ୍ୱିତୀୟ ମହାଯୁଦ୍ଧକାଳେ ଇଂରେଜ ସରକାର ଅଡୁଆରେ ପଡ଼ିଯିବେ, ସେଥିପାଇଁ ୧୧୯୪୨ ସାଲରେ ଭାରତଛାଡ଼ ଭଳି କୌଣସି ଜନଆନ୍ଦୋଳନ କରିବା ସପକ୍ଷରେ ପଣ୍ଡିତ ନେହେରୁ ନ ଥିଲେ । କିନ୍ତୁ ସେ କିପରି ଗାନ୍ଧିଜୀଙ୍କ ଯୋଗୁଁ ହିଁ ଉକ୍ତ ଆନ୍ଦୋଳନରେ ଯୋଗ ଦେଇଥିଲେ ସେ ବିଷୟଟି ୧୯୪୨ ଅଗଷ୍ଟ -ମଇ ୧୪ ତାରିଖରେ ପଣ୍ଡିତ ନେହେରୁଙ୍କୁ ଜେଲରୁ ଖଲାସ କରିବା ଦାବି କରି ଭାଇସରାୟ ଲର୍ଡ଼ ଲିନଲଥମୋଙ୍କ ନିକଟକୁ ଗାନ୍ଧି ଲେଖିଥିବା ଚିଠିରୁ ସ୍ପଷ୍ଟ ହୋଇଯିବ ।

''ଆପଣଙ୍କ ଘୋଷିତ ନୀତି ଓ ଆମ ନୀତି ପ୍ରାୟ ଏକା । ପ୍ରକୃତ ସମସ୍ୟା ହେଉଛି ଚୀନ ଓ ରୁଷର ସ୍ୱାଧୀନତା । ଆପଣ ଭାବନ୍ତି ଯେ ଦୁଇଦେଶର ସ୍ୱାଧୀନତା ରକ୍ଷା କରିବା ଦୃଷ୍ଟିରୁ ଭାରତବର୍ଷର ସ୍ୱାଧୀନତାର କୌଣସି ଆବଶ୍ୟକତା ନାହିଁ । ମୁଁ ଯାର ଠିକ ବିପରୀତ କଥାଟି ଭାବେ । ଏ ସମ୍ପର୍କରେ ଜବାହରଲାଲ ନେହେରୁ ମୋର ମାପକାଠି ସ୍ୱରୂପ ।

ଆପଣଙ୍କଠାରୁ ସେ ଋଷ ଓ ଚୀନର ଦୁଃଖକୁ ବେଶି ହୃଦୟଙ୍ଗମ କରନ୍ତି । ସେଥିପାଇଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ତାଙ୍କ ପୁରୁଣା ଝଗଡ଼ାକୁ ସେ ଭୁଲି ଯାଇଛନ୍ତି । ମୋଠାରୁ ସେ ବେଶି ନାଜିବାଦ ଓ ଫାସିଷ୍ଟବାଦକୁ ଭୟ କରନ୍ତି । ମୋର ତାଙ୍କସହ ଏ ସମ୍ପର୍କରେ ଦୀର୍ଘ ଦୁଇଦିନ ଧରି ତର୍କ ବିତର୍କ ହୋଇଛି । ସେ ତାଙ୍କ କଥାରେ ଏପରି ଅଟଳ ରହିଲେ ଯେ ମୋ ପକ୍ଷରେ ତା ବର୍ଣ୍ଣନାର କରିବା ବି ସମ୍ଭବ ନୁହେଁ । କିନ୍ତୁ ଘଟଣା ପ୍ରବାହ ଯେତେବେଳେ ତାଙ୍କ ଆଗରେ ସବୁ ବିଷୟକୁ ସ୍ପଷ୍ଟ କରିଦେଲା,ସେ ମୋ ସହ ଏକମତ ହେଲେ ଯେ ଭାରତବର୍ଷର ସ୍ୱାଧୀନତା ବ୍ୟତିରେକ ଚୀନ ଓ ଋଷର ସ୍ୱାଧୀନତା ସମ୍ଭବପର ନୁହେଁ । ତାଙ୍କଭଳି ଆପଣଙ୍କର ଜଣେ ଶକ୍ତିଶାଳୀ ମିତ୍ରକୁ କିପରି ବନ୍ଦୀ କରି ରଖିଛନ୍ତି, ମୁଁ ତା ବୁଝିପାରୁନାହିଁ ।''

୧୯୪୫ ସାଲ ଅଗଷ୍ଟ ୫ ତାରିଖରେ ଗାନ୍ଧିଜୀ ପଣ୍ଡିତ ନେହେରୁଙ୍କୁ ଯେଉଁ ଚିଠି ଲେଖିଛନ୍ତି, ତା ଅତି ଗୁରୁତ୍ୱପୂର୍ଣ୍ଣ । ସେ ଚିଠିଟିରେ ସେ ତାଙ୍କ ରାଜନୈତିକ ଓ ସାମଜିକ ଦିଗଦର୍ଶନର ସୂଚନା ଦେଇ ପଣ୍ଡିତ ନେହେରୁଙ୍କଠାରୁ ସେ ତାଙ୍କର ବିକଳ୍ପ ମତାମତ ଜାଣିବାକୁ ଚାହିଁଛନ୍ତି । ସେ ଲେଖିଛନ୍ତି - ''ମୁଁ ତୁମକୁ ଇଂରେଜୀରେ କି ହିନ୍ଦୁସ୍ଥାନୀରେ ଲେଖିବି ସେକଥା ଭାବି ଠିକ କଲି ଯେ ମୁଁ ତୁମ ନିକଟକୁ ହିନ୍ଦୁସ୍ଥାନୀରେ ଲେଖିବାଟା ହିଁ ଶ୍ରେୟସ୍କର ହେବ । ତମ ଓ ମୋ ମଧ୍ୟରେ ଥିବା ମତଭେଦ ଏତେ ମୌଳିକ ଯେ ମୋ ବିଚାରରେ ଜନସାଧାରଣଙ୍କ ସେ ସମ୍ପର୍କରେ ଜାଣି ରଖିବା ଉଚିତ । ସେମାନଙ୍କୁ ଏ ବିଷୟରେ ଅନ୍ଧକାରରେ ରଖିଲେ ତା ସ୍ୱରାଜର ପରିପନ୍ଥୀ ହେବ ବୋଲି ମୋର ମତ । ''ହିନ୍ଦ୍ ସ୍ୱରାଜରେ ମୁଁ ଯେଉଁପ୍ରକାର ସମାଜ ଓ ସରକାରର ପରିକଳ୍ପନା କରିଛି, ମୁଁ ବର୍ତ୍ତମାନ ବି ତାଉପରେ କାଏମ ରହିଛି । ଏ ଗୁଡ଼ିକ କେବଳ କଥାର କଥା ନୁହଁ ? ୧୯୦୮ରେ ଯେତେବେଳେ ମୁଁ ଏ ବହି (ହିନ୍ଦ୍ ସ୍ୱରାଜ) ଲେଖିଲି, ସେ ଦିନଠାରୁ ମୁଁ ଯେଉଁସବୁ ଅଭିଜ୍ଞତା ଅର୍ଜନ କରିଛି, ସେଥିରୁ ମୋର ବିଶ୍ୱାସ ଆହୁରି ଦୃଢ଼ୀଭୂତ ହୋଇଛି । ତେଣୁ ମୁଁ ଏକାକୀ ରହିଲେ ମଧ୍ୟ ଯାହା ସତ ତାକୁ ତ୍ୟାଗ କରିବା ପ୍ରଶ୍ନ ଇ ଉଠୁନାହିଁ । ମୁଁ ଲେଖିଲାବେଳେ ମୋ ସାମ୍ନାରେ ହିନ୍ଦସ୍ୱରାଜ ବହି ନାହିଁ । ସେଥିଯୋଗୁଁ 'ହିନ୍ଦସ୍ୱରାଜ'ର ସମାଜର ଯେଉଁଚିତ୍ର ଅଙ୍କା ଯାଇଛି, ମୋ ଭାଷାରେ ମୁଁ ତୁମକୁ ପୁନର୍ବାର ତା କହିବାକୁ ଚାହେଁ । ଏହା ଜରୁରୀ ନୁହେଁ ଯେ ସେଥିରେ ଯାହା ଅଛି, ତାର ଅବିକଳ ନକଲ ମୁଁ ଏଠାରେ କରିବି । ମୋର ହୃଦ୍‌ବୋଧ ହୋଇଛି ଯେ କେବଳ ଭାରତ ନୁହେଁ, ସାରା ଦୁନିଆ ପାଇଁ ଆମେ ପ୍ରକୃତ ସ୍ୱାଧୀନତା ସେତିକିବେଳେ ପାଇବାକୁ ହକଦାର ହେବା, ଯେତେବେଳେ ସହର ଓ ରାଜପ୍ରାସାଦ ପରିବର୍ତ୍ତେ ଗାଁର କୁଡ଼ିଆରେ ରହିବାକୁ ପ୍ରସ୍ତୁତ ହେବା । କୋଟିକୋଟି ଲୋକେ ସହର ଓ ରାଜପ୍ରାସାଦରେ କସ୍ମିନକାଳେ ଶାନ୍ତିରେ ରହିପାରିବେ ନାହିଁ । ତାହା ହେଲେ ହିଂସା ଓ ଅସତ୍ୟ ବ୍ୟତିରେକ ସେମାନେ ଚଳିପାରିବେ ନାହିଁ । ମଣିଷ ସମାଜ ପାଇଁ ସତ୍ୟ ଓ ଅହିଂସା ବ୍ୟତୀତ ବିନାଶ ଅବଶ୍ୟମ୍ଭାବୀ । ଆମେ ସରଳତା ମାଧ୍ୟମରେ ହିଁ ସତ୍ୟ ଓ ଅହିଂସାର ସନ୍ଧାନ ପାଇପାରିବା ଓ ଚରଖା ହେବ ହେବ ତାର ପ୍ରତୀକ । ଦୁନିଆ ଭୁଲ ବାଟରେ ଚାଲିଛି ବୋଲି ମୁଁ ଡରିଯିବି ନାହିଁ । ଭାରତବର୍ଷ ମଧ୍ୟ ପତଙ୍ଗ ପରି ନିଆଁର ଚାରିପଟେ ନାଚିକୁଦି ନିଜକୁ ଜାଳି ଦେଇପାରେ । ଆମଦେଶକୁ ଓ ତା ଜରିଆରେ ସାରା ଦୁନିଆକୁ ମୋର ଶେଷ ନିଶ୍ୱାସ ଥିବା ପର୍ଯ୍ୟନ୍ତ ଏ ଚରମ ବିନାଶରୁ ରକ୍ଷା କରିବା ମୋର ପରମ କର୍ତ୍ତବ୍ୟ ହେବ ।

ମୋର କହିବାର ଅର୍ଥ ହେଲା ଯେ ମଣିଷର ଯାହା ଆବଶ୍ୟକ ସେଥିରେ, ସେ ସନ୍ତୁଷ୍ଟ ହେବା ସଙ୍ଗେ ସଙ୍ଗେ ଆତ୍ମନିର୍ଭରଶୀଳ ମଧ ହେବ । ତା ନିଜ ଉପରେ ଯଦି ତାର ନିୟନ୍ତ୍ରଣ ନ ରୁହେ ତେବେ ସେ ନିଜକୁ ରକ୍ଷା କରିପାରିବା ଅସମ୍ଭବ ହୋଇଯିବ । ଯେପରି ବୁଦବୁଦକୁ ମହୋଦଧୀର ଉଦ୍ଭବ ହୋଇଥାଏ, ସେହିପରି ବ୍ୟକ୍ତିକୁ ନେଇ ଦୁନିଆର ଉଦ୍ଭବ ହୁଏ । ମୁଁ କିଛି ନୂଆ କଥା କହୁନାହିଁ । ଏହା ଚିରନ୍ତନ ସତ୍ୟ । ମୁଁ ଜାଣେନା ମୁଁ ଏସବୁ କଥା ''ହିନ୍ଦ୍ ସ୍ୱରାଜ''ରେ କହିଛି କି ନା । ମୁ ବିଜ୍ଞାନକୁ ତାରିଫ କରେ । ଆଧୁନିକ ବିଜ୍ଞାନ ଦୃଷ୍ଟିରୁ ହିଁ ପୁରାତନକୁ ବିଚାର କରି ସବୁକଥା ନୂଆଢଙ୍ଗରେ ଗଢ଼ିବାକୁ ହେବ । ତମେ ଭାବିବା ଉଚିତ ନୁହଁ ଯେ ଆମ ଗାଁଗୁଡ଼ିକର ବର୍ତ୍ତମାନ ସ୍ଥିତି ଯାହା , ସେଇ ସ୍ଥିତିରେ ତାକୁ ରଖିବାକୁ ଚାହେଁ । ମୋ ସ୍ୱପ୍ନର ଗ୍ରାମ୍ୟଜୀବନ ହେଉଛି ଯେ ଗ୍ରାମବାସୀମାନେ ବେଶ୍ ବୁଦ୍ଧିମାନ ହେବେ । ପ୍ରତ୍ୟେକ ମଣିଷକୁ ତା ଆଦର୍ଶ ନେଇ ରହିବାକୁ ହୋଇଥାଏ । ସେମାନେ ଇତର ପ୍ରାଣୀଙ୍କ ଭଳି ଅନ୍ଧକାରରେ ରହିବା ପରିବର୍ତ୍ତେ ପରିଷ୍କାର ପରିବେଶରେ ରହିବେ । ଦରକାର ପଡ଼ିଲେ ଉଭୟ ପୁରୁଷ ଓ ନାରୀ ସାରା ଦୁନିଆ ବିରୁଦ୍ଧରେ ବି ଠିଆ ହେବାକୁ ସମର୍ଥ ହୋଇପାରିବ । ସେ ଗାଁରେ ହଇଜା, ମ୍ୟାଲେରିଆ, ବସନ୍ତ ରୋଗ ହେବାର ସମ୍ଭାବନା ରହିବ ନାହିଁ । କେହି ଆଳସ୍ୟରେ କାଳାତିପାତ କରିବେ ନାହିଁ କିମ୍ବା ବିଳାସବ୍ୟସନରେ ମଧ ରହିପାରିବେ ନାହିଁ । ପ୍ରତ୍ୟେକ ବ୍ୟକ୍ତି ତାର ଶାରୀରିକ ଶ୍ରମ ଦେବାକୁ ପ୍ରସ୍ତୁତ ହେବ । ଏ ଚିଠିରେ ମୋ ପକ୍ଷରେ ସମସ୍ତ ବିଷୟରେ ଟିକିନିଖି ଚିତ୍ର ଦେବା ଆଦୌ ସମ୍ଭବପର ନୁହଁ । ରେଳ, ଡାକ ଓ ତାର ଅଫିସ ନିଶ୍ଚୟ ରହିବ । ଏ ମୂଳକଥାଟି ମୋ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ତାକୁ ହାସଲ କରିଯିବା ପରେ ଏହାକୁ ପୂର୍ଣ୍ଣାଙ୍ଗ କରିବାରେ କିଛି ଅସୁବିଧା ହେବନାହିଁ । ମୁଁ ଯଦି ମୌଳିକ କଥାଟିକୁ ବାଦ ଦେଇଦେବି, ତେବେ ସେଇଠି ସବୁ ଶେଷ ହୋଇଯିବ । ଗତ କାର୍ଯ୍ୟକାରୀ କମିଟିରେ ଏସବୁ ବିଷୟରେ ଦୁଇ ତିନି ଦିନ ଧରି ଆଲୋଚନା ହେବାର ସ୍ଥିର ହୋଇଥିଲା । କିନ୍ତୁ ତା ବ୍ୟତିରେକ ବି ଆମେ ପରସ୍ପରକୁ ବୁଝିନେବା ଦରକାର । ତାର କାରଣ ହେଲା ଯେ, ଆମ ଦୁହିଁଙ୍କର ସମ୍ପର୍କ କେବଳ ରାଜନୀତିକ ନୁହଁ । ଆମର ବନ୍ଧନ ଏତେ ଗଭୀର ଯେ ସେଥିପାଇଁ ରାଜନୀତିକ କ୍ଷେତ୍ରରେ ଆମେ ପରସ୍ପରକୁ ବୁଝିନେବା ଦରକାର । ଦ୍ୱିତୀୟରେ ଆମେ ଦୁହେଁ କେବକାର ଲୋକ ନୋହୁଁ । ଆମେ ଭାରତର ସ୍ୱାଧୀନତା ପାଇଁ କାମ କରୁଥାଉଁ ଓ ଦରକାର ପଡ଼ିଲେ ସେଥିପାଇଁ ହସି ହସି ମୃତ୍ୟୁକୁ ବରଣ କରିବା ପାଇଁ ମଧ ପ୍ରସ୍ତୁତ ଥାଉଁ । ଆମ ଦୁହିଁଙ୍କର ପ୍ରଶଂସାର ଅବଶ୍ୟକତା ନାହିଁ । ଆମେ ପ୍ରଶଂସିତ ହେଉ ବା ନିନ୍ଦିତ ହେଉ, ସେଥିରେ ଆମର କିଛି ଯାଏ ଆସେ ନାହିଁ । ସେବା କ୍ଷେତ୍ରରେ ପ୍ରଶଂସାର ସ୍ଥାନ ନାହିଁ । ମୁଁ ଭାରତବର୍ଷର ସେବା କରିବା ପାଇଁ ୧୨୫ବର୍ଷ ବଞ୍ଚିବାକୁ ଚାହେଁ ।''

ପଣ୍ଡିତ ନେହେରୁ ୧୯୪୫ ସାଲ ଅକ୍ଟୋବର ୯ ତାରିଖରେ ଗାନ୍ଧିଜୀଙ୍କ ଉଲ୍ଲିଖିତ ଚିଠିର ଯେଉଁ ଉତ୍ତର ଦେଲେ, ତାର କିୟଦଂଶ ହେଲା - ''ମୁଁ ବହୁଦିନ ତଳେ ହିନ୍ଦସ୍ୱରାଜ ପଢ଼ିଥିଲି । ମୋର ସେ ସମ୍ପର୍କରେ କିଛିଟା ଝାପ୍‌ସା ଧାରଣା ଥିଲା । କିନ୍ତୁ ମୁଁ ଯେତେବେଳେ, ତାକୁ କୋଡ଼ିଏ ବର୍ଷ ତଳେ ପଢ଼ିଥିଲି, ମୋତେ ତା ଅତ୍ୟନ୍ତ ଅବାସ୍ତବ ଲାଗିଥିଲା । କିନ୍ତୁ ତା'ପରେ ଆପଣଙ୍କ ଲେଖା ଓ ଭାଷଣରୁ ଜାଣିଲି ଯେ ଆପଣଙ୍କ ପୁରୁଣା ଚିନ୍ତାଧାରାରେ

ପରିବର୍ତ୍ତନ ହେବା ସହ ଆଧୁନିକ ଧାରାକୁ ମଧ୍ୟ ପସନ୍ଦ କରୁଛନ୍ତି । କିନ୍ତୁ ମୁଁ ଯେତେବେଳେ ଜାଣିଲି ଯେ ଆପଣ ପୁରୁଣା ଚିନ୍ତାରେ କାଏମ ରହିଛନ୍ତି, ସେତେବେଳେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କଂଗ୍ରେସ କେବେ ଏସବୁ ଚିନ୍ତାଧାରାକୁ ଗ୍ରହଣ କରିନାହିଁ । ତେଣୁ ଏହାକୁ ମାନିନେବା ପ୍ରଶ୍ନ ଉଠୁଛି କେଉଁଠି ? ଆପଣ ମଧ୍ୟ କେତେକ ଗୌଣ ପ୍ରଶ୍ନକୁ ଛାଡ଼ିଦେଲେ କଂଗ୍ରେସକୁ ଏଗୁଡ଼ିକ ମାନିନେବାକୁ କେବେ କହିନାହାନ୍ତି । ଜୀବନର ଏସବୁ ମୌଳିକ ପ୍ରଶ୍ନ ଓ ବିବଦମାନ ଦର୍ଶନ ସମ୍ପର୍କରେ କଂଗ୍ରେସ ବିଚାର କରିବା ସମୀଚୀନ ଓ ପ୍ରାସଙ୍ଗିକ ହେବ କି ନା ତା ଆପଣଙ୍କୁ ବିଚାର କରିବାକୁ ଛାଡ଼ି ଦେଉଛି । ମୋ ମତରେ କଂଗ୍ରେସ ସଙ୍ଗଠନରେ ଏଭଳି ମୌଳିକ ପ୍ରଶ୍ନ ଉପରେ ବିତର୍କ କରିବାରେ ସମୟ ନଷ୍ଟ କରିବା ଉଚିତ ହେବ ନାହିଁ । ତାହାହେଲେ ଲୋକଙ୍କ ମନରେ ଅଯଥା ଭ୍ରାନ୍ତି ସୃଷ୍ଟି ହେବ । ଫଳରେ ତାର କାମ ବାଧାପ୍ରାପ୍ତ ହେବ ।

ଆମ ଗାଁ ଗହଳରେ କିପରି ଯେ ସତ୍ୟ ଓ ଅହିଂସା ରହିଛି ବୋଲି ଆପଣ ଭାବୁଛନ୍ତି, ତା ମୋ ପକ୍ଷରେ ବୁଝିବା ମୁସ୍କିଲ ହୋଇଯାଉଛି । ଆମ ଗାଁଗୁଡ଼ିକ ସାଧାରଣଭାବରେ ବୌଦ୍ଧିକ ଓ ସାଂସ୍କୃତିକ ଦୃଷ୍ଟିରୁ ପଛୁଆ । ଆମ ଗାଁଗୁଡ଼ିକୁ ଏକ ପଛୁଆ ପରିବେଶରୁ ପ୍ରଗତି ଆଡ଼କୁ ଆଗେଇ ନେବା ଆଦୌ ସମ୍ଭବପର ନୁହେଁ । ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀର ଲୋକେ ଅଧିକ ପରିମାଣରେ ହିଂସ୍ର ଓ ଛୋଟମନା ।''

ଏ ଉଲ୍ଲିଖିତ ଚିଠି ଗୁଡ଼ିକରୁ ଦିବାଲୋକ ପରି ସ୍ପଷ୍ଟ ହୋଇଯାଉଛି ଯେ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ଭିତରେ ସ୍ୱାଧୀନତା ପ୍ରାପ୍ତିର ପ୍ରାୟ କୋଡ଼ିଏ ବର୍ଷ ପୂର୍ବରୁ ଦେଶର ଓ ଦୁନିଆର ମୌଳିକ ସମସ୍ୟା ସମ୍ପର୍କରେ ଯେଉଁ ଗୁରୁତର ମତ-ପାର୍ଥକ୍ୟ ଥିଲା, ତାଙ୍କର ଶାସନକାଳରେ ପ୍ରାୟ ଅଠର ବର୍ଷ ଭିତରେ ଉଭୟ ପ୍ରଶାସନିକ ଓ ଆର୍ଥିକ କ୍ଷେତ୍ରରେ ତାର ପ୍ରତିଫଳନ ହେବା ସ୍ୱାଭାବିକ । ଫଳରେ ପଣ୍ଡିତ ନେହେରୁଙ୍କ ଦ୍ୱାରା ପରିଚାଳିତ ଭାରତ ସରକାର ଓ କଂଗ୍ରେସଦ୍ୱାରା ପରିଚାଳିତ ରାଜ୍ୟ ସରକାରଙ୍କ ଉପରେ ଗାନ୍ଧୀନୀତିର କୌଣସି ଚାପ ରହିଲା ନାହିଁ । ତାଙ୍କ ମୃତ୍ୟୁପରେ ସେ ସ୍ଥିତିରେ କୌଣସି ପରିବର୍ତ୍ତନର ପ୍ରଶ୍ନ ମଧ୍ୟ ଉଠିଲା ନାହିଁ । ଆଜି ଦେଶ ବହୁତ ଗୁରୁତର ପରୀକ୍ଷାର ସମ୍ମୁଖୀନ । ଗାନ୍ଧିଜୀଙ୍କ ପ୍ରଦର୍ଶିତ ସମାନତା ଆଦର୍ଶରୁ ବିଚ୍ୟୁତ ହୋଇଥିବାରୁ ଆମେ ଦେଶର ଏ ଅଧୋଗତି ହୋଇଛି ବୋଲି ଯେଉଁମାନେ ବିଶ୍ୱାସ କରୁଛନ୍ତି, ସେମାନଙ୍କ ପାଇଁ ଗଭୀର ଆତ୍ମନିରୀକ୍ଷଣ କରିବା ସମୟ ଆସିଛି । ଦେଶରେ ଶାସକବର୍ଗଙ୍କ ପ୍ରତୀକ ରୂପେ କାର୍ଯ୍ୟ କରୁଥିବା ସରକାରର ଏକମାତ୍ର କାମ ହେଲା ଯେ ସମାନତା ବିରୋଧୀ ଶକ୍ତିକୁ ଦୃଢ଼ୀଭୂତ କରିବା । ଏକଥା ମଧ୍ୟ ସ୍ୱୀକାର୍ଯ୍ୟ ଯେ ଜନଶକ୍ତି ତୁଳନାରେ ରାଜଶକ୍ତି ବର୍ତ୍ତମାନ ଅଧିକ ଶକ୍ତିଶାଳୀ । କିନ୍ତୁ ଯେଉଁମାନେ ସମାଜରୁ ଅନ୍ୟାୟ ଓ ଶୋଷଣର ଅନ୍ତ କରିବା ପାଇଁ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଦର୍ଶିତ ପଥର ପଥିକ ହେବାକୁ ବଦ୍ଧପରିକର, ସେମାନଙ୍କୁ ସାହସର ସହିତ ଆଗକୁ ଆଗେଇବାକୁ ହେବ । ତାହା ହେଲେ ରାଜଶକ୍ତି ଉପରେ ଜନଶକ୍ତିର ବିଜୟ ସୁନିଶ୍ଚିତ ।

ଦୁନିଆର ନିଷ୍ପେଷିତ ଜନତା ଗାନ୍ଧିଜୀଙ୍କ ବୈପ୍ଳବିକ ଚିନ୍ତାଧାରା ପ୍ରତି ଆକୃଷ୍ଟ ହେବା କଥା କାହାକୁ ଅବିଦିତ ନାହିଁ । ନୋବେଲ ପୁରସ୍କାର ବିଜେତା ସ୍ୱର୍ଗତ ମାର୍ଟିନ ଲୁଥର

କିଙ୍ଗଙ୍କୁ ଆମେରିକାରେ କଳାଗୋରା ଭେଦଭାବ ଦୂର କରିବା ପାଇଁ ଗାନ୍ଧିଜୀଙ୍କ ସତ୍ୟାଗ୍ରହ ରାସ୍ତାକୁ ହିଁ ଅଖ୍ତିଆର କରିବାକୁ ପଡ଼ିଥିଲା । ସେଥିରେ ତାଙ୍କୁ ସଫଳତା ମଧ୍ୟ ମିଳିଥିଲା । ଗାନ୍ଧିଜୀ ସଦାବେଳେ କହିଥାନ୍ତି ଯେ ସତ୍ୟାଗ୍ରହରେ କସ୍ମିନକାଳେ ପରାଜୟର ସ୍ଥାନ ନାହିଁ । ସେଥିପାଇଁ ଦେଶକାଳ ପାତ୍ର ଦୃଷ୍ଟିରୁ ତାଙ୍କ ଆଦର୍ଶକୁ ରାଜନୀତିକ. ଆର୍ଥିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ବୁଦ୍ଧିମତା ସହ ଲାଗୁ କରିବା ଦ୍ୱାରାହିଁ ଆମେ ଏକ ସମତାବାଦୀ ଆଧୁନିକ ରାଷ୍ଟ୍ରରୂପେ ଦୁନିଆରେ ମୁଣ୍ଡଟେକି ଚାଲିପାରିବା, ଅନ୍ୟଥା ନୁହେଁ । ଯୀଶୁଖ୍ରୀଷ୍ଟ, ସକ୍ରେଟିସ୍ ଓ ଗୌତମ ବୁଦ୍ଧଙ୍କ ଭଳି ମହାମନୀଷୀମାନେ ମଣିଷ ସମାଜ ପାଇଁ ଅନ୍ଧକାର ରାତ୍ରିରେ ଆଲୋକବର୍ତ୍ତିକା ରୂପେ ନୂତନ ଆଲୋକ ଦେଇ ଆସିଛନ୍ତି । କିନ୍ତୁ ଗାନ୍ଧିଜୀ ସାଧାରଣ ମଣିଷକୁ ଅନ୍ୟାୟ ଓ ଶୋଷଣର ପ୍ରତିକାର କରିବା ପାଇଁ ଅସ୍ତ୍ରଶସ୍ତ୍ର ଦ୍ୱାରା ସୁସଜ୍ଜିତ ଆଧୁନିକ ରାଷ୍ଟ୍ର ସମେତ ସମାଜର ଧନୀ ଓ ପ୍ରଭାବଶାଳୀ ଗୋଷ୍ଠୀ ବିରୁଦ୍ଧରେ ଅହିଂସାତ୍ମକ ଢଙ୍ଗରେ ଧାରାବାହିକ ରୂପେ ସଂଗ୍ରାମ କରିବାକୁ ପ୍ରେରଣା ଦେଇଥିବାରୁ ସେ ଅଧିକ ପ୍ରାସଙ୍ଗିକ । ସେ ବହୁ ଶତାବ୍ଦୀ ଧରି ଯେ କେବଳ ଦୁନିଆର ନିଷ୍ପେଷିତ ଓ ପଦଦଳିତ ସମାଜ ପାଇଁ ପ୍ରେରଣାର ଉତ୍ସ ହୋଇରହିବେ, ତା ନୁହେଁ ଏ କଥା ଆଶା କରିବା ସ୍ୱାଭାବିକ ଯେ ବହୁ ବିଭବଶାଳୀ ରାଷ୍ଟ୍ର ଓ ବ୍ୟକ୍ତି ପ୍ରଚଳିତ ସଭ୍ୟତାର କୁପରିଣାମରେ ନିରାଶ ଓ ବୀତସ୍ପୃହ ହୋଇ ଗାନ୍ଧୀ ରାସ୍ତା ଧରିବା ପାଇଁ ଅଧିକ ପରିଣାମରେ ଆଗ୍ରହ ପ୍ରକାଶ କରିବା ପାଇଁ ବାଧ ହେବେ ।

ଯେଉଁମାନେ ପ୍ରଚଳିତ ସ୍ଥିତାବସ୍ଥାର ସମର୍ଥକ ସେମାନେ ବିଭିନ୍ନ ବିଚାର ମଧ୍ୟରେ ବାଦବିବାଦକୁ ସ୍ୱାଗତ କରିବା ପରିବର୍ତ୍ତେ ତା ମଧ୍ୟରେ ସାମଞ୍ଜସ୍ୟ ବା ସର୍ବାନୁମତି କାଏମ କରିବାରେ ବିଶ୍ୱାସ କରିବା ସ୍ୱାଭାବିକ । କିନ୍ତୁ ଆଜିକାଲି ଦେଖାଯାଉଛି ଯେ ସାମାଜିକ ବିପ୍ଳବରେ ବିଶ୍ୱାସ କରୁଥିବା ବହୁ ଉତ୍ସର୍ଗୀକୃତ ଜନସେବୀ ଓ ବୁଦ୍ଧିଜୀବୀ ମଧ୍ୟ ସେମାନଙ୍କ ପଦାଙ୍କ ଅନୁସରଣ କରି ମସ୍ତ ବଡ଼ ଭୁଲ କରିବସନ୍ତି । ମୋର ମନେହୁଏ ଯେ ଗାନ୍ଧିଜୀ ଓ ନେହେରୁଙ୍କ ଭିତରେ ଯେଉଁସବୁ ପତ୍ର ବିନିମୟ ହୋଇଛି ତାକୁ ଯେଉଁମାନେ ତନ୍ନେଇ କରି ଅଧ୍ୟୟନ କରିଥିବେ, ସେମାନେ ନିଶ୍ଚୟ ଅନୁଭବ କରିଥିବେ ଯେ, ପଣ୍ଡିତ ନେହେରୁଙ୍କ ସହ ଗାନ୍ଧିଜୀଙ୍କ ରାଜନୀତିକ ସମ୍ପର୍କ ପ୍ରତିଷ୍ଠିତ ହେବା ଦିନଠାରୁ ତାଙ୍କ ମୃତ୍ୟୁପର୍ଯ୍ୟନ୍ତ କେତେକ ଅତି ମୌଳିକ ପ୍ରଶ୍ନ ଉପରେ ବାଦାନୁବାଦ କରିବାକୁ ପଣ୍ଡିତ ନେହେରୁଙ୍କୁ ସେ ପ୍ରବର୍ତ୍ତାଉଥିଲେ ଓ ସେସବୁକୁ ବିଧିବଦ୍ଧ ରୂପେ ତାଙ୍କ ଦ୍ୱାରା ସମ୍ପାଦିତ 'ୟଙ୍ଗ ଇଣ୍ଡିଆ' ଓ 'ହରିଜନ'ରେ ମଧ୍ୟ ଜନସାଧାରଣଙ୍କ ଗୋଚରାର୍ଥେ ପ୍ରକାଶିତ କରୁଥିଲେ । ସେଥିପାଇଁ ବିବଦମାନ ବିଚାର ଓ ଦୃଷ୍ଟିଭଙ୍ଗୀ ମଧ୍ୟରେ ସାମଞ୍ଜସ୍ୟ ବା ସହମତ (କନସିଏୟସ୍) କାଏମ କରିବା ପରିବର୍ତ୍ତେ ବାଦବିବାଦକୁ ପ୍ରୋତ୍ସାହିତ କରିବା ଦ୍ୱାରାହିଁ ଆମେ ଏକ ନ୍ୟାୟପୂର୍ଣ୍ଣ ଉପସଂହାରରେ ପହଞ୍ଚିପାରିବା । ଏହିପରି ଆଲୋଚନା ଓ ପର୍ଯ୍ୟାଲୋଚନା ମାଧ୍ୟମରେ ଦେଶର ଜନସାଧାରଣ ଓ ବିଶେଷ କରି ଯୁବଶକ୍ତି ମନରେ କେତେକ ଜରୁରୀ ଓ ମୌଳିକ ବିଚାର ଉପରେ ଏକ ବିଚାର ମନ୍ଥନର ସୂତ୍ରପାତ କରିବା ହିଁ ଆମର ପ୍ରାଥମିକ କର୍ତ୍ତବ୍ୟ ହେବ ।



# ଜନତାଙ୍କୁ କାହିଁକି କ୍ରୋଧ ଆସୁନି ?

ସ୍ୱାଧୀନତାର ପର ମୁହୂର୍ତ୍ତରେ ପ୍ରଥମ ଥର ପାଇଁ ପ୍ରତିରକ୍ଷା ବିଭାଗରେ ଘଟିଥିବା ସ୍କାମରେ ରକ୍ଷାମନ୍ତ୍ରୀ ବି.କେ. କୃଷ୍ଣମେନନଙ୍କ ନାମ ପ୍ରକାଶିତ ହୋଇଥିଲା । ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହୁରଙ୍କ ଖୁବ୍ ପାଖ ଲୋକ ଥିଲେ ମନ୍ତ୍ରୀ ମେନନ୍। ୧୯୬୨ରେ ଚୀନ ଆକ୍ରମଣ ପୂର୍ବରୁ 'ନେଫା'ରେ ରାସ୍ତା ନିର୍ମାଣ ପାଇଁ ରକ୍ଷା ବିଭାଗ ପକ୍ଷରୁ ଅର୍ଥ ବରାଦ ହୋଇଥିଲା । ଏଥିରେ ଦୁର୍ନୀତି ହୋଇଥିଲା ଯାହାଦ୍ୱାରା ଅର୍ଥ ଖର୍ଚ୍ଚ ହୋଇଗଲା କିନ୍ତୁ ରାସ୍ତା ନିର୍ମାଣ ହୋଇନଥିଲା । ତତ୍‌କାଳୀନ କଂଗ୍ରେସ ସାଂସଦ ମହାବୀର ତ୍ୟାଗୀ ଉକ୍ତ ଭ୍ରଷ୍ଟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଫଳରେ ବାଧହୋଇ ପ୍ରଧାନମନ୍ତ୍ରୀ ନେହୁରୁ ରକ୍ଷାମନ୍ତ୍ରୀ କୃଷ୍ଣମେନନ୍‌ଙ୍କୁ ମନ୍ତ୍ରୀମଣ୍ଡଳରୁ ହଟାଇଥିଲେ । ସେତେବେଳେ ସୋସାଲିଷ୍ଟ ନେତା ଡକ୍ଟର ରାମ ମନୋହର ଲୋହିଆ କେନ୍ଦ୍ର ସରକାରକୁ ''ଜାତୀୟ ଲଜ୍ଜା'' ସରକାର ବୋଲି କହିଥିଲେ । ସେହି ସମୟରେ 'କଂଗ୍ରେସ ହଟାଅ ଦେଶ ବଞ୍ଚାଅ' ଡାକରା ଦେଇ ଡକ୍ଟର ଲୋହିଆ ଆଚାର୍ଯ୍ୟ କୃପାଳିନୀ ପରି ପ୍ରମୁଖ ନେତାମାନଙ୍କ ନେତୃତ୍ୱରେ ଆନ୍ଦୋଳନ ହୋଇଥିଲା ।

ବର୍ତ୍ତମାନ ପରିସ୍ଥିତିରେ ତେହଲ୍‌କା ଡଟ କମ୍‌ରେ ଏହି ରାଜନୈତିକ ଚାଞ୍ଚଲ୍ୟ ଏପରି କିଛି ଆଶ୍ଚର୍ଯ୍ୟ କଲାପରି କାମ ନୁହଁ । ଆଜି କେବଳ ଏହା ଏତିକି ପ୍ରମାଣିତ କରୁଛି ଯେ ରାଜନୈତିକ ବ୍ୟବସ୍ଥା ଆଭ୍ୟନ୍ତରୀଣ ସୁରକ୍ଷା ଏବଂ ଲୋକତନ୍ତ୍ର ବିପଦର ଘେରରେ ରହିଛନ୍ତି । ଏହା ସର୍ବାନ୍ତକରଣ ବ୍ୟବସ୍ଥା ଏବଂ ରାଜନୈତିକ ଅଧପତନର ଜ୍ୱଳନ୍ତ ଉଦାହରଣ । ଏହି ସରକାର ପ୍ରତି ଭ୍ରଷ୍ଟାଚାର ଅଭିଯୋଗ ଆସିବା ପରେ ସମସ୍ତେ ଅବାକ କିନ୍ତୁ କୌଣସି ଆଶ୍ଚର୍ଯ୍ୟ ହେବାର ନାହିଁ । ମହାନ୍ ରୋମ ସମ୍ରାଟ ଜୁଲିଏସ୍ ସିଜର କହୁଥିଲେ ଯେ ସମ୍ରାଟଙ୍କ ପତ୍ନୀ ମଧ ସନ୍ଦେହର ଉର୍ଦ୍ଧ୍ୱରେ ରହିବା ଉଚିତ । ଏହି ସରକାରରେ ଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ ଆରମ୍ଭରୁ ହିଁ ଦୁର୍ନୀତି ଅଭିଯୋଗ ରହିଛି । ୧୯୯୪ର ଭୋରା କମିଟିର ବିବରଣୀ ଅନୁଯାୟୀ ଏହି ଦେଶରେ ମାଫିଆ ଓ ଅପରାଧୀମାନଙ୍କର ମିଳିତ ଭାବରେ ଏକ ସମାନ୍ତରାଳ ସରକାର ଚାଲିଛି । ବିଶେଷକରି ଉତ୍ତର ପ୍ରଦେଶ, ବିହାର ଓ ହରିଆନା ରାଜ୍ୟରେ ଏହା ବେଶ ଚାଲିଥିବା କଥା ଉଲ୍ଲେଖ କରାଯାଇଛି । ବିବରଣୀରେ ବିଚାର ବିଭାଗରେ ମଧ ଭ୍ରଷ୍ଟାଚାର ଅଛୁଆଁ ନୁହଁ ବୋଲି ଉଲ୍ଲେଖ କରାଯାଇଛି । କିଛି ବର୍ଷ ପୂର୍ବେ ନିର୍ବାଚନ କମିଶନରଙ୍କ ସର୍ବେକ୍ଷଣ କହିଥିଲା ଯେ ଲୋକସଭାରେ ଅତିକମରେ ୪୦ ଜଣ ଦାଗି ତଥା ଅପରାଧୀ ବିଭିନ୍ନ ରାଜନୈତିକ ଦଳର ସାଂସଦଭାବେ ନିର୍ବାଚିତ ହୋଇ ଆସିଥିଲେ । ଆଜି ଏମାନଙ୍କର ସଂଖ୍ୟା ନିଶ୍ଚିତଭାବେ ବୃଦ୍ଧି ପାଇଥିବ ।

ଆଜି ଯେଉଁ ତେହଲକା' ଅର୍ଥାତ ଚାଞ୍ଚଲ୍ୟ ସୃଷ୍ଟି ହେଉଛି ତାହା ନୂଆ ନୁହଁ । ରାଜନୈତିକ ବ୍ୟକ୍ତିମାନେ ପ୍ରଥମରୁ ଅନୈତିକ ଭାବେ ଧନ ନେଉଥିଲେ । ହାୱାଲା ହେଉକି ରକ୍ଷା ସାମଗ୍ରୀ ହେଉ ସେଥିରୁ ଲାଞ୍ଚ ନେଉଥିଲେ ଓ ଧରାପଡ଼ିଲା ପରେ ଦଳୀୟ ପାଣ୍ଠି ପାଇଁ ବୋଲି କହୁଥିଲେ । ଅର୍ଥଶାସ୍ତ୍ରମାନଙ୍କ ଆକଳନ ଅନୁଯାୟୀ ଆମ ଦେଶରେ ସମଗ୍ର ଜାତୀୟ

ଆୟର ୪୦ ଶତାଂଶ କଳାଧନ ଦେଶରେ ରହିଛି ଯାହାର କିଛି ଭାଗ ରାଜନୈତିକ ଦଳମାନଙ୍କ ପାଣ୍ଠିକୁ ଯାଉଛି । ଏପରି ଦୁର୍ନୀତିକୁ ବନ୍ଦ କରିବା ପାଇଁ ଦୀନେଶ ଗୋସ୍ୱାମୀ କମିଟି ରାଜନୈତିକ ଦଳମାନଙ୍କର ନିର୍ବାଚନ ଖର୍ଚ୍ଚ ସରକାର ବହନ କରି ଯେକୌଣସି ଘରୋଇ ନିର୍ବାଚନ ଖର୍ଚ୍ଚକୁ ବେଆଇନ କରିବାକୁ ସୁପାରିଶ କରିଥିଲେ ସୁଦ୍ଧା ଏହାକୁ କାର୍ଯ୍ୟକାରୀ କରାଗଲା ନାହିଁ । ଏପରି ଅନେକ ସୁପାରିଶକୁ ଅତୀତରେ ପଦାଘାତ କରାଯାଇଛି । ଫଳରେ ଭ୍ରଷ୍ଟାଚାରର ମାତ୍ରା ବଢ଼ିବାରେ ଲାଗିଛି । ଅଧିକାଂଶ ରାଜନୈତିକ ଦଳମାନେ ଜାଣିଶୁଣି ଏହାକୁ କାର୍ଯ୍ୟକାରୀ ନକରିବାକୁ ଚାହାଁନ୍ତି । ଫଳରେ ସେନା ମଧ୍ୟ ଭ୍ରଷ୍ଟାଚାରର ଫାଶକୁ ଚାଲିଆସିଲା । ଆଜି ଏହା ସ୍ପଷ୍ଟ ହୋଇଗଲା ଯେ - ଯିଏ କାଶ୍ମୀରର ଆତଙ୍କବାଦୀଙ୍କୁ ପଇସା ଦେଉଛି ସିଏ ହାୱାଲା ଜରିଆରେ ରାଜନୈତିକ ନେତାମାନଙ୍କୁ ଚାନ୍ଦା ଦେଉଛି । କିନ୍ତୁ ସବୁ ହାୱାଲାକାଣ୍ଡର ଅଭିଯୁକ୍ତ ଆସାମୀମାନେ ମୁକ୍ତ ହୋଇଯାଉଛନ୍ତି । ସେମାନଙ୍କର କେହି କିଛି କରିପାରୁନାହିଁ । ଏହା ଲୋକତନ୍ତ୍ରର ଏକ ଦୁର୍ବଳ ମୁହୂର୍ତ୍ତ ଅଟେ । ଯେଉଁଠି ତେହଲ୍‌କା ପ୍ରକାରଣରେ ସଚ୍ଚୋଟ ତାର ପ୍ରଶ୍ନ ଉଠୁଛି ତାହାର ଉତ୍ତରରେ କେନ୍ଦ୍ର ସରକାରକୁ ନିର୍ଦ୍ଦେଶନା ଦେଉଥିବା ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ କହିଲା ଯେ ପରୀକ୍ଷାରେ ସେମାନେ (ବଂଗାରୁ ଲକ୍ଷ୍ମଣ) ଫେଲ୍ ହୋଇଗଲେ ବୋଲି ଆମର ଦୋଷ କଣ ? ପ୍ରକୃତରେ ସଂଘର ଏପରି ମନ୍ତବ୍ୟର ଅର୍ଥ ସରକାରକୁ ବଞ୍ଚାଇବା ପାଇଁ ଉଦ୍ଦିଷ୍ଟ । ଯାହା ହେଉନା କାହିଁକି ଦେଶର ଭବିଷ୍ୟତ ଗଣତନ୍ତ୍ରର ସୁରକ୍ଷା ଦୃଷ୍ଟିରୁ ବାଜପେୟୀ ସରକାର ଇସ୍ତଫା ଦେଇଦେବା ବାଞ୍ଛନୀୟ । ବାଜପେୟୀ ସରକାର କ୍ଷମତାରେ ଥିବାରୁ ଭ୍ରଷ୍ଟାଚାର ପାଇଁ ଦାୟୀ । ବାସ୍ତବରେ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯେଉଁ ଦୁର୍ନୀତି ହୁଏ ସେଥିରୁ ମୁକ୍ତିପାଇବା ପାଇଁ କୌଣସି ବ୍ୟବସ୍ଥା ନାହିଁ । ଲୋକପାଳ ବିଲ୍ ବିଗତ ୨୨ ବର୍ଷ ଧରି ପଡ଼ିରହିଛି । ଆମର ଭାଷଣ ବୀର ପ୍ରଧାନମନ୍ତ୍ରୀ ଶ୍ରୀ ବାଜପେୟୀ ବାରଂବାର କହୁଥିଲେ ମଧ୍ୟ ସଂସଦରେ ଏହି ଲୋକପାଳ ବିଧାନକୁ ଉପସ୍ଥାପିତ କରୁନାହାନ୍ତି । ତାଙ୍କର ସେ ଓ ତାଙ୍କରି ଦଳ ମଧ୍ୟ ଏଥିପ୍ରତି କୌଣସି ଉଦ୍ୟମ କରୁନାହାନ୍ତି । ଲୋକତନ୍ତ୍ରରେ ଦାୟିତ୍ୱଶୀଳତା ବାଜପେୟୀ ସରକାର ପାଖରେ ନାହିଁ । ପ୍ରତିରକ୍ଷା ଭ୍ରଷ୍ଟାଚାର ତଦନ୍ତ ପାଇଁ କରାଯାଇଥିବା ବିଚାର ବିଭାଗୀୟ ତଦନ୍ତ ମୁଖ୍ୟ ବିଷୟକୁ ଏଡ଼ାଇଦେବା ପାଇଁ କରାଯାଇଛି । ନୈତିକତା ଦୃଷ୍ଟିରୁ ସରକାର ଇସ୍ତଫା ଦେଇଦେବା ଉଚିତ ।

ମୁଁ ଅନୁଭବ କରୁଛି ଯେ ଏହି ଘଟଣା ଅନ୍ୟଘଟଣା ଗୁଡ଼ିକ ପରି ଲୁଚିଯିବ କିଛି ସମୟ ପରେ । କିନ୍ତୁ ଚିନ୍ତାର ବିଷୟ ହେଉଛି ଲୋକଙ୍କ ମନରେ କ୍ରୋଧ କାହିଁକି ଆସୁନାହିଁ । ଦୁଇବର୍ଷ ପୂର୍ବେ କେନ୍ଦ୍ର ରାଜସ୍ୱ ବିଭାଗ ସଚିବ ଭରେଲାଲ ହିସାବ ଦେଇ କହିଥିଲେ ଯେ ବିଦେଶୀ ସୁଇସ ବ୍ୟାଙ୍କରେ ଆମ ଦେଶର ୧୧୦ କୋଟି ଡ଼ଲାର ଅର୍ଥାତ .... ଟଙ୍କାର କଳା ଟଙ୍କା ଲୁକାୟିତ ରୂପେ ଗଚ୍ଛିତ ଅଛି । ଏହାକୁ ଆଣିବା ପାଇଁ କାହାର ଉଦ୍ୟମ ନାହିଁ । ପ୍ରକୃତରେ ଦେଶରେ ଦୁର୍ନୀତିକୁ ନେଇ ଅସଲ ଜନ ଆନ୍ଦୋଳନ ନଥିବାରୁ ରାଜନୈତିକ ଲୋକେ ଭ୍ରଷ୍ଟହୋଇ ଯାଉଛନ୍ତି । ଯେଉଁ ପର୍ଯ୍ୟନ୍ତ ସଶକ୍ତ ଲୋକଶକ୍ତି ଭ୍ରଷ୍ଟ ବ୍ୟବସ୍ଥା ଉପରେ କଡ଼ା ପ୍ରହାର କରିନାହିଁ ସେ ପର୍ଯ୍ୟନ୍ତ ଏପରି ଅନେକ ଘୋଟଲା ବା ସ୍କାମ ଘଟି ଚାଲିଥିବ ।

*(ସୌଜନ୍ୟ - ହିନ୍ଦି ଦୈନିକ ରାଷ୍ଟ୍ରୀୟ ସାହାରା)*



# ରବିରାୟଙ୍କ ନିଦ୍ରା ଓ ସ୍ୱପ୍ନ

*ଡକ୍ଟର ସୂର୍ଯ୍ୟକାନ୍ତ ଦାସ*

'ପର୍ଯ୍ୟବେକ୍ଷକ'ରେ ଅଗଷ୍ଟ ମାସ ୨୫ ତାରିଖରେ ଶ୍ରୀଯୁକ୍ତ ସଚ୍ଚି ପଣ୍ଡା ''ମାଟିର ରବି ରବିରାୟ'' ଶୀର୍ଷକ ବେଶ୍ ଉପାଦେୟ ପ୍ରବନ୍ଧ ପ୍ରକାଶ କରାଇଛନ୍ତି । ଲୋକସଭାର ପୂର୍ବତନ ବାଚସ୍ପତି ରୂପେ ଶ୍ରୀଯୁକ୍ତ ରବି ରାୟ ଆମ ଦେଶରେ ଜଣେ ବେଶ୍ ସୁସମ୍ମାନିତ ପାର୍ଲାମେଣ୍ଟାରୀଆନ୍ ଅଟନ୍ତି । ତେଣୁ ତାଙ୍କ ବିଷୟରେ ଅଧିକରୁ ଅଧିକ ଜ୍ଞାନ ଆହରଣ କରିବାକୁ ମୋ' ପରି ଜଣେ ଖବରକାଗଜ ପାଠକ ବିଶେଷ ଉଦ୍‌ଗ୍ରୀବ ହୁଏ ।

ସାକ୍ଷାତକାର ବିବରଣୀରୁ ଶ୍ରୀଯୁକ୍ତ ରବି ରାୟଙ୍କ ଜୀବନ-ଦର୍ଶନ ସମ୍ବନ୍ଧରେ ମୋର ଢେର ଜ୍ଞାନଲାଭ ହେଲା । ସେ କହିଛନ୍ତି - ''ମୁଁ ରାଜନୀତିରେ ପରିବର୍ତ୍ତନ ଚାହେଁ । ସମତାଭିତ୍ତିକ ସମାଜବାଦୀ ରାଷ୍ଟ୍ର ମୋର ସ୍ୱପ୍ନ । ଯେଉଁଠି ଧନୀ-ଗରିବ, ଛୁଆଁ-ଅଛୁଆଁ ପ୍ରାଚୀର ନଥିବ, ସେଇଭଳି ସମାଜ ପ୍ରତିଷ୍ଠା ପାଇଁ ମୁଁ ଜନ ଆନ୍ଦୋଳନ କରୁଛି ।''

ଏହା ପଢ଼ି ମୁଁ ଖୁବ୍ ଆନନ୍ଦିତ ହେଲି । ଆମ ଭାରତବର୍ଷରେ ରାଜନୀତି ପ୍ରକୃତରେ ଏହିଭଳି ହେଉ । ଆଜିକାଲି ଧନୀ-ଦରିଦ୍ର ମଧ୍ୟରେ ପ୍ରଭେଦ ଯେତେ ତୀବ୍ର ହୋଇପଡୁଛି, ମୋ ନିଜ ଅନୁଭୂତିରୁ ମୁଁ ଜାଣୁଛି, ରାଜାରାଜୁଡ଼ା ଶାସନକାଳରେ ଏପରି ନଥିଲା । ବ୍ରିଟିଶ ଶାସନ ଯୁଗରେ, କଳାହାଣ୍ଡି ପରି ଗଡ଼ଜାତରେ ଛୁଆଅଛୁଆଁ ପ୍ରାଚୀର ଦୁର୍ଲଙ୍ଘ୍ୟ ନଥିଲା ।

ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ୧୯୪୭ ସାଲରେ ଭବାନୀପାଟଣା ସହର ହରିଜନ ସାହିରେ ସେଠା ଅଧିବାସୀଙ୍କ ସହିତ ପଙ୍‌କ୍ତି ଭୋଜନ କରିଥିଲେ । ମାଟି ଉପରେ ବସିପଡ଼ି, ପଙ୍‌ଗତରେ ଯୋଗଦେଇ, ଶହ ଶହ ପୁରୁଷ, ସ୍ତ୍ରୀ, ବାଳକ-ବାଳିକା, ହାଡ଼ି, ଡମମାନଙ୍କ ସହିତ ଖଲିପତ୍ର ଉପରୁ ସାଧାରଣ ଲୋକଙ୍କ ପରି ଖାଦ୍ୟ ଭାତ, ଡାଲି, ତରକାରୀ, ଶାଗ, ଆମ୍ବଖଟା ଖାଇଥିଲେ । ରାନ୍ଧିଥିଲେ ହରିଜନ ସ୍ତ୍ରୀ ଲୋକେ । ପଙ୍‌କ୍ତି ଭୋଜନ କରି ସୁରେନ୍ଦ୍ର ଦ୍ୱିବେଦୀ ସନ୍ତୋଷ ପ୍ରକାଶ କରିଥିଲେ । ତାହା ହୋଇଥିଲା ଐତିହାସିକ ଘଟଣା ।

ସେ ପ୍ରକାର ସାମାଜିକତା ବା ସାମ୍ୟବାଦର ଦୃଷ୍ଟାନ୍ତ ଆମ ଓଡ଼ିଶାରେ ମୁଁ ଦେଖିପାରୁ ନାହିଁ । ମୋର ବିଶ୍ୱାସ ଶ୍ରୀଯୁକ୍ତ ରବି ରାୟଙ୍କ ''ଲୋକଶକ୍ତି ଅଭିଯାନ'' ସମାଜବାଦକୁ ସୁଦୃଢ଼ କରିବାକୁ ଉତ୍କୃଷ୍ଟ ମାର୍ଗ ଅଟେ ।

'ପର୍ଯ୍ୟବେକ୍ଷକ'ରୁ ଶ୍ରୀ ରବି ରାୟଙ୍କ ଜୀବନ-ଦର୍ଶନର ସମ୍ୟକ୍ ଆଭାସ ମିଳିଲା । ସେ କହିଛନ୍ତି - 'ସମତାଭିତ୍ତିକ ସମାଜବାଦୀ ରାଷ୍ଟ୍ର ମୋର ସ୍ୱପ୍ନ ।''

ତାଙ୍କପରି ଅସାଧାରଣ ଦେଶସେବା ଏବଂ ଯଶସ୍ୱୀ ପାର୍ଲାମେଣ୍ଟାରୀଆନ୍‌ଙ୍କର ଯାହା ସ୍ୱପ୍ନ, ତାହାହିଁ ଭାରତ ପକ୍ଷେ ପ୍ରକୃତ ମଙ୍ଗଳଦାୟକ ହେବ । ସ୍ୱପ୍ନକୁ ବାସ୍ତବ ରୂପରେଖ ଦେବା ଲାଗି ସେ ସମସ୍ତ ଜୀବନ ଉତ୍ସର୍ଗ କରିଛନ୍ତି, ଏବେ ବି ପୂର୍ଣ୍ଣପ୍ରାଣରେ 'ଲୋକଶକ୍ତି

ଅଭିଯାନ'ରେ ବ୍ୟାପୃତ ଅଛନ୍ତି । ଜନକଲ୍ୟାଣ ବ୍ରତ ଗ୍ରହଣ କରିଛନ୍ତି । ଉତ୍ସର୍ଗୀକୃତ ଜୀବନଯାପନ କରନ୍ତି ।

ଶ୍ରୀ ରବି ରାୟଙ୍କ ଖୁବ୍ ହୃଦୟସ୍ପର୍ଶୀ ଓ ପ୍ରେରଣାଦାୟକ ନୂତନ ଆହ୍ୱାନ ହେଉଛି, ସେ କହିଛନ୍ତି - ''ମୋର ସ୍ପଷ୍ଟ ମତ ଯେ, ଗାନ୍ଧୀ, ଲୋହିଆ, ଜୟପ୍ରକାଶଙ୍କୁ ଅନୁସରଣ କରିବାର ବିକଳ୍ପ ଆଉ କିଛି ନାହିଁ ।'' ସେ ପ୍ରକାଶ କରିଛନ୍ତି - ''ମୁଁ ଏବେବି ଏହି ତିନିଜଣଙ୍କ ଉପରେ କୌଣସି ଗୋଟିଏ ବହିରୁ କିଛି ନପଢ଼ିଲେ ନିଦ ହୁଏନାହିଁ ।''

ଆଜିର ଭାରତୀୟ ରାଜନୈତିକ ବାତାବରଣରେ ଏହି ଚିନ୍ତାଧାରା ବ୍ୟାପକ ହେବା ଉଚିତ । ନିଜ ଦୈନନ୍ଦିନ ଜୀବନରେ ଶ୍ରୀଯୁକ୍ତ ରବି ରାୟ ଏହାକୁ ମୂଳଭିତ୍ତି କରିଥିବା ଯୋଗୁଁ ସେ ପ୍ରଶଂସନୀୟ ଅଟନ୍ତି । ଆଜି ଆମ ଓଡ଼ିଶାରେ ରାଜନୀତିରୁ ପଇସା ଉପାର୍ଜନ କରୁଥିବା ଦୁର୍ନୀତିପରାୟଣ କେତେଜଣ ମନ୍ତ୍ରୀ ଓ ବିଧାୟକ କେବେ ଗାନ୍ଧୀ ଚିନ୍ତନରେ ଉଦ୍‌ବୁଦ୍ଧ ହୁଅନ୍ତି ? କେହି ନୁହେଁ !

ଶ୍ରୀ ରବି ରାୟଙ୍କ ନିଜ ରାଜନୈତିକ ଜୀବନରେ କାଳିମା ନାହିଁ, ଆବିଳତା ନାହିଁ, ପରନ୍ତୁ ସ୍ୱଚ୍ଛତା ପରିପୂର୍ଣ୍ଣ ଅଟେ । ସ୍ୱଚ୍ଛ ରାଜନୀତିର ସେ ହେଉଛନ୍ତି ଚାକ୍ଷୁଷ ପ୍ରମାଣ । ଯିଏ ନିତିଦିନ ଗାନ୍ଧୀ, ଲୋହିଆ, ଜୟପ୍ରକାଶଙ୍କୁ ଅଧ୍ୟୟନ କରନ୍ତି, ସେ ତ' ସ୍ୱଚ୍ଛତାର ପ୍ରତୀକ ହେବେହିଁ ହେବେ !

ଲୋକସଭା ସଦସ୍ୟ ବା ଏମ୍.ପି. ରୂପେ ଶ୍ରୀ ରାୟ ଅନେକ ଲୋକଙ୍କର ବ୍ୟକ୍ତିଗତ ଉପକାର କରିଛନ୍ତି । ମୁଁ ନିଜେ ତାଙ୍କ ଅନୁଗ୍ରହ ଭିକ୍ଷା କରିଥିଲି ଏବଂ ତାଙ୍କ ଅନୁକମ୍ପା ଦ୍ୱାରା ଉପକୃତ ହୋଇଛି ।

ଶ୍ରୀଯୁକ୍ତ ରବି ରାୟ ବିଶାଳ ହୃଦୟବାନ ବ୍ୟକ୍ତି । ଅତ୍ୟନ୍ତ ସ୍ନେହୀ ଓ ହିତାକାଙ୍କ୍ଷୀ ମଣିଷ ଅଟନ୍ତି । ତାଙ୍କର ଖଣ୍ଡିଏ ଛୋଟ ଚିଠିରୁ ତାଙ୍କର ଉଦାର ବ୍ୟକ୍ତିତ୍ୱର ପରିଚୟ ମିଳିଯିବ । ଲୋକସଭା ସ୍ପିକର ଥାଇ ୨୦ ନମ୍ବର ଆକବର ରୋଡ୍, ନୂଆଦିଲ୍ଲୀରୁ ତା. ୧୦.୪.୧୯୯୦ ରିଖରେ ସେ ଖଣ୍ଡିଏ ଚିଠି ଭାରତୀୟ ଦୂତାବାସ ୱାଶିଂଟନକୁ ଶ୍ରୀ ଲଳିତ ମାନସିଂହଙ୍କୁ ଲେଖି ପଠାଇଥିଲେ -

''ସ୍ନେହର ଲଳିତ,

ତୋର ଓ ତୋ' ମାଆଙ୍କର ଚିଠି ପାଇ ବେଶ୍ ଖୁସି ହେଲି । ମା'ଙ୍କୁ ବହୁତ ବହୁତ କହିବୁ । ମୋର ଭଣଜା ପତ୍ରବାହକ କ୍ଷୀରୋଦ ଆମେରିକା ଯାଉଛି । ସେ ତୋତେ ଭେଟିବ । ତୁ' ତା'ଠାରୁ ଏଠାକାର ଖବରଅନ୍ତର ଶୁଣିବୁ ।

କାଶ୍ମୀର ଅବସ୍ଥା ବେଶ୍ ଗୁରୁତର । ଏହାର ସମାଧାନ କିପରି ହେବ, ତା' ଚିନ୍ତାର ବିଷୟ । ଆସନ୍ତା ମେ' ୨୫ ତାରିଖ ପର୍ଯ୍ୟନ୍ତ ବଜେଟ୍ ଅଧିବେଶନରେ ପୂରା ବ୍ୟସ୍ତ ରହିବି । ତା'ପରେ କେତେକ ଦେଶକୁ ପାର୍ଲାମେଣ୍ଟାରୀ ଡେଲିଗେସନ୍ ନେଇ ଯିବାକୁ ପଡ଼ିବ ।

ସପରିବାର ଭଲ ଥିବୁ । ତୋର ସ୍ତ୍ରୀ ଓ ପିଲାମାନଙ୍କୁ ଶୁଭେଚ୍ଛା ଜଣାଉଛି । ଚିଠି ଦେବୁ ।

ଶୁଭାକାଙ୍କ୍ଷୀ

ରବି ରାୟ

ଖଣ୍ଡିଏ ଛୋଟ ଚିଠିରେ ବି କେତେ ଆତ୍ମୀୟତା, କେତେ ଆନ୍ତରିକତା ଭରି ରହିଛି, ତାହା ଲକ୍ଷ୍ୟ କରିବାକୁ ହେବ । ରବି ରାୟ ଏହିପ୍ରକାର ବିଶାଳ ହୃଦୟ ବ୍ୟକ୍ତିତ୍ୱ, ଆଜୀବନ ଦେଶପ୍ରେମୀ ।

*(ପ୍ରଫେସର ସୂର୍ଯ୍ୟକାନ୍ତ ଦାସଙ୍କ ଉକ୍ତ ଲେଖାଟି ପର୍ଯ୍ୟବେକ୍ଷକ ତା. ୧୪.୯.୨୦୦୨ରେ ପ୍ରକାଶିତ ହୋଇଥିଲା । ପ୍ରଫେସର ଦାସ ବର୍ତ୍ତମାନ ଇହ ଜଗତରେ ନାହାନ୍ତି । ତାଙ୍କୁ ଅଶେଷ ଶ୍ରଦ୍ଧାଞ୍ଜଳି ।)*

❑❑❑



ଭୁବନେଶ୍ୱରଠାରେ ସାମ୍ବାଦିକ ସମ୍ମିଳନୀରେ ରବି ରାୟଙ୍କ ସହ ଲୋକଶକ୍ତି ଅଭିଯାନର ରାଷ୍ଟ୍ରୀୟ ସଂଯୋଜକ ପ୍ରଫେସର ଆନନ୍ଦ କୁମାର ଓ ଓଡ଼ିଶା ରାଜ୍ୟ ଶାଖା ସଭାପତି ପ୍ରଫୁଲ୍ଲ ସାମନ୍ତରା

# A MAN OF VISION AND ACTION

*Prof. Anand Kumar*

Today Shri Rabi Ray is one of the tallest leaders who commands the attention of our nation because he represents the great political tradition noble values of the Indian freedom struggle and the vision of Indian socialist movement. He personifies the unity of ideas and practices of socialism as propounded by Dr. Rammanohar Lohia. His life has been revolving around the socialist mission for more than half a century in such a manner that today he is the brightest icon representing a virtuous lineage of freedom fighters and social revolutionaries.

Shri Rabi Ray needs to introduction to the idealist social workers intelligentsia and concerned citizens of India and his ideas deserve serious consideration by all those who feel dissatisfied with the state of society and want a better future for the people and society. Because he has been an engaged socialist for the whole of his life who believed in social transformation through combining of constructive work, mass mobilization and parliamentary power. Because he is an ideal representative of the polities based upon purity of ends and means.

Shri Rabi Ray entered in public life as a student activist in 1940s. His dedication to the path of socialist politics Dr. Lohia was the reason for his decision to work for organizing socialist youth and party for the first 30 years of his public life made him enter the Lok Sabha in 1967 when he got the privilege of leading the socialist group in parliament which had Rammanohar Lohia, Madhu Limaye

and Raj Narayan among its members. In the next decade 1970s he was again touring the nation to organize and mobilize the youth and peasants against corruption, unemployment, price rise and wrong educational policies under the ever-inspiring leadership of Lok Nayak Jayaprakash Narayan. As a result Shri Rabi Ray was arrested in 1975 along with thousands of other citizens across the country in the Emergency Raj. They were under detention for more than 19 months without trial in 1975-77. In 1977 Shri Rabi Ray was appointed as one of the Union Ministers with the responsibility of promoting a pro-people health care system.

After the decline of Janata Party, Shri Rabi Ray became involved in promoting politics of poor masses, particularly the peasants of India, under the leadership of Shri Charan Singh. He worked closely with a galaxy of peasant leaders for nearly two decades to popularize the demands of the rural masses. This included the period when he was representing the peoples voices in the Rajya Sabha. Later on, Shri Rabi Ray was one of the leading lights of the national campaign for a clean public life which was launched under the leadership of Shri V.P. Singh (after resigning as Finance Minister of India) in 1987. Shri Rabi Ray had also become closely associated with the cause of social justice in the period as the question of protective discrimination for the 'socially and educationally backward classes' remained unresolved despite nationwide demands from various quarters.

There was again a change in the regime at the top of Indian state in 1989 and Shri Rabi Ray was approached to become the custodian of people's power. He was made the speaker of the 9$^{th}$ Lok Sabha unanimously. These were the

most challenging years of his parliamentary career as he presided over the highest forum of Indian people in most turbulent times with unparallel dignity and determination. He became the messenger of the masses of India in dealing with three prime ministers in the turbulent period of two years from 1989 to 1991.

From 1991, Shri Rabi Ray has been in the front line of national resistance against capitalist globalisation. He warned the country against poisonous spread of consumerism and marketization sponsored by multi national corporations and their collaborators in the Indian government and economy. At the same time he did not hesitate to withdraw from parliamentary career when he found his long term comrades drifting away from the socialist path. Such friends were moving towards pragmatic alliances which had the potential of creating politics of communalism and corruption in search of safe vote banks. This was not a happy experience for Shri Rabi Ray and he was bold enough to undertake critical look at the ills and failures of his own political lineage and line.

Shri Rabi Ray has shared his concerns and conclusions in a historical essay "Where did we go Wrong ?" it reads like the post mortem report of the parliamentary politics of India since 1967. Shri Rabi Ray has been courageous enough to invite the attention of his colleagues and followers towards the missed opportunities and consequential national crisis. Since this introspective diagnosis, Shri Rabi Ray is involved in promoting a campaign against capitalist globalization, political and economic centralization, consumerism, communalism and corruption at high places. He wants the youth and the masses to get concerned in national life and polity in

constructive ways. He calls our attention to the seven role models for creating a better political climate in our country – Mahatma Gandhi, Swami Vivekananda, Netaji Subhas Bose, Khan Abdul Gaffar Khan, Baba Sabeb Ambedkar, Lok Nayak Jayaprakash Narayan, and Dr. Ram Manohar Lohia. He underlines the urgency of Saptakranti as conceptualized by Dr. Lohia and wants to remind the political elite that unless we are contributing towards the dignity and might of the ordinary men and women we are not engaged in correct kind of political work.

This book is a collection of the ideas and thoughts of a man of vision and action, a towering personality who embodies courage of conviction and confidence of revolutionary, a national hero who has contributed his might for the betterment of the lives of the teeming millions as a Satyagrahi socialist, for more than sixty years in exemplary ways. Let us learn from him.

*Professor, Dept. of Sociology*
*Jawaharlal Nehru University, New Delhi*



''ଅଣରାଜନୈତିକ ଲୋକଙ୍କ ସମୂହ ହିଁ ଭାରତର ସବୁଠୁ ବଡ଼ ରାଜନୈତିକ ଦଳ । ରାଜନୈତିକ ଜୀବନର ମୁଖ୍ୟଧାରାକୁ ଲୋକଙ୍କୁ ଅଣାଯାଇନାହିଁ । ଜନସାଧାରଣଙ୍କୁ ଶକ୍ତିଶାଳୀ କରିବାକୁ ହେଲେ ଏଭଳି ଏକ ବ୍ୟାପକ ଜନ ଆନ୍ଦୋଳନ ଲୋଡ଼ା, ଯେଉଁ ଆନ୍ଦୋଳନ ସମାନତାର ଆଦର୍ଶ ସହ ଗାନ୍ଧିଜୀଙ୍କର ସତ୍ୟାଗ୍ରହ ଓ ଗଠନ ମୂଳକ କାର୍ଯ୍ୟ ପ୍ରତି ନିଷ୍ଠାବାନ୍ ହେବ । ଏଭଳି ଆନ୍ଦୋଳନରେ ଅଂଶୀଦାର ହେବାକୁ ଚାହୁଁଥିବା ନିଷ୍ଠାପର ବ୍ୟକ୍ତି ଏ ଦେଶରେ ଅନେକ ଅଛନ୍ତି । ସେମାନେ ଏକାଠି ବସି ଏ ସଂପର୍କରେ ବିଚାର ଆଲୋଚନା କରିବା ଆବଶ୍ୟକ ।''

ରବି ରାୟ



"Shri Rabi Ray has shared his concerns and conclusions in a historical essay "Where did we go Wrong ?" It reads like the postmortem report of the parliamentary politics of India since 1967. Shri Rabi Ray has been courageous enough to intvite the attention of his colleagues and followers towards the missed opportunities and consequential national crisis. Since this introspective diagnosis, Shri Rabi Ray is involved in promoting a campaign against capitalist globalization, political and economic centralization, consumerism, communalism and corruption at high places. He wants the youth and the masses to get concerned in national life and polity in constructive ways."

***Prof. Anand Kumar***

JNU, New Delhi

Printed at : **SIDHAVEER OFFSET**, BERHAMPUR-3, Ph. [illegible]